# ଜୀବନ ଓ ସଂଗ୍ରାମ

ଦିଗ୍‌ଦର୍ଶକ

ବ୍ରଜନାଥ ରଥ

ସଂକଳନ ଓ ସଂପାଦନା

ବିଜୟ ଉପାଧ୍ୟାୟ

କାଳୀପଦ ପଣ୍ଡା

ଅରୂପ ଅଭିଷେକ

ପୃଷ୍ଠପୋଷକ

ହୃଷୀକେଶ ସାହୁ

ଜୀବନ ଓ ସଂଗ୍ରାମ

**JIBANA O SANGRAMA**

ସଂପାଦନା

ବିଜୟ ଉପାଧ୍ୟାୟ

କାଳୀପଦ ପଣ୍ଡା

ଅରୂପ ଅଭିଷେକ

ପ୍ରକାଶିକା

ଶୁଭଶ୍ରୀ ସାହୁ

ଫକୀରମୋହନ ନଗର, ବାଲେଶ୍ୱର

ମୋ.: ୯୪୩୮୭୦୦୯୧୧

ମୁଦ୍ରଣ

ସୁବର୍ଣ୍ଣଶ୍ରୀ ପ୍ରକାଶିନୀ

ଶ୍ରୀକଣ୍ଠପୁର, ବାଲେଶ୍ୱର

ମୋ.:୯୪୩୭୦୮୯୨୪୧

ପ୍ରଚ୍ଛଦ

ବିଜୟ କୁମାର ପ୍ରଧାନ

ପ୍ରକାଶ କାଳ

୨୮ ଫେବୃଆରୀ-୨୦୧୨

ମୂଲ୍ୟ

ଟ. ୧୭୫/-

*Compiler*

Bijay Upadhayaya

Kalipada Panda

Arup Abhishek

*Publisher*

Subhashree Sahu

Fakirmohan Nagar, Balasore

Mob.: 9438700911

*Printed by*

Subarnashree Prakashini

Shreekanthpur, Balasore, Odisha

Mob.: 9437089241

*Cover Design*

Bijay Kumar Pradhan

*First Edition*

28 February - 2012

*Price*

Rs. 175/-



ଯାହାଙ୍କର ୫୦ବର୍ଷ ପୂର୍ତ୍ତି ଅବସରରେ
'ଜୀବନ ଓ ସଂଗ୍ରାମ' ପୁସ୍ତକ ପ୍ରକାଶ ପାଉଛି,
ସେହି ସାହିତ୍ୟାନୁରାଗୀ ଓ ପ୍ରଗତିଶୀଳ ଆଭିମୁଖ୍ୟର ବନ୍ଧୁ
ଶ୍ରୀ ହୃଷୀକେଶ ସାହୁଙ୍କୁ ଆମେ ଗଭୀର କୃତଜ୍ଞତା ଜଣାଉଛୁ ।

ତାଙ୍କର ଆଗାମୀ ଜୀବନ ସୁଖଦ ତଥା ଏଭଳି
ସାମୂହିକ କଲ୍ୟାଣକର କାର୍ଯ୍ୟରେ ନିରନ୍ତର ବିତୁଥାଉ,
ଏହାହିଁ ଆମର ଶୁଭକାମନା ।

ସଂପାଦନା ମଣ୍ଡଳୀ

ହୃଷୀକେଶଙ୍କ

ପିତା ୰ରାମଚନ୍ଦ୍ର ସାହୁ

ଓ

ମାତା ୰ମୁଖଦାମଣି ସାହୁ

ତଥା

ତାଙ୍କର ପିତୃପ୍ରତିମ

**ଶ୍ରୀ ହରେନ୍ଦ୍ରନାଥ ଘୋଷ**

ଏବଂ

ମାତୃପ୍ରତିମା

**ଶ୍ରୀମତୀ ଲକ୍ଷ୍ମୀପ୍ରିୟା ଘୋଷଙ୍କୁ**

ଏହି ପୁସ୍ତକଟି ସମର୍ପିତ ।

**ସଂପାଦନା ମଣ୍ଡଳୀ**



# ପ୍ରକାଶିକାଙ୍କ କଲମରୁ....

ମୁଁ କେବେହେଲେ ଆଶା କରିନଥିଲି ଯେ ଏଭଳି ଏକ ଅଭିନବ ଉପାୟରେ ମୋର ସ୍ୱାମୀ ହୃଷୀକେଶ ସାହୁଙ୍କର ୫୦ତମ ଜନ୍ମଦିନ ପାଳନ କରାଯାଇପାରିବ । ଏପରି ଏକ ପୁସ୍ତକର ପରିକଳ୍ପନା କବି ବ୍ରଜନାଥ ରଥ, ବିଜୟ ଉପାଧ୍ୟାୟ, କାଳୀପଦ ପଣ୍ଡା ଓ ହୃଷୀକେଶଙ୍କ ସାମାନ୍ୟ କଥୋପକଥନରୁ ଆରମ୍ଭ ହୋଇଥିଲା । ଦୀର୍ଘ ୨୦ବର୍ଷ ଧରି ଆମର ଦାମ୍ପତ୍ୟ ଜୀବନ ଭିତରେ ମୁଁ ତାଙ୍କୁ ଜଣେ ଇଂଜିନିୟର ରୂପେ ଯେତେ ନ ଜାଣେ, ତା'ଠାରୁ ଅଧିକ ଜାଣେ, ଜଣେ ସମାଜସେବୀ ଓ ପରୋପକାରୀ ଭାବେ । ଯେଉଁଠି ଲୋକଙ୍କର ସାମୂହିକ ଦାବି ଓ ଛୋଟବଡ଼ ସଂଗ୍ରାମର ଆବଶ୍ୟକତା ଦେଖାଦିଏ, ତାଙ୍କୁ ଆଗଧାଡ଼ିରେ ଦେଖେ । ଗ୍ରାମାଞ୍ଚଳର ବିକାଶ ଆନ୍ଦୋଳନ ହେଉ ଅଥବା ଜିଲ୍ଲାସ୍ତରରେ ମେଡ଼ିକାଲ କଲେଜ ଆନ୍ଦୋଳନ, ରକ୍ତଦାନ ଶିବିର ହେଉ ଅଥବା ବନ୍ୟାକ୍ଲିଷ୍ଟ ଜନସାଧାରଣଙ୍କୁ ସାହାଯ୍ୟ କରିବା ଆନ୍ଦୋଳନ, ସେଇଠି ତାଙ୍କର ଦିନରାତି ବିତିଯାଏ । ଘର ପାଇଁ ସେ ସମୟ ନ ଦେଇ ପାରିଲେ ମଧ୍ୟ ଏଭଳି ଏକ ଜୀବନ ସହ ମୁଁ ନିଜକୁ ଅଭ୍ୟସ୍ତ କରିନେଇଛି ।

ତାଙ୍କର ୫୦ତମ ଜନ୍ମଦିନ ଅବସରରେ **'ଜୀବନ ଓ ସଂଗ୍ରାମ'** ପୁସ୍ତକର ପରିକଳ୍ପନା ଅତ୍ୟନ୍ତ ଉପଯୋଗୀ । ଏଥିପାଇଁ ମୁଁ ସଂପାଦନାମଣ୍ଡଳୀ ତଥା ଦିଗ୍‌ଦର୍ଶକଙ୍କୁ ମୋ ଅନ୍ତରର ଗଭୀର କୃତଜ୍ଞତା ଜଣାଉଛି । ତା ସହିତ ହୃଷୀକେଶଙ୍କୁ ମୋର ବିନମ୍ର ଅଭିନନ୍ଦନ ।

ତା. ୨୮/୦୨/୨୦୧୨

ଶୁଭଶ୍ରୀ ସାହୁ

# ସୂଚୀ

## ମୁଖବନ୍ଧ



## କ୍ଲାସିକ୍ ସାହିତ୍ୟରୁ



## ସାଂପ୍ରତିକ ପ୍ରବନ୍ଧ

## କବିତା ବିଭାଗ

# ଜୀବନ, ସଂଗ୍ରାମ ଓ ସଂଗ୍ରାମୀ

ବ୍ରଜନାଥ ରଥ

ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ- 'ଏ ଜୀବନ ନିତ୍ୟ ନୂତନ' । ନିତ୍ୟ ନୂତନ ଜୀବନ ସଦା ଚଳଚଞ୍ଚଳ, ସଦା କର୍ମତତ୍‌ପର, କ୍ରିୟାଶୀଳ ଓ ଚଳମାନ୍ ହେବାକୁ ବାଧ୍ୟ । ଏହି ଚ଼ଳମାନତା ହିଁ ଜୀବନକୁ ମୃତ୍ୟୁଠାରୁ ଭିନ୍ନ କରି, ଜଡ଼ତ୍ୱରୁ ମୁକ୍ତକରି, ନିତ୍ୟ ସଂଘର୍ଷମୟ କରି ଅଗ୍ରଗାମୀ କରିଥାଏ । ଜୀବନ କେବେହେଲେ ପଛକୁ ଫେରେ ନାହିଁ । ପ୍ରବହମାନ ନଦୀ ଭଳି ସେ ସିଧାସଳଖ ଗତି ନକରି, ନାନା ବାଙ୍କ ମୋଡ଼ି ଆଗକୁ ଆଗକୁ ଆଗେଇଥାଏ । ଏହି ଗୋଟିଏ ଗୋଟିଏ ବାଙ୍କ ମୋଡ଼ିବା ଭିତରେ ସେ ହାସଲ କରିଥାଏ ଅସଂଖ୍ୟ ଅଭିଜ୍ଞତା । ସଂଘର୍ଷ ଓ ସଂଗ୍ରାମ ବିନା ଜୀବନ ନାହିଁ । ଯେଉଁ ଜୀବନରେ ଯେତେ ସଂଘର୍ଷ, ଯେତେ ସଂଗ୍ରାମ, ସେ ଜୀବନ ସେତେ ବର୍ଣାଢ୍ୟ ଓ ମହନୀୟ । ସେହି ବ୍ୟକ୍ତିର ଜୀବନ ନିତ୍ୟ ନୂତନ ଅଭିଜ୍ଞତା ଓ ଅଭିଜ୍ଞାନରେ ସମୃଦ୍ଧ ।

କବି ବୈକୁଣ୍ଠନାଥ ପଟ୍ଟନାୟକ ଏକଦା ଲେଖିଥିଲେ-

"ସକଳ ଜୀର୍ଣ୍ଣ ପୁରାତନ ପଡ଼େ ଝରି
ପଉଷପତ୍ର ବାତ୍ୟା କଏରେ ତଡ଼ି,
ହସେ ପୁଣି ଉଷା,
ଶୁଭେ ଆଲୋକର ଗାନ,
ନବନବ ରୂପେ
ପୁରାଣ ଏ ଭୂମେ
ବିକଶିତ ଭଗବାନ ।"

ବିଶ୍ୱ ପ୍ରକୃତି (ଭଗବାନ) ସବୁବେଳେ ନୂଆନୂଆ ରୂପରେ ହିଁ ପ୍ରକାଶ ପାଇଥାଏ । ଆମେ ସେହି ବିଶ୍ୱ-ପ୍ରକୃତିର ଏକଏକ ଅଂଶ । ତେଣୁ ଆମର ଜୀବନ ମଧ୍ୟ ନବରୂପରେ ପ୍ରକାଶମାନ ହୁଏ । ସୃଷ୍ଟିର ଅଖଣ୍ଡ ଓ ଅନନ୍ତ ପ୍ରକ୍ରିୟା ଭିତରେ ଜୀବନର ଗତି ଆଗକୁ ଆଗଉଥାଏ ସିନା, ପଛକୁ କେବେ ଫେରେନାହିଁ । ଅଗ୍ରଗତି ହିଁ ଜୀବନ, ସଂଗ୍ରାମହିଁ

ଜୀବନର ଆଧାର । ଏହି 'ପୁରାଣ ଭୂମି' ବା ପୁରାତନ ପୃଥିବୀରେ ସଂଗ୍ରାମଶୀଳ ମଣିଷ ନିଜର ଶ୍ରମ, ସ୍ୱପ୍ନ ଓ ବୁଦ୍ଧିଦ୍ୱାରା ଯୁଗେଯୁଗେ ସଭ୍ୟତା ଓ ସଂସ୍କୃତିର ମୂଳଦୁଆ ପକାଇ ତୁଙ୍ଗ ମିନାର ଛିଡ଼ା କରାଇପାରିଛି । ସାଧନାର ଅନ୍ତ ନାହିଁ, ସଂଗ୍ରାମର ବି ଅନ୍ତ ନାହିଁ । ଏହା ଭିତରେ ମଣିଷର ସ୍ୱପ୍ନର ମଧ୍ୟ ଅନ୍ତ ନାହିଁ । ନିତି ନୂଆନୂଆ କିଛି କରିବାର ସ୍ୱପ୍ନ ମଣିଷକୁ ଅଗ୍ରଗାମୀ କରିଛି । ପୃଥିବୀର ସବୁ ଜୀବଜନ୍ତୁଙ୍କ ମଧ୍ୟରେ ମଣିଷହିଁ କେବଳ ସ୍ୱପ୍ନ ଦେଖେ, ଏବଂ ସେହି ସ୍ୱପ୍ନକୁ ସାକାର କରିବାକୁ ଶ୍ରମକରେ- ସାଧନା କରେ, ଆଉ ସଂଗ୍ରାମ କରେ । ସ୍ୱପ୍ନ-ଶ୍ରମ-ସାଧନା ଓ ସଂଗ୍ରାମ ମାନବ ସଭ୍ୟତାର ଜୟଯାତ୍ରା ପଥରେ ଏକଏକ ଉପାଦାନ । କିନ୍ତୁ କିଛି ତଥାକଥିତ ବୁଦ୍ଧିମାନ ବ୍ୟକ୍ତି ଆତ୍ମକେନ୍ଦ୍ରିକ ଓ ସ୍ୱାର୍ଥସର୍ବସ୍ୱ ହୋଇ ସାଧାରଣ ଜନତାର ସ୍ୱପ୍ନ, ଶ୍ରମ ଓ ସାଧନାକୁ ନିଜର ସ୍ୱାର୍ଥହାସଲରେ ବିନିଯୋଗ କରନ୍ତି । ସେମାନଙ୍କୁ ଶୋଷଣ କରନ୍ତି । ସମାଜର ଉତ୍ପାଦନ ପଦ୍ଧତିକୁ ଅକ୍ତିଆର କରି ନିଜର ପୁଞ୍ଜିର ଦୁର୍ଗକୁ ଶକ୍ତିଶାଳୀ କରନ୍ତି । ଗୋଟିଏ ଗୋଟିଏ ବ୍ୟକ୍ତି କୋଟିକୋଟି ମେହନତି ମଣିଷଙ୍କ ସ୍ୱାର୍ଥର ବାଧକ ସାଜନ୍ତି । ଶୋଷିତ, ଲୁଣ୍ଠିତ, ମେହନତି ମଣିଷ ଯେତେବେଳେ ଆତ୍ମସଚେତନ ହୋଇ ଜାଗ୍ରତ ହୁଅନ୍ତି, ସେତେବେଳେ ବଞ୍ଚିବାର ଅଧିକାର ପାଇଁ ସଂଗ୍ରାମ କରନ୍ତି । ସଂଗ୍ରାମ ଯେତେ ଜୋରଦାର ହୁଏ, ଲଢ଼େଇ ଯେତେ ତୀବ୍ର ହୁଏ, ବିଜୟ ସେତେ ନିକଟତର ହୁଏ । ସଂଗ୍ରାମ ହିଁ କାଳେକାଳେ ଅଧିକାର ଓ ଅଗ୍ରଗତିର ପଥକୁ ସୁଗମ କରିବାରେ ସହାୟକ ହୋଇଆସିଛି । ତେଣୁ ସଂଗ୍ରାମର ପଥ ହିଁ ବଞ୍ଚିବାର ପଥ, ଅଗ୍ରଗତିର ପଥ । କିନ୍ତୁ ଏଥିପାଇଁ ଅଗ୍ରନାୟକର ଭୂମିକା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ଅଗ୍ରନାୟକର ଲକ୍ଷ୍ୟ, ଆଦର୍ଶ, ନିର୍ଭୁଲ ନିର୍ଦ୍ଦେଶ ଓ ଉପଦେଶ ତଥା ତା'ର ନିଃସ୍ୱାର୍ଥ ଜୀବନଧାରା ହିଁ ସଂଗ୍ରାମର ପଥରେ ସଂଗ୍ରାମୀମାନଙ୍କୁ ଲକ୍ଷ୍ୟହାସଲ ଓ ଦାବିପୂରଣ ଦିଗରେ ପରିଚାଳିତ କରିଥାଏ । ସେ ଆବ୍ରାହମ୍ ଲିଙ୍କନ୍ ହଅନ୍ତୁ ବା ଲେନିନ୍ ହୁଅନ୍ତୁ; ମାଓସେତୁଙ୍ଗ ହୁଅନ୍ତୁ ବା ହୋଚିମିନ୍ ହୁଅନ୍ତୁ କିମ୍ବା ମହାତ୍ମାଗାନ୍ଧୀ ହୁଅନ୍ତୁ, ସେମାନଙ୍କ ସଂଗ୍ରାମର ପଥ ଭିନ୍ନଭିନ୍ନ ହୋଇପାରେ, କିନ୍ତୁ ସେମାନଙ୍କ ନିଷ୍କଳଙ୍କ ଓ ନିଃସ୍ୱାର୍ଥ ଜୀବନାଦର୍ଶ ଓ ସଫଳ ମାର୍ଗଦର୍ଶନ ଲକ୍ଷଲକ୍ଷ ସଂଗ୍ରାମୀଙ୍କୁ ଠିକ୍‌ମାର୍ଗରେ ପରିଚାଳିତ କରିପାରିଛି । ଇତିହାସରୁ ଏହା ଶିକ୍ଷାକରି ଆମେ ବ୍ୟକ୍ତି ଜୀବନରେ ମଧ୍ୟ ତାହାକୁ ପ୍ରତିଫଳିତ କରିପାରିଲେ ଆମେ ଜୀବନ-ସଂଗ୍ରାମରେ ସଫଳ ହୋଇପାରିବା । ଆମ ଜୀବନଯୁଦ୍ଧରେ ବିଜୟୀ ହୋଇପାରିବା ।

ଏକଦା ମୋର ଏକ କବିତାରେ ମୁଁ ଲେଖିଥିଲି-

(୧)

"ଏ ଧରଣୀ ନୁହେଁ ଖାଲି ଧୂଳିଘର ଶିଶୁର
ସଂଗ୍ରାମେ ମଣିଷର ମୁକତି,
ଯଉବନ ନୁହେଁ ଖାଲି ଉନ୍ମାଦ-ମଦିର ।
କର୍ମ ହିଁ ଜୀବନର ଶକତି,
ଅନ୍ଧାରେ ଆଲୁଅକୁ ଜାଳିବା
ପର ପାଇଁ ଲୁହ-ଲହୁ ଢାଳିବା
ନିର୍ଭୟେ ଅନ୍ୟାୟ-ଅନୀତିର ଦୁର୍ଗରେ
ବଜ୍ର ଆଘାତ ଆମେ ହାଣିବା,
ଗାଇଯିବା ପ୍ରଗତିର ପ୍ରଗୀତି ॥

(୨)

ଜଗତରେ ଆମେ କ'ଣ ନିଜ ପାଇଁ ନିଜେ ହିଁ
ସଞ୍ଚିବା, ବଞ୍ଚିବା କେବଳ ?
କୋଟିକୋଟି ମଣିଷର ହରଷେ ଓ ବିଷାଦେ
ହେବାନିକି ଆମେ ନିତି ପାଗଳ ?
ଖାଲି କ'ଣ ସ୍ୱାର୍ଥରେ ହଜିବା ?
ଅର୍ଥର ଦେବତାକୁ ପୂଜିବା ?
ଆପେ କ'ଣ ଆପଣାର ରୂପରେ ହି ମଜିବା ?
ଦେଖିବାନି ବିଶ୍ୱର ମୂରତି ??"

ଜଣେ ସଂଗ୍ରାମୀ କେବଳ ନିଜେ ନିଜ ପାଇଁ ବଞ୍ଚେନାହିଁ । ଜୀବନଯୁଦ୍ଧରେ ସେ ସଂଗ୍ରାମ କରି ଜିଇ ରହିବା ସଂଗେସଂଗେ ଅନ୍ୟ ଅଧଃପତିତ, ଶୋଷିତ, ନିପୀଡ଼ିତ ମାନଙ୍କ ପାଇଁ ମଧ୍ୟ ସଂଗ୍ରାମ କରେ । ସେମାନଙ୍କୁ ନିଜ ସହିତ ସାମିଲ କରେ । ନିଜେ ସେମାନଙ୍କ ସହ ଏକାକାର ହୋଇଯାଏ । ସଂଗ୍ରାମକୁ ବିପ୍ଳବରେ ପରିଣତ କରି ପଚ଼ମାନ ସମାଜ ବ୍ୟବସ୍ଥାକୁ ପରିବର୍ତ୍ତନ କରେ । ସ୍ଥିତାବସ୍ଥା ରୂପୀ ଅଚ଼ଳାୟତନକୁ ଧୂଳିସାତ୍ କରି ନବତମ ସୌଧ ନିର୍ମାଣ କରେ । ସେ ସଂଗ୍ରାମୀ ଭାବରେ ସଂହାରକାରୀ ରୁଦ୍ରରୂପ ଧାରଣ

କଲେ ମଧ୍ୟ ପରବର୍ତ୍ତୀ ସମୟରେ ସେ ସର୍ଜନାକାରୀ ବ୍ରହ୍ମାର ଆସନରେ ଅଧିଷ୍ଠିତ ହୋଇ ନବନିର୍ମାଣର ବିଶ୍ୱକର୍ମା ହୁଏ । ସଂଗ୍ରାମୀର ସଂଗ୍ରାମ କେବେ ସରେ ନାହିଁ । ଗୋଟିଏ ସଂଗ୍ରାମ ଶେଷହେବା ପରେ ଆରମ୍ଭ ହୁଏ ଆଉ ଏକ ସଂଗ୍ରାମ । ଏହା ଏକ ଚିରନ୍ତନ ପ୍ରକ୍ରିୟା । ନହେଲେ ସମାଜ ବ୍ୟବସ୍ଥାରେ କଳଙ୍କି ଲାଗିଯିବ । ସମାଜ ଏକ ଆବଦ୍ଧ ଜଳାଶୟରେ ପରିଣତ ହେବ । ଏହାର ନିର୍ମଳ ଜଳ କ୍ରମେ ଦୂଷିତ ହୋଇଯିବ । ସେଥିପାଇଁ ବ୍ୟକ୍ତିଜୀବନ ସହ ସମାଜଜୀବନର ଅଗ୍ରଗତି ପାଇଁ ନିରନ୍ତର ସଂଗ୍ରାମର ଆବଶ୍ୟକତା ରହିଛି ।

ଶେଷରେ ମୁଁ ଏତିକି କହିବି-

"ସଂଗ୍ରାମ ଚାଲିଅଛି ସଂଗ୍ରାମ ଚାଲିବ<br>
ସରିନାହିଁ ଯୁଦ୍ଧ ଯେ ଆମର,<br>
ଶତ୍ରୁର ଶିବିରରେ କରିବାକୁ ହେବ ଆଜି<br>
ଆମକୁ ଯେ ଅନ୍ତିମ ପ୍ରହାର ।<br>
ଟାଳିବାକୁ ହେବ କାଳରାତ୍ରି<br>
ଚାଲିଅଛୁ ଦୁର୍ଦ୍ଦମ ଯାତ୍ରୀ<br>
ଜୀବନକୁ ପଣ ରଖି ଅନ୍ଧାର ରାଜପଥେ<br>
ଗଣି କଳା ଯାମିନୀର ପ୍ରହର ॥"

ସଂଗ୍ରାମର ଶେଷ ନାହିଁ । ସଂଗ୍ରାମୀର ଅବସର ନାହିଁ । ଜୀବନର ସଂଜ୍ଞା ଯଦି ସଂଗ୍ରାମ ହୁଏ, ତାହେଲେ ସଂଗ୍ରାମର ଅନ୍ୟ ନାମ ଜୀବନ । ଆସନ୍ତୁ ଆମେ ସଂଗ୍ରାମର ପଥରେ ଜୀବନର ଅଭିଯାତ୍ରୀ ହେବା । ହେବା ପୁଣି ଅଭ୍ୟୁଦୟର କାଣ୍ଡାରୀ ।



# ଜୀବନ ଓ ସଂଗ୍ରାମ ସପକ୍ଷରେ ଏକ ପ୍ରତିବେଦନ

ବିଜୟ ଉପାଧ୍ୟାୟ

'ଜୀବନ ଓ ସଂଗ୍ରାମ ସପକ୍ଷରେ' - ଏଇ ଶୀର୍ଷକରେ ଯେତେବେଳେ ସଂକଳନଟିଏ କରିବାର ଯୋଜନା କଲୁ ସେତେବେଳେ ଏ ବିଷୟରେ ବିଶେଷ ଅନୁଚିନ୍ତା କରି ନଥିଲୁ । ତାର ବିଭିନ୍ନ ଦିଗ ଓ ପ୍ରସ୍ଥ ଅସ୍ପଷ୍ଟ ଥିଲା, ଲେଖକମାନଙ୍କ ପାଖକୁ ଲେଖାପାଇଁ ଚିଠି ଗଲାପରେ କିଛି ଲେଖକ ବନ୍ଧୁ ସ୍ପଷ୍ଟୀକରଣ ମାଗିଲେ ଓ ଉଦ୍ଦେଶ୍ୟ ବିଷୟରେ ପ୍ରଶ୍ନ କଲେ । ସୁତରାଂ ପ୍ରାଥମିକଭାବେ ମତେ ହିଁ ଏହାର ଦିଗ ଓ ପ୍ରସ୍ଥ ବିଷୟରେ ଚିନ୍ତା କରି ଉତ୍ତର ଦେବାକୁ ପଡ଼ିଲା ଏବଂ ଉତ୍ତର ଦେଉଦେଉ ହିଁ ଉଦ୍ଦେଶ୍ୟ ଅଧିକ ସ୍ପଷ୍ଟ ହେବାକୁ ଲାଗିଲା । ଅନେକ ପ୍ରଶ୍ନ ନିଜକୁ ନିଜେ ପଚାରିବାକୁ ହେଲା । ପରିସ୍ଥିତି ଏପରି ହେଲା ଯେ, ସଂପାଦନାମଣ୍ଡଳୀର ସଭ୍ୟମାନଙ୍କ ଭିତରେ ଫୋନ୍‌ଯୋଗେ ଭାବର ଆଦାନ ପ୍ରଦାନ ଓ ଅନୁଚିନ୍ତା ଚାଲିଲା । ଦାୟିତ୍ୱବଣ୍ଟନ ମଧ୍ୟ ହୋଇଗଲା । କିନ୍ତୁ ତଥାପି କିଛି ଅନୁତ୍ତରିତ ପ୍ରଶ୍ନ ରହିଗଲା ।

ଜଣେ ଜୀବବିଜ୍ଞାନୀ ନ ହୋଇ ଜୀବନ ବିଷୟରେ ଚିନ୍ତା କରିବା କିମ୍ବା ସଂଗ୍ରାମ / ସଂଘର୍ଷର ଅଭିଜ୍ଞତା ଅର୍ଜନ ନକରି କିମ୍ବା ସାମାଜିକ ଐତିହାସିକ ଅଧ୍ୟୟନ ନକରି ସେ ବିଷୟରେ ବଖାଣି ଚାଲିବା ଏକଦମ୍ ଅନଧିକାର ଚର୍ଚ୍ଚା । ଏହାହିଁ ଅଧିବିଦ୍ୟା ପର୍ଯ୍ୟାୟର ସାହିତ୍ୟକୁ ଜନ୍ମଦିଏ । ଅଧିବିଦ୍ୟା ବା ମେଟାଫିଜିକ୍‌ସର ଜନ୍ମ ବିଷୟରେ ଠିକ୍ ଏଇକଥା କହନ୍ତି ଲେନିନ୍ ଓ ଉଇଟ୍‌ଗେନ୍‌ଷ୍ଟାଇନ୍ । ଲେନିନ୍‌ଙ୍କ ଭାଷାରେ 'ସମାଜ କ'ଣ ?' ପ୍ରଗତି କଣ ? ଏସବୁ ପ୍ରଶ୍ନ କରିବା ହେଉଛି ଶେଷଆଡୁ ଆରମ୍ଭ କରିବା । ଏ ପ୍ରଶ୍ନ କରିବାର ଅଧିକାର ତୁମର କେଉଁଠୁ ଆସିଲା ? ଯେତେବେଳେ ତୁମେ କୌଣସି ସାମାଜିକ ସଂଗଠନର ଅଧ୍ୟୟନ କରିନାହଁ କି ତଥ୍ୟଗତ ଅନୁସନ୍ଧାନ କରିନାହଁ ଏବଂ ସାମାଜିକ ସଂପର୍କମାନଙ୍କର କିଛିହେଲେ ବସ୍ତୁନିଷ୍ଠ ବିଶ୍ଳେଷଣ ସୁଦ୍ଧା କରିନାହଁ ? ସେଇଟା ହିଁ ହେଉଛି ଅଧିବିଦ୍ୟାର ପ୍ରଥମ ଲକ୍ଷଣ । ଯେତେବେଳେ ବିନା କିଛି ଗବେଷଣାରେ ତୁମେ ମନକୁ ମନ କିଛି କଳ୍ପନା କର ଓ ଏକ ସାଧାରଣ ତତ୍ତ୍ୱ ତିଆରି କରିଦିଅ, ତଥ୍ୟ ଅଧ୍ୟୟନ ନ ଥାଇ ଯେଉଁ ତତ୍ତ୍ୱ ପ୍ରସ୍ତୁତ କରାଯାଏ, ତାହାହିଁ ଅଧିବିଦ୍ୟା । ସେହିଭଳି ଉଇଟ୍‌ଗେନ୍‌ଷ୍ଟାଇନ୍ କହୁଛନ୍ତି, ଭାଷା ଯେତେବେଳେ ଛୁଟିରେ ଯାଏ, ସେତେବେଳେ ଅଧିବିଦ୍ୟା ଜନ୍ମନିଏ ।

ଅର୍ଥାତ୍ ଭାଷାର ସାଧାରଣ ବ୍ୟବହାରକୁ ଦୃଷ୍ଟି ନଦେଇ ତୁମେ ଯେତେବେଳେ ମୂଳ ପ୍ରସଂଗଠାରୁ ନିଜକୁ ବିଚ୍ଛିନ୍ନ କରିନିଅ, ସେତେବେଳେ ତୁମ ଇଚ୍ଛା ମୁତାବକ ତତ୍ତ୍ୱଟିଏ ଜନ୍ମନିଏ । ତାକୁ ଆଧାତ୍ମିକ, ଆଧିଭୌତିକ ବା ଅଧିବିଦ୍ୟା ଭିତ୍ତିକ କୁହାଯାଏ । ଭାଷାର ପ୍ରଚଳିତ ଅର୍ଥ ଆଉ ସେତେବେଳେ କାମ ଦିଏନି । ତେଣୁ, ଭାଷା ଛୁଟିରେ ଯାଏ । ମନସ୍ତତ୍ତ୍ୱବିତ୍ ନହୋଇ ତୁମେ ଆତ୍ମାର ପ୍ରକୃତି ବିଷୟରେ ଲେଖିଚାଲ । ସୂର୍ଯ୍ୟପୃଷ୍ଠକୁ ଯାଇ ସମୟର ଚିରନ୍ତନ ଅର୍ଥ ଖୋଜିବସ । ଜୀବତତ୍ତ୍ୱବିଦ୍ ନହୋଇ ଜୀବନ ବିଷୟରେ ବହୁ ସାଧାରଣ ଅସାଧାରଣ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟାକର । ଏହିଭଳି ଜନ୍ମନିଏ ଅଧିବିଦ୍ୟା । କିନ୍ତୁ ଆମର ଉଦ୍ଦେଶ୍ୟ ଜମାରୁ କିଛି ଅଧିବିଦ୍ୟାଗତ ସନ୍ଦର୍ଭ ନୁହେଁ । ଜୀବନକୁ ଆମେ ସିଧାସଳଖ ସାଧାରଣ ଲୋକଜୀବନ ଓ ସଂଗ୍ରାମକୁ ଆମେ ଲୋକସଂଗ୍ରାମ ବା ସମାଜ ଭିତରେ ଜଣେ ବ୍ୟକ୍ତିର ଜୀବନ ସଂଗ୍ରାମ ରୂପେ ବିଚାର କରୁ ।

ଓଡ଼ିଶାରେ ଗତ ୩୦ବର୍ଷର ଲୋକସଂଗ୍ରାମକୁ ଯଦି ମନେ ପକେଇବା ତେବେ ଲୋକସଂଗ୍ରାମର ଏକ ପଲଟଣ ଆମ ସାମ୍ନାକୁ ଆସିବ । ସେଥିରୁ ପ୍ରଥମଟି ହେଉଛି, ବାଲିଆପାଳର ଘାଟି ବିରୋଧୀ ଲୋକସଂଗ୍ରାମ । ସେଇ ବିପୁଳ ଲୋକସଂଗ୍ରାମରେ ସେଠିକାର ବ୍ୟାପକ ଚାଷୀ ମୂଲିଆଙ୍କ ସାଥୀରେ ଯୋଡ଼ି ଯାଇଥିଲେ ସାରା ଓଡ଼ିଶାର ପ୍ରଗତିଶୀଳ ଲେଖକ, ଶ୍ରମିକ, ବୈଜ୍ଞାନିକ, ସାଂସ୍କୃତିକ କର୍ମୀ ଓ ଗଣତାନ୍ତ୍ରିକ ଅଧିକାରୀ କର୍ମୀମାନେ । କେତେକେତେ ପଦଯାତ୍ରା, ଓଡ଼ିଶା ତଥା ଜାତୀୟସ୍ତରର ତଥ୍ୟାନୁସନ୍ଧାନ କମିଟି ମାନଙ୍କର ଗସ୍ତ, ସାଂସ୍କୃତିକ କର୍ମୀମାନଙ୍କର ରାସ୍ତାଧାର-ନାଟିକା ପରିବେଷଣ ଏବଂ ଡକୁମେଣ୍ଟାରୀ ଫିଲ୍ମ ପ୍ରସ୍ତୁତି, ମତ୍ସ୍ୟଜୀବୀମାନଙ୍କ ହୁଙ୍କାର ଓ ମା'ମାନଙ୍କ ଶଙ୍ଖନାଦ ଭିତରେ ଏଇ ଲୋକଆନ୍ଦୋଳନ ଧୀରେଧୀରେ ପ୍ରତିବାଦ ଓ ପ୍ରତିରୋଧର ଏକ ପ୍ରତୀକ ପାଲଟିଗଲା । ଖାଲି ବାଲେଶ୍ୱର ଜିଲ୍ଲାରେ ନୁହେଁ, ସାରା ଓଡ଼ିଶା ଓ ଭାରତର ବିଭିନ୍ନ ସ୍ଥାନରେ ଏହା ପାଇଁ ସଂହତି ଆନ୍ଦୋଳନ ଗଢ଼ି ଉଠିଲା ଏବଂ ସର୍ବଶେଷରେ ଜନତାର ବିଜୟ ହେଲା । ଘାଟି ପ୍ରସ୍ତାବ ପ୍ରତ୍ୟାହୃତ ହେଲା । ସେହି ପ୍ରାୟ ଏକା ସମୟରେ ଗନ୍ଧମାର୍ଦ୍ଦନଠାରେ ଚାଲିଲା ଆଲୁମିନିୟମ୍ କମ୍ପାନୀ ବାଲ୍‌କୋ ବିରୋଧରେ ପଶ୍ଚିମ ଓଡ଼ିଶା ଆଦିବାସୀ ଓ ଚାଷୀମୂଲିଆଙ୍କ ବାଲ୍‌କୋ ହଟାଓ ଆନ୍ଦୋଳନ । ପରେପରେ ଇନ୍ଦ୍ରାବତୀ ବୁଡ଼ି ଅଞ୍ଚଳ ଲୋକଙ୍କର ବିସ୍ଥାପନ ବିରୋଧୀ ଆନ୍ଦୋଳନ, ଚିଲିକା ମତ୍ସ୍ୟଜୀବୀମାନଙ୍କ ଟାଟା ବିରୋଧୀ ଆନ୍ଦୋଳନ, ଗୋପାଳପୁର ଚମାଖଣ୍ଡି ଅଞ୍ଚଳରେ ଟାଟାର ଇସ୍ପାତ କାରଖାନା ବିରୋଧୀ ସଂଗ୍ରାମ, କାଶୀପୁର କୁଚେଇପଦରଠାରେ ଆଲ୍‌କାନ୍ ବିରୋଧୀ ଲଢ଼େଇ, ଲାଞ୍ଜିଗଡ଼ର ନିୟମଗିରିଠାରେ ବେଦାନ୍ତ ବିରୋଧରେ ଡଙ୍ଗ୍ରିଆ କନ୍ଧମାନଙ୍କ ଲଢ଼େଇ, ପଶ୍ଚିମ ଓଡ଼ିଶା ଚାଷୀମାନଙ୍କର ହୀରାକୁଦର ପାଣିପାଇଁ କର୍ପୋରେଟ୍ ଶିଳ୍ପ ବିରୋଧୀ ଲଢ଼େଇ, କଳିଙ୍ଗ

ନଗରଠାରେ ଟାଟା ବିରୋଧରେ ଆଦିବାସୀ ଚାଷୀଙ୍କର ସଂଗ୍ରାମ ଓ ବର୍ଷାଧିକ ବ୍ୟାପି ରାସ୍ତା ଅବରୋଧ, ମାଲକାନଗିରି ଆଦିବାସୀମାନଙ୍କର କାଠମାଫିଆ ଓ ବାଉଁଶ ମାଫିଆ ବିରୋଧୀ ଲଢ଼େଇ ସାଂଗକୁ ହାମ୍‌କୋ ଓ ଏସାର୍ କମ୍ପାନୀ ବିରୋଧୀ ଲଢ଼େଇ, ପୁଣି ନାରାୟଣପାଟଣାର ତଥା ମାଲକାନ୍‌ଗିରି ଆଦିବାସୀଙ୍କ ଜମି ଲଢ଼େଇ ଚଳନ୍ତି ସମୟର ସର୍ବାଧିକ ପ୍ରଭାବଶାଳୀ ସଂଗ୍ରାମ ରୂପେ ଇତିହାସ ରଚନା କରିବାକୁ ସକ୍ଷମ ହୋଇପାରିଛି । ଏଥିରେ ସହିଦ୍ ହୋଇଛନ୍ତି କଳିଙ୍ଗନଗରର ୧୪ଜଣ ଆଦିବାସୀ, କାଶୀପୁରର ୩ଜଣ ଓ ନାରାୟଣପାଟଣାର ଦଶରୁ ଅଧିକ ଆଦିବାସୀ । ସରକାରଙ୍କର ଦମନର ମାତ୍ରା ବଢ଼ିଛି । ଅପରେସନ୍ ସବୁଜ ଶିକାର ନାମରେ ରାଷ୍ଟ୍ର ତରଫରୁ ଆରମ୍ଭ ହୋଇଛି ସମସ୍ତ ସଂଗ୍ରାମୀ ଜନଆନ୍ଦୋଳନ ଉପରେ ପ୍ରଚଣ୍ଡ ଦମନଲୀଳା । ତଥାପି ଆନ୍ଦୋଳନ ଥମିନି । ଜନସଂଗ୍ରାମ ଜାରି ରହିଛି ।

କାହିଁକି ଏ ସଂଗ୍ରାମ ? ମଣିଷ ଏକ ସୁନ୍ଦର ଜୀବନ ଜିଇଁବ, ସବୁ ଅସୁନ୍ଦର ଓ କୁତ୍ସିତତାକୁ ନିର୍ବାସନ ଦେବ, ଲୋପ କରିବ ଶୋଷଣ ଓ ନିର୍ଯାତନା; ଏହାହିଁ ତ ଜୀବନର ଲକ୍ଷ୍ୟ । ପ୍ରତ୍ୟକ୍ଷ ଉପନିବେଶବାଦ ଆଜି ଲୋପ ପାଇଛି । କାରଣ, ଉପନିବେଶବାଦୀମାନଙ୍କ ମୂଳଭିତ୍ତି ଥିଲା ଉପନିବେଶର ପ୍ରଜାମାନଙ୍କ ଉପରେ ନିର୍ଯାତନା । ସେଥିପାଇଁ ବିସର୍ଜନ ଦେବାକୁ ପଡୁଥିଲା ସେମାନଙ୍କ ଆତ୍ମାକୁ । ଖାସ୍ ମୂଳ ସାମ୍ରାଜ୍ୟର ଅନେକ ବୁଦ୍ଧିଜୀବୀ ଏହାକୁ ବିରୋଧ କରି ଉପନିବେଶ ପ୍ରଜା ସଂଗ୍ରାମକୁ ସମର୍ଥନ ଯୋଗାଇ ଦେଇଥିଲେ ଏବଂ ଅଂଶଗ୍ରହଣ ମଧ୍ୟ କରିଥିଲେ ।

ବ୍ୟକ୍ତିଗତ ଜୀବନର କଥା ଏଠି ପଡ଼ିନି, ପଡ଼ିଚି ସାମାଜିକ ଜୀବନର କଥା । ସମାଜକୁ ବେଢ଼ି ଯେଉଁ ରାଜନୀତି ଓ ଅର୍ଥନୀତି ଗଢ଼ି ଉଠିଛି, ତାକୁ ତ ଆଉ ବାଦ୍ ଦେଇ ହେବନି । ଆମର ଅର୍ଥନୈତିକ ସଂକଟ ବିଶେଷକରି ଯେଉଁଠି ସାମନ୍ତବାଦ ଯାଇ ମଧ୍ୟ ଯାଇନି, ପୁଞ୍ଜିବାଦ ଆସି ମଧ୍ୟ ଆସିନି, ନବ୍ୟ ସାମ୍ରାଜ୍ୟବାଦର ଚରାଭୂଇଁ ପାଲଟିବାପାଇଁ ଆମର ସବୁ ଦରଜା ଉନ୍ମୁକ୍ତ, ଏଭଳି ଏକ ସମାଜରେ ଆକାଶଛୁଆଁ ଦୁର୍ନୀତି, ସଟ୍ଟାବାଜି, ଆଦିବାସୀ ସଂକଟମୋଚନ ଯୋଜନାର ଆଖିବୁଜା ଲୁଟ୍ ଏସବୁ ଏମିତି ସ୍ୱାଭାବିକ ଭାବେ ଚାଲିଛି ଯେ, ଜଣେ ଚାଷୀମୂଲିଆ ଶ୍ରମଜୀବୀ ହୁଏତ ସଂଗ୍ରାମ କରି ଜିତିବ ଏବଂ ମଣିଷ ଭାବେ ଜିଇଁବ କିମ୍ବା ସହିଦ୍ ହୋଇ ନିଜର ପରବର୍ତ୍ତୀ ପିଢ଼ିପାଇଁ ଏକ ସୁନ୍ଦର ଆଦର୍ଶ ରଖିଯିବ, ଅଥବା ମଥା ନୁଏଁଇ ନିଜର ଆତ୍ମାକୁ ବଳିଦେଇ ପୋକମାଛି ଭଳି ବଞ୍ଚିବ ? 'ନାନ୍ୟ ପନ୍ଥା ବିଦ୍ୟତେ ଅୟନାୟ' ।

ଗତ ଶତାବ୍ଦୀର ପଞ୍ଚମ ଦଶକରେ ଆଫ୍ରିକୀୟ ରାଷ୍ଟ୍ର କଙ୍ଗୋର ବିଜୟୀବୀର ଲୁମୁମ୍ବାଙ୍କୁ ଜଣେ ସାମ୍ବାଦିକ ପ୍ରଶ୍ନ କରିଥିଲେ, ସୁଖ କଣ ? ତାଙ୍କର ଉତ୍ତର ଥିଲା ସଂଗ୍ରାମ ।

ଆମେ ବି କହୁ ସଂଗ୍ରାମ ହିଁ ସୁଖ, ସଂଗ୍ରାମ ହିଁ ଜୀବନ । ଓଲଟା ଭାବେ କହିଲେ ଜୀବନ ହିଁ ସଂଗ୍ରାମ । ସଂଗ୍ରାମ ବିହୀନ ଜୀବନ ମୃତ୍ୟୁଠାରୁ ଭୟାନକ ।



ଜୀବନର ଯେଉଁ ସୂତ୍ର ଓ ଶୃଙ୍ଖଳା ଅନୁସାରେ ଶୀତଳିତ ପୃଥିବୀପୃଷ୍ଠରେ ଜୀବସତ୍ତାର ଉଦ୍ଭବ ହେଲା, ଯେଉଁ ସୂତ୍ର ଅନୁସାରେ ଉଦ୍ଭିଦ ଜଗତ ପରେପରେ ଲକ୍ଷଲକ୍ଷ ବର୍ଷର ବିବର୍ତ୍ତନ ସଂଘଟିତ ହେଲା ଓ ପ୍ରାଣୀଜଗତର ଆବିର୍ଭାବରେ ସୂକ୍ଷ୍ମ ଅଣୁସ୍ତରରେ ସଂଗ୍ରାମରତ ଶୁକ୍ରାଣୁଟିଏ ଭ୍ରୂଣରେ ପରିଣତ ହେଲା, ତାହା ହେଉଛି ବସ୍ତୁର ସ୍ୱଭାବଗତ ଆତ୍ମପ୍ରକାଶ ପ୍ରବୃତ୍ତି । ବିଭିନ୍ନ ପ୍ରକାରର ସଂଘର୍ଷ ଓ ସଂଗ୍ରାମ ମଧ୍ୟରେ ଏହା ଘଟେ । ପ୍ରତିଟି ବସ୍ତୁର ପାରମାଣବିକ ସ୍ତରରେ ପ୍ରୋଟନ୍ ଓ ଇଲେକ୍ଟ୍ରୋନ୍‌ର ଯେଉଁ ନିରନ୍ତର ଗତି ଓ ସଂଘର୍ଷ ଅହର୍ନିଶ ଲାଗି ରହିଛି ତାରି ମଧ୍ୟରୁ କେବେ କେଉଁ ବାଗରେ ଜୀବସୃଷ୍ଟି ହୋଇଛି ତାର ବୈଜ୍ଞାନିକ ଗବେଷଣା ଆଜିବି ଜାରି ରହିଛି । ପୃଥିବୀ ସ୍ଥିର କହି ତା' ଚାରିପଟେ ଗ୍ରହ ଓ ନକ୍ଷତ୍ର ଜଗତକୁ ବୁଲାଇ ଦିନେ ଯେଉଁ ମଣିଷ ନିଜକୁ ବିଶ୍ୱକୈନ୍ଦ୍ରିକ ବୋଲି ଜ୍ଞାନ କରୁଥିଲା ଓ ଆପଣାର କ୍ରୀତଦାସ ପ୍ରଥା ଓ ସାମନ୍ତ-ପ୍ରଜା ପ୍ରଥାକୁ ବାହାବା ଜଣାଇ ନିଜ ସୃଷ୍ଟ ଈଶ୍ୱରଙ୍କ ମହିମାରେ ମୁଗ୍ଧଚକିତ ହେବାପାଇଁ ସମସ୍ତଙ୍କୁ କହୁଥିଲା, ବିଜ୍ଞାନର ଗବେଷଣାଲବ୍ଧ ଜ୍ଞାନର ଝଡ଼ରେ ସେଇସବୁ କଳ୍ପଜଗତ ଆଜି ଚୁର୍‌ମାର୍ ହୋଇଯାଇଛି । ବିଜ୍ଞାନର ଜୟଯାତ୍ରା ସହ ପାଦ ମିଳାଇଛି ସମାଜ ବିଜ୍ଞାନର ଜୟଯାତ୍ରା । ସାମାଜିକ ଜୀବନରେ ଶ୍ରେଣୀ-ସଂଘର୍ଷର ଭୂମିକା କିପରି ଉତ୍ପାଦନ ପଦ୍ଧତି ଓ ଉତ୍ପାଦିକା ଶକ୍ତିର ସଂପର୍କଗତ ପରିବର୍ତ୍ତନ ଦ୍ୱାରା ନିର୍ଦ୍ଧାରିତ ହୁଏ, ସାମାଜିକ କ୍ଷେତ୍ରରେ ଐତିହାସିକ ବସ୍ତୁବାଦ କିପରି ସମାଜକୁ ପ୍ରଗତିପଥରେ ଆଗେଇ ନିଏ, ସେ ବିଷୟରେ ବିଚାର ଆଲୋଚନାର ସୂତ୍ରପାତ ହୋଇଛି ପ୍ଲାଟୋ ଓ କଣାଦଙ୍କ ଠାରୁ ଏବଂ ହେଗେଲ୍, ରଷୋ, ମାର୍କ୍ସ, ଲେନିନ୍ ଓ ମାଓସେତୁଙ୍ଗଙ୍କ ଚିନ୍ତାଧାରା ଜରିଆରେ ଆଜିପର୍ଯ୍ୟନ୍ତ ଅଗ୍ରଗତି କରି ଆସିଛି । ସଂଗ୍ରାମ ଓ ସଂଘର୍ଷର ଭୂମିକା ଯେ କେବଳ ଧ୍ୱଂସ ଓ ରକ୍ତପାତ ନୁହେଁ, ବରଂ ତାହା ସବୁବେଳେ ଜୀବନାଭିମୁଖୀ ଏକଥା ପ୍ରମାଣିତ ହୋଇଛି । "Negation of negation" ବା ନାହିଁ ନାହିଁର ନାହିଁ ନାହିଁ ଯେ ମାନବ ଚେତନାକୁ ଆଗକୁ ଆଗକୁ ଆଗେଇ ନେଇଛି - ପ୍ରତ୍ୟେକ ଚିନ୍ତାର ବିରୋଧୀ ଚିନ୍ତା ଓ ସେ ଦୁଇ ଚିନ୍ତାର ସମନ୍ୱୟ- ଥେସିସ୍, ଏଣ୍ଟି ଥେସିସ୍ ଓ ସିନ୍ଥେସିସ୍ ଏବଂ ଏଇ ଧାରାର ପୌନପୁନିକ ପ୍ରବର୍ତ୍ତନ ମାଧ୍ୟମରେ ଚିନ୍ତାର ଅଗ୍ରଗତି ମାନବ ଚିନ୍ତା ଓ ଚେତନାକୁ ବିକଶିତ କରିଛି ଓ କରୁଛି । ଯେତେବେଳେ, ଯେଉଁ ମୁହୂର୍ତ୍ତରେ ରାଷ୍ଟ୍ରଶକ୍ତି ସ୍ଥିତାବସ୍ଥାକୁ ଜାବୁଡ଼ି ଧରିବା ପାଇଁ ଲକ୍ଷଲକ୍ଷ ଆଇନ କାନୁନ୍‌ର ବାଡ଼

ବୁଜିବାକୁ ଚେଷ୍ଟା କରିଛି, ଏବଂ ଘୋଷଣା କରିଛି, ବାସ୍, ସମାଜ ଏଇଠି ଏଥର ସ୍ଥିର ରହିବ, ଯେ ଯେଉଁଠି, ସେଇଠି ସ୍ଥିର ରହ, ସେତିକିବେଳେ ଦେଖାଦେଇଛି ଆଉ ଏକ ଏଣ୍ଟିଥେସିସ୍ । ଲକ୍ଷ କୋଟି ମାନବ ସାରା ବିଶ୍ୱରେ ବିଦ୍ରୋହରେ ଫାଟି ପଡ଼ିଛନ୍ତି - କେଉଁଠି ବିସ୍ଥାପନ ଓ ଅବିଚାରିତ ଶିଳ୍ପାୟନ ବିରୋଧରେ ଆଦିବାସୀ ସମାଜ ତ ଆଉ କେଉଁଠି ଆର୍ଥିକ ସଂକୋଚନ ପ୍ରଭାବରେ ଚାକିରି ବା ଚାକିରିର ନିରାପତ୍ତା ହରାଇଥିବା ପ୍ରଥମ ବିଶ୍ୱର ଯୁବଗୋଷ୍ଠୀ - ଆମେ ଅନେଶତ ଭାଗ - କମ୍ପାନୀ କର୍ପୋରେଟ୍ ଦୂରେଇ ରୁହ ତୁମର ଲାଭ ଓ ଲୋଭର ପିପାସାଠାରୁ ! ଏସବୁ ପଛରେ କେଉଁ ସୂତ୍ର କାମ କରୁଛି ?

ମୁଠେ ଭାତ ଓ ଟୁକୁରାଏ ରୁଟି ପାଇଁ କୌଣସି ପ୍ରକାରେ ନିଜର ଗୁଜୁରାଣ ମେଣ୍ଟାଇବାକୁ ଭୟରେ ଓ ଅସୁରକ୍ଷା ମଧ୍ୟରେ ଜୀବନ କାଟୁଥିବା ଲକ୍ଷକୋଟି ମଣିଷ ରାଷ୍ଟ୍ରର ଦମନ ସକାଶେ ଆତ୍ମରକ୍ଷାର ସହଜାତ ପ୍ରବୃତ୍ତି ଟିକକକୁ ବି ଯେ ବିସର୍ଜନ କରିବେ, ଏଭଳି ଭାବନା ଏକାନ୍ତ ଅବାସ୍ତବ । କିନ୍ତୁ ସାମ୍ରାଜ୍ୟବାଦୀ ଶୋଷଣ କବଳିତ ଆମ ଦେଶର ରାଷ୍ଟ୍ରମୁଖ୍ୟମାନେ ଏଇ ଅବାସ୍ତବ ତତ୍ତ୍ୱର ବାସ୍ତବାୟନରେ ଲାଗି ପଡ଼ିଛନ୍ତି । ସେଥିପାଇଁ ସାରା ଦେଶକୁ ଏକ ଅଘୋଷିତ ଉପଦ୍ରୁତ ଅଞ୍ଚଳରେ ପରିଣତ କରା ସରିଲାଣି । ପୁଲିସ୍ ଓ ସୈନ୍ୟବାହିନୀ ପାଲଟିଛି ଆଜିକା ରାଷ୍ଟ୍ରର ଏକମାତ୍ର ସୁରକ୍ଷା ବର୍ମ । ଲୋକଙ୍କୁ କ୍ଷୁଧାର ଜଳ ଭଉଁରୀ ଭିତରକୁ ଫୋପାଡ଼ି ଦେଇ ବି.ପି.ଏଲ୍. ଯୋଜନା ଓ ନାରେଗାର ଭିକ୍ଷା ଯୋଗାଇ ଦେବାର ବ୍ୟବସ୍ଥା କରିଦିଅ, ଏବଂ ତା'ପରେ ଗଣତନ୍ତ୍ରର ବିଗୁଲ୍ ବଜାଇ ସାମାନ୍ୟତମ ବିଦ୍ରୋହ ଉପରେ ବି ଝାମ୍ପିପଡ଼ି ରକ୍ତର ନଦୀ ବୁହାଇଦିଅ, ଜେଲ୍‌ର ଶୀତଳ ଗର୍ଭକୁ ନିକ୍ଷେପ କର ସଂଘର୍ଷରତ ଲୋକଙ୍କୁ - ବନ୍ଦ କରିଦିଅ ଚିନ୍ତା-ଚେତନା ବିକାଶର ସମସ୍ତ ଦ୍ୱନ୍ଦ୍ୱାତ୍ମକ ପଥ । ଠିକ୍‌ଠାକ୍ ଚାଲିବ ଶାସନ ! ଚାଲିବ ଶୋଷଣ ! ହଁ, ଅବଶ୍ୟ ତା ସାଂଗକୁ ଗଢ଼ିଦିଅ ଶହଶହ ଚକ୍‌ଚାକ୍ ସ୍କୁଲ, ଅଙ୍ଗନୱାଡ଼ି, ହାସ୍ପାତାଲ ଓ କଙ୍କ୍ରିଟ୍ ରାସ୍ତା । କିନ୍ତୁ ଏସବୁ ସ୍କୁଲରେ ପଢ଼ିବେ କାହାର ପିଲା ? କ୍ଷୁଧାରେ ସଢୁଥିବା ଶିଶୁ ଓ କିଶୋର କିଶୋରୀ ?

ବଡ଼ ବିଷମ ଆମ ସମାଜର ସ୍ଥିତି । କମ୍ପାନୀ ଓ କର୍ପୋରେଟ୍‌ମାନଙ୍କ ଅର୍ଥରେ ଜିତା ଯାଇଥିବା ନିର୍ବାଚନ ଓ ପ୍ରତିଷ୍ଠିତ ସରକାର ସାଧାରଣ ଲୋକଙ୍କ କଥା ବୁଝିବେ ନା ଆପଣା ମାଲିକ ମାନଙ୍କ କଥା ?

ଦିନଥିଲା ମଣିଷ ନିଜକୁ ବଞ୍ଚାଇବା ପାଇଁ ପ୍ରକୃତି ବିରୋଧରେ ଲଢୁଥିଲା । ଆଜି ସେ ଘନଜଂଗଲ ନାହିଁ କି ବାଘ ସିଂହ ଆଦି ହିଂସ୍ର ପଶୁ ନାହାନ୍ତି । ସରକାରୀ ଯୋଜନାରେ ସଂରକ୍ଷିତ ଜଂଗଲ ଓ ଅଭୟ ଜଂଗଲ ନିର୍ମାଣ ହେଲାଣି । କିନ୍ତୁ ଯେଉଁ ପରମ ହିଂସ୍ର ଶୋଷକଗୋଷ୍ଠୀ କମ୍ପାନୀ କର୍ପୋରେଟ୍‌ର ଆବରଣ ପିନ୍ଧି ଶାସନ ଡୋରଧରି

ମୃଗ ନଚାଉଛନ୍ତି, ସେମାନଙ୍କୁ କ'ଣ ଲୋକେ ଏବେବି ଚିହ୍ନି ପାରିନାହାନ୍ତି ବୋଲି ରାଷ୍ଟ୍ର ଭାବୁଛି ? ସେଇ ନିଖଟୁ ମାନେ ତ ଏବେ ବି ଭାବୁଛନ୍ତି, ଯୁକ୍ତି ବାଢୁଛନ୍ତି, ମୁଁ ଓ ମୋର ସନ୍ତାନମାନେ ଅର୍ବୁଦପତି । ତେଣୁ ଆମ ଇଂଗିତରେ ସମସ୍ତେ ଉଠବସ୍ ହେବେ । ଗୋଟିଏ ଟଙ୍କା ବି ଅଧିକ ମଜୁରି ଆମେ ଦେବୁନାହିଁ । ଏ ଦୁନିଆଟା ଧସ୍‌ଧସ୍ ହୋଇ ଧସେଇ ପଡୁ, ଧୂଳିସାତ୍ ହୋଇଯାଉ ଏ ଧରଣୀ । ସେଥିରେ ଆମର କ'ଣ ଯାଏ ଆସେ ?

କିନ୍ତୁ ମଣିଷର ଆତ୍ମରକ୍ଷାର ସହଜାତ ପ୍ରବୃତ୍ତି ତାକୁ ଚୁପ୍ ରହିବାକୁ ଦେବନାହିଁ । ଚୁପ୍ ମଧ୍ୟ ସେ ରହିନାହିଁ । ସେଇଥିପାଇଁ ତ ଜନସଂଗ୍ରାମର କେତେନାକେତେ ପଟୁଆର-ଆଉ ରାଷ୍ଟ୍ରର କେତେ ନା କେତେ ଫନ୍ଦି ତାକୁ ଦମନ କରିବାପାଇଁ । ମୁକ୍ତିର ଯେଉଁ ସ୍ରୋତସ୍ୱିନୀ ପ୍ରବାହିତ ହେଉଛି, ମନମୋହନ ମିଶ୍ରଙ୍କ ଭାଷାରେ – ତାର ଦୁଇଟି ତୀର । ଗୋଟିଏ ତୀର ଜୀବନ, ଅନ୍ୟଟି ମରଣ । ମୁକ୍ତି ପାଗଳ ଜନତା ଏଇ ସ୍ରୋତସ୍ୱିନୀରେ ଝାମ୍ପ ଦେଇ ହୁଏତ ଏ କୂଳ ନଚେତ୍ ଆରକୂଳରେ ଲାଗିବ । ହେବ ସହିଦ, ନଚେତ୍ ଜଣେ ମୁକ୍ତ ମଣିଷ । "ଏ ହାତେ ଦେଇଛ ଭିକ୍ଷାଝୁଲି, ବୁକୁରେ ଝାଞ୍ଜି ବତାସୀ । ତେଣୁ କୋମଳ ଶିଶୁ ଖସିଛି ତୁମରି ବନ୍ଧୁକେ ଉପହାସି । ନିମନ୍ତ୍ରଣ ଆଜି ଆସିଛି ତୁମରି ଗୋଳାବାରୁଦର ଭୋଜି । ଆସିଛୁ ତାହାରେ ଖୋଜି !"

ଗୋଟିଏ ପଟେ ଗୋଳାବାରୁଦର ପାହାଡ଼, ପରମାଣୁ ବୋମାର ବୀଭତ୍ସ ଜମାଏତ୍ । ଅନ୍ୟପଟେ ଶ୍ରମଜୀବୀ ବୁଦ୍ଧିଜୀବୀ ମଣିଷର ସାମୂହିକ ମୁକ୍ତି ପିପାସା ଓ ବୁକୁରେ ଥିବା ଝାଞ୍ଜି ବତାସୀ । ଯାହା ଅଭାବ ରହିଛି, ତା ହେଉଚି କେବଳ ମନୋନିଷ୍ଠ ଉପାଦାନ, ନେତୃତ୍ୱର ଉପାଦାନ । ବଳିଷ୍ଠ ସଂଗଠିକା ଶକ୍ତିର ସଂଯୋଗରେ କେବଳ ସର୍ବବ୍ୟାପୀ ସଂଘର୍ଷର ସୂତ୍ରପାତ ହୋଇପାରିବ । ଏଠି ସେଠି ଜଳି ଉଠୁଥିବା ଅଗ୍ନିମାନଙ୍କୁ ଏକୀଭୂତ କରି ଜୀବନର ସମସ୍ତ ଶୃଙ୍ଖଳକୁ ହଟାଇବାର ମନ୍ତ୍ର ଗାନ କରିବାକୁ ହେବ । ତେବେ ଯାଇ ୯୯ ଭାଗ ନିଷ୍ପେଷିତଙ୍କ ହାତକୁ ଶାସନ ଆସିବ ଏବଂ ଏକ ଭାଗ ନିଖଟୁ ଦଲାଲ୍ ପୁଞ୍ଜିପତିଙ୍କୁ ରୋକ୍‌ଠୋକ୍ ଜବାବ୍ ଦିଆଯାଇ ପାରିବ । ରାଷ୍ଟ୍ରର ସୁରକ୍ଷା ବର୍ମ ହିଁ ପ୍ରଶ୍ନ ପଚାରିବା ଆରମ୍ଭ କରିବ । ସେତେବେଳେ ମୁକ୍ତି ସ୍ରୋତସ୍ୱତୀ ଜନତା ଜଳଧିକୁ ଆଲିଙ୍ଗନ କରିବ ହିଁ କରିବ । ଜୀବନ ଓ ସଂଗ୍ରାମର ଏହି ଅସଲ ସୂତ୍ର ଏପରି ଏକ ସମାଜବାଦ ଆଣିବ ଯେଉଁଠି ମଣିଷର ସାମ୍ୟ ଓ ସାମୂହିକତା, ପ୍ରକୃତି ଓ ଜୀବଜଗତ ସହ ତାର ସହଯୋଗ ଓ ସଖ୍ୟ ଏଇ ଧୂଳିମାଟିରୁ ଧରଣୀରେ ସ୍ୱର୍ଗାବତରଣ କରାଇ ପାରିବ ।



# ଜୀବନ ଏକ ପ୍ରଶ୍ନବାଚୀ

**କାଳୀପଦ ପଣ୍ଡା**

ଜୀବନ ଓ ସଂଗ୍ରାମ ପରସ୍ପର ପରିପୂରକ । ମାନବ ସଭ୍ୟତାର କ୍ରମବିକାଶର ଆଦ୍ୟକାଳରୁ ଜୀବନ ଜିଇଁବା ଭିତରେ ମଣିଷ ସମାଜ ସଂଗ୍ରାମରତ । ହଜାର ହଜାର ବର୍ଷତଳର ଆଦିମ ମାନବ ଜିଇଁବା ପାଇଁ ଜୀବଜନ୍ତୁ ଠାରୁ ଆରମ୍ଭ କରି ପ୍ରକୃତି ସହିତ ସଂଗ୍ରାମ କରି ଆସୁଥିଲା । ଜୀବନକୁ ଅଧିକରୁ ଅଧିକ ଆନନ୍ଦମୟ ବା ଉନ୍ନତମୁଖୀ କରିବାରେ କେବେ ପ୍ରାକୃତିକ ସଂପଦକୁ ତ କେବେ ଜୀବଜନ୍ତୁକୁ ନଷ୍ଟ କରିବାକୁ ପଶ୍ଚାତ୍‌ପଦ ହୋଇନାହିଁ । ଏଥିପାଇଁ ସେ ସଦା ସଂଘର୍ଷ କରିଛି ।

ଜୀବନର ଅନ୍ୟ ନାମ ଦୁଃଖ ବୋଲି କେତେକ ଦାର୍ଶନିକ ମତବ୍ୟକ୍ତ କରିଥିବା ବେଳେ ଆଉ କେତେକେ ଜୀବନ ହେଉଛି ଆନନ୍ଦମୟ ବୋଲି ମତ ଦିଅନ୍ତି । ତେବେ, ଏ ବାବଦରେ ଏତିକି କୁହାଯାଇପାରେ ଯେ ସାଧାରଣ ଖଟିଖିଆ ମୂଲିଆ ଶ୍ରେଣୀର ବ୍ୟକ୍ତିଠାରୁ ଆରମ୍ଭକରି କୋଟିପତି ଶ୍ରେଣୀର ବ୍ୟକ୍ତିମାନେ ମଧ୍ୟ ନିଜନିଜ କ୍ଷେତ୍ରରେ ଜୀବନଯାତ୍ରାରେ ସଦା ସଂଘର୍ଷଶୀଳ । କାରଣ, ସଂଘର୍ଷରେ ହିଁ ଲକ୍ଷ୍ୟ ପ୍ରାପ୍ତି ବା ସଫଳତା ଆସିଥାଏ ।

ବିଶ୍ୱମାନବ ସଂପ୍ରଦାୟ ଭିନ୍ନଭିନ୍ନ ସମୟରେ ନାନା ବିଷୟକୁ କେନ୍ଦ୍ରକରି ସଂଗ୍ରାମଶୀଳ ହୋଇ ନୂତନ ଆବିଷ୍କାର ଓ ଉଦ୍‌ଭାବନ କରିଆରେ ଜୀବନକୁ ଅଧିକ ସୁଖମୟ କରିବା ଦିଗରେ ବ୍ରତୀ ହେଉଥିବାବେଳେ କେବେକେବେ ଏହି ସଂଘର୍ଷର କୁପରିଣାମକୁ ମଧ୍ୟ ସାମନା କରିବାକୁ ପଡ଼ିଛି । ବ୍ୟକ୍ତିଟିଏ ଗୋଟିଏ ପରିବାର ଭିତରେ ନିଜର ସ୍ଥିତାବସ୍ଥା ଭିତରେ ଥାଇ ତା ସମୟର ଆବଶ୍ୟକତାକୁ ପୂରଣ କରିବା ଦିଗରେ ଯେଭଳି ସଂଘର୍ଷଶୀଳ ହୁଏ, ସେହିଭଳି ଭାବରେ ଗୋଟିଏ ଗୋଟିଏ ଗୋଷ୍ଠୀ, ସଂପ୍ରଦାୟ ଅଥବା ଗୋଟିଏ ଗୋଟିଏ ଭୂଖଣ୍ଡର ଅଧିବାସୀ ସେମାନଙ୍କର ବିବିଧ ଆବଶ୍ୟକତାକୁ ପୂରଣ କରିବା ଦିଗରେ ସମଷ୍ଟିଗତ ଭାବରେ ସଂଗ୍ରାମଶୀଳ ରହିଥାନ୍ତି । ସଂଗ୍ରାମ ଭିତରୁ ହିଁ ସଫଳତା ଆସିଥାଏ ।

ଜୀବନ ଜିଇଁବାର ମାର୍ଗ ସଭିଙ୍କ ପାଇଁ ଅଲଗା ଅଲଗା ହେଲେ ମଧ୍ୟ ଗୋଟିଏ ରାଷ୍ଟ୍ରରେ ବସବାସ କଲାବେଳେ ସେ ରାଷ୍ଟ୍ରର ସାମାଜିକ ବିଧିବ୍ୟବସ୍ଥା ମଧ୍ୟରେ ତାକୁ

ଜିଇଁ ରହିବାକୁ ପଡ଼ିଥାଏ । ତାକୁ ଅବମାନନା କଲେ ରାଷ୍ଟ୍ର ସେଇ ବ୍ୟକ୍ତିକୁ ଦଣ୍ଡବିଧାନ କରିବାକୁ ବାଧ୍ୟ ହୋଇଥାଏ । ଏଠାରେ ମୌଳିକ ପ୍ରଶ୍ନଟି ସ୍ୱତଃ ମନକୁ ଆସେ, ଜୀବନ କ'ଣ ? ଏଇ ଜୀବନର ଜୟଯାତ୍ରା କେଉଁଠୁ ଆରମ୍ଭ ଓ କେଉଁଠି ଶେଷ ? ଏହାର ଆଦି ଓ ଅନ୍ତ ଏଯାଏଁ ଧାର୍ଯ୍ୟ ହେଲାଣିକି ? ପୁନଶ୍ଚ ଏଇ ଜୀବନ କେଉଁ ଅଦୃଷ୍ଟ ସ୍ରଷ୍ଟା (ଗଡ୍)ଙ୍କର ଦାନ ନା' ଏହା ମନୁଷ୍ୟକୃତ ? ଅବଶ୍ୟ ନିରୀଶ୍ୱରବାଦୀଙ୍କ ମତ ଏ ଦିଗରେ ଭିନ୍ନ । କିନ୍ତୁ ଏହା ସ୍ୱତଃସିଦ୍ଧ ଯେ, ଜୀବନ ଯେପର୍ଯ୍ୟନ୍ତ ଶରୀରରୂପୀ ଖୋଳପା ଭିତରେ ବିଦ୍ୟମାନ, ମଣିଷ ସେ ଯାଏ ସଜୀବ । ଅଥଚ ଏହି ଜୀବନ, ଯାହା ହୁଏତ ଆତ୍ମାର ଅଧୀନ, ତାହାକୁ ଧାରଣ କରି ମନୁଷ୍ୟସମାଜ ଆଜିଯାଏ ତାର ସମସ୍ତ ବିଦ୍ୟାବୁଦ୍ଧି ଖଟାଇ ତାକୁ ନିଜ ନିୟନ୍ତ୍ରଣାଧୀନ କରିବାରେ ସମର୍ଥ ହୋଇନାହିଁ । ତାହା ଯଦି ହୋଇଥାନ୍ତା, ତେବେ ମୃତ୍ୟୁ ଭଳି ମହାକାଳକୁ ବିନାଶ କରି ଚିରଞ୍ଜୀବୀ ହୋଇପାରିଥାନ୍ତା । ତାହା କିନ୍ତୁ ଏଯାବତ୍ ସମ୍ଭବ ହୋଇନାହିଁ ବା ମୋର ମନେହୁଏ କେବେବି ସମ୍ଭବ ହେବନାହିଁ । ବୃକ୍ଷଲତା ଠାରୁ ଆରମ୍ଭ କରି ପଶୁପକ୍ଷୀ ପର୍ଯ୍ୟନ୍ତ ସଭିଙ୍କ କ୍ଷେତ୍ରରେ ଯେଉଁଭଳି ବାଲ୍ୟ, କୈଶୋର, ଯୌବନ ଓ ବାର୍ଦ୍ଧକ୍ୟ ବିଦ୍ୟମାନ, ସେଥିରୁ ମଣିଷ ବା କେମିତି ବାଦ ପଡ଼ିବ ? ପ୍ରକୃତି ଚକ୍ରରେ ପୃଥିବୀ ବକ୍ଷରେ ଯଦି ଷଡ଼ଋତୁ ପରିବର୍ତ୍ତେ କେବଳ ଗୋଟିଏ ଋତୁର ଉପସ୍ଥିତି ଘଟନ୍ତା, ତେବେ ତ ମନୁଷ୍ୟ ସମାଜ ତିଷ୍ଠି ରହିବାରେ ବିଭ୍ରାଟ ସୃଷ୍ଟି ହୁଅନ୍ତା । ସେଭଳି ଭାବରେ ମଣିଷ ଜନ୍ମ ନେଇ ଯଦି ମୃତ୍ୟୁବରଣ ନ କରନ୍ତା, ତେବେ ତ ପ୍ରଜନ୍ମର ଆବଶ୍ୟକତା ଉପଲବ୍ଧି ହୁଅନ୍ତା ନାହିଁ । ଏଣୁ, ଗୋଟିଏ ନିର୍ଦ୍ଦିଷ୍ଟ ବିଧି ବ୍ୟବସ୍ଥା ମଧ୍ୟରେ ବିଶ୍ୱମାନବ ସଂପ୍ରଦାୟ ଜିଇଁ ଚାଲିଛନ୍ତି କାଳକାଳ ଧରି । ପୁଣି ଏହି ଜିଇଁବାର ମହାର୍ଘ ସମୟ କେଉଁ ବ୍ୟକ୍ତି ପକ୍ଷେ କେତେ ସମୟ ତାହା ମଧ୍ୟ ନିର୍ଦ୍ଧାରିତ । ହଁ, ଏହା ନିଃସନ୍ଦେହରେ କୁହାଯାଇପାରେ ଯେ, ବୁଦ୍ଧିମାନ ମଣିଷ ଅନ୍ୟ ସବୁ ଜୀବଠାରୁ ଶ୍ରେଷ୍ଠଜୀବ ଭାବରେ ପ୍ରକୃତିଦତ୍ତ ବିଭିନ୍ନ ସାମଗ୍ରୀକୁ ନେଇ ନାନା ପରୀକ୍ଷା ନିରୀକ୍ଷା ଭିତରେ ତାର ଜୀବନକୁ ଅଧିକ ରସାଣିତ ଓ ଉପଭୋଗ୍ୟ କରି ନିରୋଗ ରହିବା ଦିଗରେ ଅନେକାଂଶରେ ସଫଳକାମୀ ହେଲାଣି । ସେ ତାର ବଞ୍ଚିବାର ଆୟୁକାଳକୁ କ୍ରମଶଃ ବଢ଼ାଇବାରେ ସଫଳ ହେଉଛି । ଜୀବନ-ରକ୍ଷାକାରୀ ଔଷଧ ନିର୍ମାଣ କରି ଦୁରାରୋଗ୍ୟ ବ୍ୟାଧିନାଶ କରିବା ଦିଗରେ ବି ସଫଳତା ପାଇଲାଣି ।

ଖାଦ୍ୟ, ବସ୍ତ୍ର, ବାସଗୃହ, ଔଷଧ ଆଦି ମୌଳିକ ଆବଶ୍ୟକତା ପୂରଣ ଦିଗରେ ଯେଉଁ ସଂଗ୍ରାମ ଶତଶତ ବର୍ଷ ଧରି ମାନବସମାଜ ଜାରି ରଖି ଆସିଥିଲା, ଏବେ କିନ୍ତୁ ସେଥିରେ ଅନେକାଂଶରେ ପରିବର୍ତ୍ତନର ଆବଶ୍ୟକତା ଦେଖାଦେଲାଣି । ଅର୍ଥାତ୍ ମଣିଷ

ବଣଜଂଗଲରର ହିଂସ୍ରଜନ୍ତୁ ମାନଙ୍କୁ ହତ୍ୟାକରି, ଜଂଗଲ ସଫା କରି ପୁଣି ଭୂଗର୍ଭସ୍ଥ ଭୂସଂପଦକୁ ନିଜ ପାଇଁ ବ୍ୟବହାର କରିଛି । ହେଲେ, ଏଣିକି ଆଉ ସେସବୁର ନଷ୍ଟ ନ କରିବାର ସମୟ ଉପନୀତ । ବହୁ ରାଷ୍ଟ୍ର ଏ ଦିଗରେ ମଧ୍ୟ ଆଇନ ପ୍ରଣୟନ କରିବାକୁ ବାଧ୍ୟ ହେଉଛନ୍ତି । ଜଂଗଲସଂପଦ ଠାରୁ ଭୂସଂପଦର ସୁରକ୍ଷା କରିବା, ନୂତନ ଜଂଗଲ ସୃଷ୍ଟି କରିବା, ପଶୁପକ୍ଷୀ ଓ ଜୀବଜନ୍ତୁଙ୍କୁ ହତ୍ୟା ନ କରି ସେମାନଙ୍କ ପାଇଁ ଅଭୟାରଣ୍ୟ ସୃଷ୍ଟି କରିବାର ଅବସ୍ଥା ଦେଖାଦେଇଛି । ନଚେତ୍ ଆଉ ଭାରସାମ୍ୟ ରକ୍ଷା ହୋଇପାରିବ ନାହିଁ । ପୂର୍ବଭଳି ଠିକ୍ ସମୟରେ ବର୍ଷା ଅଥବା ଶୀତ ହେଉନାହିଁ । ବାୟୁମଣ୍ଡଳ ଉତ୍ତପ୍ତ ହୋଇ କ୍ରମଶଃ ଅଂଶୁଘାତ ବଢ଼ିବାରେ ଲାଗିଛି । ଗ୍ଲୋବାଲୱାର୍ମିଂ ବା ବିଶ୍ୱତାପାନ ବଢ଼ିବଢ଼ି କେବେ ସୁନାମି ତ କେବେକେବେ ମହାବାତ୍ୟା ପୁଣି କେବେ ଭୂମିକମ୍ପର ଭୟାବହତାକୁ ସାମନା କରିବାକୁ ପଡୁଛି । ପ୍ରକୃତି ଯେମିତି ଆଉ ମାନବସମାଜକୁ ସହଯୋଗ କରିବାକୁ ପ୍ରସ୍ତୁତ ନୁହେଁ ।

ଜୀବନଧାରଣ କରି ତାର ଉତ୍କର୍ଷ ଉପଲବ୍ଧି ତ ଜୀବନ ଜିଇଁବା । କୌଣସି ବି ପରିସ୍ଥିତିକୁ ସାମନା କରି ଜିଇଁ ରହିବା ଜୀବନର ମୂଳଧର୍ମ । ପ୍ରତିକୂଳ ପରିସ୍ଥିତିକୁ ସାମନା କରିବାର ଟାଣପଣକୁ ନିଜ ଭିତରେ ମଜବୁତ୍‌କରି ରଖିବା ହିଁ ଜୀବନଧାରଣ ପ୍ରତି ସକାରାତ୍ମକ ଦୃଷ୍ଟିଭଂଗୀ । ଯଦି ଭିନ୍ନଭିନ୍ନ ଭୂଖଣ୍ଡର ଭିନ୍ନଭିନ୍ନ ଗୋଷ୍ଠୀମାନଙ୍କ ମଧ୍ୟରୁ କୋଟିକୋଟି ଜନତାଙ୍କୁ ଏକତ୍ର କରାଇ ଗୋଟିଏ ପ୍ରଶ୍ନ ଉ□ାପିତ କରାଯିବ ଯେ ଜୀବନ ଜିଇଁବା ଦିଗରେ ସେମାନଙ୍କର ମତ କ'ଣ ? ତେବେ ସେ ମଧ୍ୟରୁ ୯ ୯ ଭାଗ ହିଁ ଉତ୍ତର ଦେବେ ସବୁ ସମସ୍ୟା ଭିତରେ ବି ଜିଇଁ ରହିବା ହିଁ ଜୀବନଧାରଣର ମୂଳ ଉଦ୍ଦେଶ୍ୟ । କୌଣସି ବି ପରିସ୍ଥିତିରେ ଜୀବନ ହାରିବା ସପକ୍ଷରେ କେହି ମତଦେବେ ନାହିଁ । ତେବେ ଯେଉଁ ୧ ଭାଗ ଲୋକେ ଏ ଦିଗରେ ନା ବୋଲି କହିବେ, ତାହା ନିଶ୍ଚିତ କୌଣସି ବିଶେଷ କାରଣ ଜଡ଼ିତ । ହୋଇପାରେ ସେ ବ୍ୟାଧି ଜନିତ ଯନ୍ତ୍ରଣାରୁ ମୁକ୍ତି ପାଇଁ ଅଥବା ଦାରିଦ୍ର୍ୟର ତାଡ଼ନା, ଅଥବା ଲକ୍ଷ୍ୟ ପ୍ରାପ୍ତିରେ ଅସଫଳତା କିମ୍ବା ପୁଞ୍ଜିବାଦଜନିତ ଆଧୁନିକ ଜୀବନ-ଧାରାର ପ୍ରଚଣ୍ଡ ଏକଲାପଣ ।

କେତେକ ରାଷ୍ଟ୍ର ଇଚ୍ଛାମୃତ୍ୟୁକୁ ଆଇନ ସମ୍ମତ କରିବା ଦିଗରେ ବିଚାରବିମର୍ଶ ଜାରି ରଖିଥିଲେ ବି ଏହା ଏକ ବିବଦମାନ ଅବସ୍ଥାରେ ଆଜି ପରୀକ୍ଷା ନିରୀକ୍ଷାର କାଠଗଡ଼ାରେ । ଶତଜଞ୍ଜାଳ ସତ୍ତ୍ୱେ ଜୀବନକୁ ଅସମୟରେ ଝଡ଼ିବାକୁ ନଦେଇ ବରଂ ବଞ୍ଚିବା ମରିବା ସଂଗ୍ରାମରେ ନିରନ୍ତର ସକାରାତ୍ମକ ମନୋଭାବ ପୋଷଣ କରିବା ଏକାନ୍ତ ବିଧେୟ । ପ୍ରାଣୀଜଗତ ସହ ସହଯୋଗ କରି ପ୍ରାକୃତିକ ସଂପଦକୁ ଆଉ ଅଧିକ ବିଲୟ ନକରି ବରଂ ତାର ସ୍ଥିତାବସ୍ଥାକୁ ବଜାୟ ରଖିପାରିଲେ ଶାନ୍ତିପୂର୍ଣ୍ଣ ସୁଖଦ ସହାବସ୍ଥାନ ସମ୍ଭବ ହେବ ।

ଦ୍ୱିତୀୟ ବିଶ୍ୱଯୁଦ୍ଧରେ ପରମାଣୁ ବୋମାର ପ୍ରୟୋଗ ହେତୁ ମାନବ ସଭ୍ୟତା ଦୋହଲି ଯାଇଥିଲା । ଏହାର ଜନକ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍‌ଙ୍କ ସମେତ ବିଶ୍ୱର ଅନ୍ୟ ଷାଠିଏ ଜଣ ବୈଜ୍ଞାନିକ ମିଳିତ ପତ୍ର ଲେଖି ତତ୍‌କାଳୀନ ଆମେରିକା ରାଷ୍ଟ୍ରପତି ଟ୍ରୁମାନଙ୍କୁ ଏଭଳି ଅସ୍ତ୍ର ନିର୍ମାଣର ଉଦ୍ଦେଶ୍ୟ ଭୁଲ୍ ରାସ୍ତାରେ ଚାଲି ଯାଉଥିବାରୁ ସେମାନେ ଚିନ୍ତିତ ବୋଲି ମତବ୍ୟକ୍ତ କରିଥିଲେ ।

ଜୀବନ ବିନାଶକାରୀ କୌଣସି ବି ସୃଷ୍ଟିକୁ ସମର୍ଥନ ଦେବାର ଅଧିକାର ଆମର ଆସିବ ବା କେଉଁଠୁ ? କେବଳ ଜିଇଁରହି ଜୀବନର ବିବିଧ ଦିଗକୁ ଆଲୋକିତ କରିବା ଦିଗରେ ଯେଉଁ ନୂତନ ଉଦ୍ଭାବନ ବା ଗବେଷଣାର ଆବଶ୍ୟକତା ଅଛି, ତାହାକୁ ହିଁ ସମର୍ଥନ ଦିଆଯାଇପାରେ ।

ଏବେବି ଜୀବନକୁ ନେଇ କେତେକେତେ ସଂଘର୍ଷ ପୁଣି ସଂଗ୍ରାମ । ସତରେ ଯେମିତି ତାର ଅନ୍ତ ନାହିଁ । ଏତିକି କୁହାଯାଇପାରେ, ଜୀବନ ଅଛି ମାନେ ସବୁ ଅଛି । ଜୀବନର ଏହି ସମସ୍ତ ପ୍ରଶ୍ନବାଚୀର ଉତ୍ତର ମଧ୍ୟ ରହିଛି । ଯେହେତୁ ଜୀବନ କେବଳ ଏକ ସଂଗ୍ରାମ ନୁହେଁ କି ସଂଘର୍ଷ ନୁହେଁ, ବରଂ ଅନେକ ପ୍ରଶ୍ନବାଚୀର ସମାହାର । ନିଜକୁ ନିଜେ ଯେତେ ପ୍ରଶ୍ନ ପଚାରିଲେ ମଧ୍ୟ ତାହା ଯଥେଷ୍ଟ ନୁହେଁ । ଜୀବନ ତେଣୁ ଅସଂଖ୍ୟ ପ୍ରଶ୍ନବାଚୀର ସମାହାର । ଜୀବନଯାତ୍ରାକୁ ଆଗକୁ ବଢ଼ାଇବାକୁ ହେଲେ ସ୍ୱପ୍ନପରେ ସ୍ୱପ୍ନ ଦେଖି ସେଥିପାଇଁ ସଂଗ୍ରାମରେ ସାମିଲ ହେବାକୁ ପଡ଼େ । ସେ ବ୍ୟକ୍ତିଗତ ଜୀବନରେ ହେଉକି, ସମଷ୍ଟିଗତ ଜୀବନଧାରଣର ପ୍ରକ୍ରିୟାରେ ହେଉ । ନୂତନ ନୂତନ ସଂଗ୍ରାମର ମଇଦାନରୁ ହିଁ ଜୀବନଯାତ୍ରା ଆଗକୁ ବଢ଼ିପାରେ । ନଚେତ୍ କେବଳ ପୁରାତନରେ ଜୀବନର ନୂତନତା ଆସିବ କେଉଁଠୁ ? ସମୟାନୁସାରେ ଜୀବନଧାରଣର ମାନରେ ବ୍ୟାପକ ପରିବର୍ତ୍ତନ ଆସିବା ସ୍ୱାଭାବିକ ।



# ମାନବ ସଭ୍ୟତାର ବିକାଶ ଓ ରାଷ୍ଟ୍ର

### ଫ୍ରେଡେରିକ୍ ଏଙ୍ଗେଲ୍ସ

ଏବେ ଆମେ ସଭ୍ୟତାର ଦ୍ୱାରଦେଶକୁ ଆସିଯାଇଛେ । ଏହି ପର୍ଯ୍ୟାୟଟି ଶ୍ରମର ଆଉରି ଉତ୍ତରୋତ୍ତର ବିଭାଗ ଦ୍ୱାରା ଚିହ୍ନିତ । ଅତି ନିମ୍ନସ୍ତରରେ ଥିଲା ବେଳେ ମଣିଷ ତା'ର ପ୍ରତ୍ୟକ୍ଷ ଆବଶ୍ୟକତା ପୂରଣ ପାଇଁ ଉତ୍ପାଦନ କରୁଥିଲା । ଆକସ୍ମିକ ଭାବେ ସେତେବେଳେ କିଛି ଉଦ୍‌ବୃତ୍ତ ବଳି ପଡ଼ିଲେ ବିକ୍ଷିପ୍ତ ଭାବେ ବିନିମୟ ଘଟୁଥିଲା । ବର୍ବରତାର ମଧ୍ୟ-ପର୍ବର ପଶୁପାଳକ ଜାତିମାନଙ୍କ ମଧ୍ୟରେ ଆମେ ଦେଖିବାକୁ ପାଉଁ, ଗବାଦି ପଶୁ ଏଭଳି ଏକ ସଂପତ୍ତି ଥିଲେ, ଯଦ୍ଦ୍ୱାରା ପଶୁପଲ ଖୁବ୍ ବଡ଼ ହୋଇଗଲେ, ନିଜର ପ୍ରୟୋଜନ ପୂରଣ ପରେ ସେଥିରୁ ନିୟମିତ କିଛି ଉଦ୍‌ବୃତ୍ତ ରହି ଯାଉଥିଲା । ଫଳରେ ପଶୁପାଳକ ଏବଂ ପଶୁପଲହୀନ ଅନୁନ୍ନତ ଉପଜାତିଗୁଡ଼ିକ ମଧ୍ୟରେ ଏକ ଶ୍ରମବିଭାଗକୁ ମଧ୍ୟ ଆମେ ଦେଖିବାକୁ ପାଇଥାଉ । ଏହାଦ୍ୱାରା ପାଖାପାଖି ଅବସ୍ଥିତ ଦୁଇଟି ଭିନ୍ନଭିନ୍ନ ସ୍ତରର ଉତ୍ପାଦନ ମଧ୍ୟରେ ନିୟମିତ ବିନିମୟର ପରିବେଶ ସୃଷ୍ଟି ହୋଇଥିଲା । ବର୍ବରତାର ଉଚ୍ଚ ପର୍ବରେ ଆଉ ଗୋଟିଏ ଶ୍ରମବିଭାଗ-କୃଷି ଏବଂ ହସ୍ତଶିଳ୍ପ ମଧ୍ୟରେ ଘଟିଲା ଏବଂ ତା'ଫଳରେ ଉତ୍ପାଦନ କ୍ଷେତ୍ରରେ, ବିଶେଷକରି ବିନିମୟ ପାଇଁ କ୍ରମାଗତ ପଣ୍ୟ ଉତ୍ପାଦନ ବୃଦ୍ଧି ପାଇଲା । ତଦ୍ଦ୍ୱାରା ବିଭିନ୍ନ ଉତ୍ପାଦକମାନଙ୍କ ମଧ୍ୟରେ ବିନିମୟ ଏପରି ଏକ ସ୍ତରରେ ପହଞ୍ଚିଲା ଯେ, ସମାଜଜୀବନ ପକ୍ଷରେ ଏହା ଅପରିହାର୍ଯ୍ୟ ହୋଇ ଉଠିଲା । ସଭ୍ୟତା ଏହିସବୁ ପ୍ରତିଷ୍ଠିତ ଶ୍ରମବିଭାଗକୁ ଶକ୍ତିଶାଳୀ କଲା ଏବଂ ତାକୁ ବିକଶିତ କରାଇଲା, ବିଶେଷକରି ସହର ଆଉ ମଫସଲ ମଧ୍ୟରେ ବୈପରିତ୍ୟକୁ ବୃଦ୍ଧି କରାଇ (ହୁଏତ, ପ୍ରାଚୀନ ଯୁଗ ଭଳି ମଫସଲ ଉପରେ ସହର ଅର୍ଥନୈତିକ ଆଧିପତ୍ୟ କରୁଥିଲା, କିମ୍ୱା ମଧ୍ୟଯୁଗ ଭଳି ମଫସଲ ସହର ଉପରେ ଆଧିପତ୍ୟ କରୁଥିଲା) ଏବଂ ଏଥିସହିତ ଆଉ ଏକ ତୃତୀୟ ଶ୍ରମବିଭାଗକୁ ଯୋଗକଲା । ତା'ର ଥିଲା ନିଜସ୍ୱ ବୈଶିଷ୍ଟ୍ୟ ଏବଂ ତାହା ଚୂଡ଼ାନ୍ତ ଗୁରୁତ୍ୱପୂର୍ଣ୍ଣ । ତାହା ଏପରି ଏକ ଶ୍ରେଣୀ ସୃଷ୍ଟି କଲା, ଯିଏକି ଉତ୍ପାଦନରେ ଅଂଶଗ୍ରହଣ କରେନାହିଁ, କେବଳ ପଣ୍ୟ ବିନିମୟରେ ଲିପ୍ତ ରହେ -ସେମାନେ ହେଉଛନ୍ତି

ବଣିକ । ଶ୍ରେଣୀମାନଙ୍କର ପୂର୍ବତନ ସମସ୍ତ ପ୍ରାରମ୍ଭିକ ସଂଗଠନଗୁଡ଼ିକ ପୂରାପୂରି ଭାବେ ଉତ୍ପାଦନ ସହିତ ସଂପୃକ୍ତ ଥିଲା । ତଦ୍ୱାରା ଉତ୍ପାଦନରେ ନିଯୁକ୍ତ ଲୋକେ ପରିଚାଳକ ଓ କାର୍ଯ୍ୟକଳାବାଲା, କିମ୍ବା ବୃହତ୍ ଧରଣର ଉତ୍ପାଦନକାରୀ ଏବଂ କ୍ଷୁଦ୍ର ଉତ୍ପାଦନକାରୀ - ଏହିଭାବେ ବିଭକ୍ତ ଥିଲେ । ଏଥର ପ୍ରଥମ କରି ଏଭଳି ଏକ ଶ୍ରେଣୀ ଦେଖାଦେଲା, ଯିଏ ଉତ୍ପାଦନରେ କୌଣସି ଅଂଶଗ୍ରହଣ ନକରି ସମଗ୍ର ଉତ୍ପାଦନ ପରିଚାଳନାକୁ ହସ୍ତଗତ କଲା ଏବଂ ସମସ୍ତ ଉତ୍ପାଦନକାରୀଙ୍କୁ ଅର୍ଥନୈତିକ ଭାବେ ନିଜ ଶାସନାଧୀନକୁ ଆଣିଲା । ଏହି ଶ୍ରେଣୀଟି ଯେକୌଣସି ଦୁଇ ଉତ୍ପାଦକ ଦଳ ମଧ୍ୟରେ ନିଜକୁ ଅପରିହାର୍ଯ୍ୟ ମଧ୍ୟସ୍ଥ ଭାବେ ପ୍ରତିଷ୍ଠା କରି ଉଭୟ ଦଳଙ୍କୁ ଶୋଷଣ କରିବାକୁ ଲାଗିଲା । ଉତ୍ପାଦନକାରୀଙ୍କୁ ବିନିମୟ କରିବାର କଷ୍ଟ ଏବଂ ଝୁଙ୍କିରୁ ରକ୍ଷା କରିବା, ଦୂରଦୂରାନ୍ତରେ ସେମାନଙ୍କ ପଣ୍ୟ ପାଇଁ ବଜାର ଖୋଜିବା ଏବଂ ଏହି ଭାବେ ସମାଜରେ ସର୍ବାପେକ୍ଷା ପ୍ରୟୋଜନୀୟ ବୋଲି ଆଳ ଦେଖାଇ ଏ ପରାଙ୍ଗପୁଷ୍ଟ ଖାଣ୍ଟି ପରାଶ୍ରିତ ଶ୍ରେଣୀ ଜନ୍ମନେଲା । ସେମାନେ ପ୍ରକୃତରେ ନିଜର ଅତି ତୁଚ୍ଛ ନଗଣ୍ୟ କାର୍ଯ୍ୟର ଦକ୍ଷିଣା ହିସାବରେ ଦେଶ ଭିତରର ତଥା ବିଦେଶର ଉତ୍ପାଦନରୁ ସାର ଅଂଶତକକୁ ଛାଣି ନେଉଥିଲେ, ଶୀଘ୍ର ବିପୁଳ ଧନସଂପତ୍ତି ଜମାଇ ନେଉଥିଲେ ଏବଂ ସେଇ ଅନୁପାତରେ ସାମାଜିକ ପ୍ରତିପତ୍ତି ଏବଂ କେବଳ ସେଇ କାରଣରୁ ସଭ୍ୟ ଯୁଗରେ ସେମାନଙ୍କ ପକ୍ଷରେ ନୂଆନୂଆ ସମ୍ମାନ ଏବଂ ଉତ୍ପାଦନ ଉପରେ କ୍ରମାଧିକ ନିୟନ୍ତ୍ରଣ ବିସ୍ତାର କରିବା ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା, ଯେପର୍ଯ୍ୟନ୍ତ ସେମାନେ ଶେଷରେ ନିଜସ୍ୱ ସୃଷ୍ଟି, ପର୍ଯ୍ୟାୟକ୍ରମିକ ବାଣିଜ୍ୟ ସଂକଟ ସୃଷ୍ଟି ନ କରିଥିଲେ ।

ଆମେ ଏଠାରେ ବିକାଶର ଯେଉଁ ସ୍ତରଟି କଥା ଆଲୋଚନା କରୁଛେଁ, ସେଥିରେ ତରୁଣ ବଣିକ ସଂପ୍ରଦାୟର ଧାରଣା ନଥିଲା ଯେ, ଭବିଷ୍ୟତରେ ସେମାନଙ୍କ ପାଇଁ କି ବିରାଟ ଜିନିଷସବୁ ସଞ୍ଚିତ ହୋଇ ରହିଛି । କିନ୍ତୁ ଏହି ସଂପ୍ରଦାୟଟି ଗଠିତ ହେଲା, ଆପଣାକୁ ଅପରିହାର୍ଯ୍ୟ କରି ତୋଳିଲା, ତାହା ହିଁ ଯଥେଷ୍ଟ । ଆଉ ଏହା ସହିତ ଧାତୁ, ମୁଦ୍ରା, ଟଙ୍କାଶାଳରେ ତିଆରି ମୁଦ୍ରା ପ୍ରଚଳିତ ହେଲା ଏବଂ ଧାତୁ ମୁଦ୍ରା ସହିତ ଆସିଲା ଉତ୍ପାଦକ ଏବଂ ତାର ଉତ୍ପାଦନ ଉପରେ ଅଣଉତ୍ପାଦନକାରୀର ଆଧିପତ୍ୟ ଜାହିରର ଉପାୟ । ସମସ୍ତ ପଣ୍ୟ ମଧ୍ୟରେ ଶ୍ରେଷ୍ଠ ପଣ୍ୟ, ଯାହା ମଧ୍ୟରେ ଅନ୍ୟ ସମସ୍ତ ପଣ୍ୟ ଲୁକ୍କାୟିତ, ତାହା ଆବିଷ୍କୃତ ହେଲା, ଆବିଷ୍କୃତ ହେଲା ସେଇ କୁହୁକ, ଯିଏକି ଇଚ୍ଛା ମୁତାବକ ଯେକୌଣସି ବାଞ୍ଛନୀୟ ବା ଆକର୍ଷଣୀୟ ଜିନିଷରେ ପରିଣତ ହୋଇପାରେ । ଯାହା ହାତରେ ଏହା

ରହିଛି, ସିଏ ହିଁ ଉତ୍ପାଦନ ଜଗତରେ ଆଧିପତ୍ୟ କରେ; ଏବଂ କାହା ହାତରେ ଏହା ସବୁଠୁ ବେଶି ଅଛି ? ବଣିକ ହାତରେ । ତା' ହାତରେ ମୁଦ୍ରାର ଉପାସନା ନିରାପଦ । ସେ ପରିଷ୍କାର ଭାବରେ ଏହି କଥାଟି ବୁଝାଇ ଦେବାକୁ ଚାହିଁଲା ଯେ, ସମସ୍ତ ପଣ୍ୟ, ତେଣୁ ସମସ୍ତ ପଣ୍ୟ ଉତ୍ପାଦନକାରୀ ଅର୍ଥ ଆଗରେ ଭୂଲୁଣ୍ଠିତ ହେବାକୁ ବାଧ୍ୟ । ସେ କାର୍ଯ୍ୟ କ୍ଷେତ୍ରରେ ପ୍ରମାଣ କଲା ଯେ, ସଂପଦର ଏହି ମୂର୍ତ୍ତିମାନ୍ ରୂପଟି ନିକଟରେ ଅନ୍ୟ ସମସ୍ତ ଧନଦୌଲତ ଛାୟାଭଳି । ମୁଦ୍ରାର ପ୍ରଥମ ଯୌବନକାଳରେ ତା'ର ଶକ୍ତି ଯେତେ ଅମାର୍ଜିତ ଆଉ ହିଂସ୍ର ଭାବେ ପ୍ରକାଶ ପାଇଥିଲା, ସେଭଳି ଆଉ କେବେ ଘଟିନି । ମୁଦ୍ରା ବିନିମୟରେ ପଣ୍ୟ ବିକ୍ରୟ ପରେ ଆସିଲା ଆର୍ଥିକ ଋଣଦାନ ଏବଂ ଆନୁସଂଗିକ ସୁଧ ଏବଂ ମହାଜନି । ପ୍ରାଚୀନ ଏଥେନ୍ସ ଏବଂ ରୋମ୍‌ର ଆଇନ୍ ଭଳି ପରବର୍ତ୍ତୀ କାଳରେ ଅନ୍ୟ କେଉଁଠି ଆଇନ୍ ଖାତକମାନଙ୍କୁ ସୁଧଖୋର ମହାଜନର ପାଦ ତଳେ ଏତେ ନିର୍ମମ, ଅସହାୟ ଭାବେ ଲୁଣ୍ଠିତ କରିନାହିଁ । ଏହି ଦୁଇ ଜାଗାରେ ସ୍ୱତଃସ୍ଫୂର୍ତ୍ତ ଭାବେ ସାଧାରଣ ଆଇନ୍ ହିସାବରେ ଏହା ଦେଖା ଦେଇଥିଲା ଏବଂ ତା' ପଛରେ କେବଳ ଅର୍ଥନୈତିକ ବାଧ୍ୟବାଧକତା ବିନା ଅନ୍ୟ କୌଣସି କାରଣ ନଥିଲା ।

ପଣ୍ୟ ଆଉ କ୍ରୀତଦାସ ରୂପେ ସଂପଦ ଏବଂ ମୁଦ୍ରା ସଂପଦ ବ୍ୟତୀତ ଜମି ରୂପରେ ମଧ୍ୟ ସଂପଦର ଉଦ୍‌ଭବ ଘଟିଲା । ଗୋତ୍ର ଏବଂ ଉପଜାତି ଦ୍ୱାରା ପ୍ରଥମେ ବିଭିନ୍ନ ବ୍ୟକ୍ତିବିଶେଷର ବ୍ୟବହାର ପାଇଁ ଦିଆଯାଇଥିବା ଜମିଜମା ଉପରେ ବ୍ୟକ୍ତି ସ୍ୱତ୍ୱ ଏପରି ପ୍ରତିଷ୍ଠିତ ହୋଇଗଲା ଯେ, ସେସବୁ ସେମାନଙ୍କର ବଂଶାନୁଗତ ସଂପତ୍ତିରେ ପରିଣତ ହେଲା । ଠିକ୍ ଏଥିପୂର୍ବରୁ ମଣିଷ ଏହି ଜମିଜମାକୁ ଗୋତ୍ରୀୟ ଗୋଷ୍ଠୀର ଦାବିରୁ ମୁକ୍ତ କରିବାପାଇଁ ସର୍ବାଧିକ ଉଦ୍ୟମ କରିଥିଲା । କାରଣ ଏହି ଦାବିଟି ସେମାନଙ୍କ ଲାଗି ଗୋଟାଏ ଶୃଙ୍ଖଳ ହୋଇ ରହିଥିଲା । ସେମାନେ ଏହି ଶୃଙ୍ଖଳରୁ ମୁକ୍ତ ହେଲେ, କିନ୍ତୁ ଅଳ୍ପ କାଳପରେ ସେମାନେ ସେମାନଙ୍କ ନୂତନ ଭୂସଂପତ୍ତିରୁ ବି ମୁକ୍ତ ହୋଇଗଲେ । ଜମି ଉପରେ ପୂର୍ଣ୍ଣ, ସ୍ୱାଧୀନ ମାଲିକାନାର ଅର୍ଥ କେବଳ ଅବାଧ ଏବଂ ଅବିଚ୍ଛିନ୍ନ ଭୋଗ ଦଖଲ ନୁହଁ, ଅଧିକନ୍ତୁ, ଏଥିରେ ଜମି ହସ୍ତାନ୍ତର କରିବାର ସମ୍ଭାବନାଟି ନିହିତ ଥିଲା । ଜମି ଗୋତ୍ରର ସଂପତ୍ତି ହୋଇଥିଲାବେଳେ, ଏଭଳି ସମ୍ଭାବନା ନଥିଲା । କିନ୍ତୁ ଜମିର ନୂତନ ମାଲିକ ଯେତେବେଳେ ଗୋତ୍ର ଆଉ ଉପଜାତିର ସାର୍ବଭୌମ ସ୍ୱତ୍ୱର ଶୃଙ୍ଖଳକୁ ଛିନ୍ନ କରିଦେଲା, ଯେଉଁ ବନ୍ଧନ ତାକୁ ଜମି ସହିତ ଅବିଚ୍ଛେଦ୍ୟ ଭାବେ ବାନ୍ଧି ରଖିଥିଲା, ତାହା ମଧ୍ୟ ଛିନ୍ନ

ହୋଇଗଲା । ଜମିରେ ବ୍ୟକ୍ତିଗତ ମାଲିକାନା ପ୍ରତିଷ୍ଠା ସହିତ ଏକ ସଂଗରେ ଉଦ୍‌ଭୂତ ମୁଦ୍ରା ହିଁ ଏହାର ତାତ୍ପର୍ଯ୍ୟକୁ ସ୍ପଷ୍ଟ କରିଦେଲା । ଜମି ଏବେ ଏକ ବିକ୍ରୟ ଏବଂ ବନ୍ଧକଯୋଗ୍ୟ ପଣ୍ୟରେ ପରିଣତ ହେଲା । ଜମିରେ ବ୍ୟକ୍ତିଗତ ମାଲିକାନା ଦେଖାଦେବା ସଂଗେସଂଗେ ବନ୍ଧକୀ ଆବିଷ୍କାର ହେଲା (ଏଥେନସକୁ ଦେଖନ୍ତୁ) । ଏକପତିପତ୍ନୀକ ବିବାହ ସହିତ ହେଟାଏରିଜମ୍ ଏବଂ ବେଶ୍ୟାବୃତ୍ତି ଯେପରି ଯୋଡ଼ିହୋଇ ରହିଥିଲା, ସେଇପରି ଜମିର ମାଲିକାନା ସହିତ ବନ୍ଧକୀ ପ୍ରଥା ଲାଖି ରହିଲା । ଜମି ଉପରେ ପୂର୍ଣ୍ଣ, ସ୍ୱାଧୀନ ଏବଂ ହସ୍ତାନ୍ତର ଯୋଗ୍ୟ ମାଲିକାନା ପାଇବାକୁ ସେ ଚିତ୍କାର କରୁଥିଲା - ଏହା ହିଁ ତୁ ଚାହୁଁଥିଲୁ ନା, ଜର୍ଜ ଡାଣ୍ଡିନ୍ ! ହେଇ ନିଏ !

ଅତଏବ, ବାଣିଜ୍ୟର ପ୍ରସାର, ମୁଦ୍ରା, ମହାଜନି କାରବାର, ଭୂସଂପତ୍ତି ଏବଂ ବନ୍ଧକୀ ପ୍ରଥାର ସାଥେସାଥେ ଗୋଟିଏ ଦିଗରେ, ମୁଷ୍ଟିମେୟ ଏକ ଶ୍ରେଣୀ ହାତରେ ଧନସଂପଦ ଦ୍ରୁତ ଭାବେ ଠୁଳ ଏବଂ କେନ୍ଦ୍ରୀଭୂତ ହେବାକୁ ଲାଗିଲା ଏବଂ ଅନ୍ୟ ଦିଗରେ, ଜନସାଧାରଣଙ୍କର କ୍ରମବର୍ଦ୍ଧମାନ ନିଃସ୍ୱତା ଆଉ ଦରିଦ୍ରମାନଙ୍କର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ଅର୍ଥଶାଳୀ ଏହି ନୂତନ ଅଭିଜାତବର୍ଗ ଯେଉଁଠି ଆରମ୍ଭରୁ ଉପଜାତିର ପୁରାତନ ଅଭିଜାତମାନଙ୍କ ସହିତ ଅଭିନ୍ନ ନଥିଲେ, ସେଠାରେ ସେମାନେ ଏହି ଶେଷୋକ୍ତମାନଙ୍କୁ ଚିରକାଳ ପାଇଁ ପଛକୁ ହଟେଇ ଦେଇଛନ୍ତି (ଏଥେନ୍‌ସ, ରୋମ୍ ଏବଂ ଜର୍ମାନ୍‌ମାନଙ୍କ ମଧ୍ୟରେ) । ଧନ ଅନୁଯାୟୀ ସ୍ୱାଧୀନ ନାଗରିକମାନଙ୍କର ବିଭିନ୍ନ ଶ୍ରେଣୀ ବିଭାଗ ସହିତ ବିଶେଷତଃ, ଗ୍ରୀସ୍‌ରେ କ୍ରୀତଦାସମାନଙ୍କ ସଂଖ୍ୟା ବିପୁଳ ଭାବେ ବୃଦ୍ଧି ପାଇଥିଲା, ଏମାନଙ୍କର ବାଧ୍ୟତାମୂଳକ ଶ୍ରମର ଭିତ୍ତି ଉପରେ ଗଢ଼ି ଉଠିଲା ସମଗ୍ର ସମାଜର ଉପରିଗଢ଼ଣ ।

ଏହି ସାମାଜିକ ବିପ୍ଳବ ଫଳରେ ଗୋତ୍ର ପ୍ରଥାର କ'ଣ ହେଲା, ଏବେ ଦେଖାଯାଉ । ଏହାର ବିନା ସାହାଯ୍ୟରେ ଯେଉଁସବୁ ଉପାଦାନଗୁଡ଼ିକର ଅଭ୍ୟୁଦୟ ଘଟିଥିଲା, ସେସବୁ ଆଗରେ ପ୍ରଥାଟି ଶକ୍ତିହୀନ ହୋଇ ପଡ଼ିଲା । ପ୍ରଥାଟି ଯେଉଁ ପୂର୍ବସର୍ତ୍ତ ଉପରେ ନିର୍ଭରଶୀଳ ଥିଲା, ସେ ହେଲା, ଏକା ଗୋତ୍ର ବା ଉପଜାତିର ଲୋକମାନେ ଏକା ଅଞ୍ଚଳରେ ଏକତ୍ର ବସବାସ କରିବେ ଏବଂ ସେଇମାନେ ହିଁ ହେବେ ସେଠାକାର ଏକମାତ୍ର ଅଧିବାସୀ । ବହୁକାଳ ଆଗରୁ ତାହା ଅଚଳ ହୋଇ ପଡ଼ିଥିଲା । ଗୋତ୍ର ଏବଂ ଉପଜାତି ସବୁଠାରେ ପରସ୍ପର ସହିତ ଗୋଳିଆମିଶା ହୋଇ ଯାଇଥିଲେ । ସବୁଠି ସ୍ୱାଧୀନ ନାଗରିକମାନଙ୍କ ମଧ୍ୟରେ କ୍ରୀତଦାସ, ଆଶ୍ରିତ ଏବଂ ବିଦେଶୀମାନେ ବସବାସ କରୁଥିଲେ ।

ବର୍ବର ଯୁଗର ମଧ୍ୟ ସ୍ତରର ଅନ୍ତିମପର୍ବରେ ଯେଉଁ ଅଞ୍ଚଳଭିତ୍ତିକ ବସତି ଗଢ଼ି ଉଠିଥିଲା, ତାହା ବ୍ୟବସାୟ ବାଣିଜ୍ୟ, ବୃତ୍ତିଧାରାରେ ପରିବର୍ତ୍ତନ ଏବଂ ଜମିଜମାର ହସ୍ତାନ୍ତର ହେତୁ ସ୍ଥାନ ପରିବର୍ତ୍ତନ ଏବଂ ବାସଭୂମିର ପରିବର୍ତ୍ତନ ଯୋଗୁ ବ୍ୟାହତ ହେଲା । ଗୋତ୍ର ସଂଘର ସଦସ୍ୟମାନେ ନିଜର ସାଧାରଣ ସମସ୍ୟାର ସମାଧାନ ପାଇଁ ଆଉ ଏକାଠି ହୋଇ ପାରିଲେ ନାହିଁ । କେବଳ ଅପେକ୍ଷାକୃତ ନଗଣ୍ୟ ବିଷୟ, ଯଥା ଧର୍ମୋତ୍ସବ, ସେତେବେଳ ପର୍ଯ୍ୟନ୍ତ ପାଳିତ ହେଉଥିଲା, ଅବଶ୍ୟ, ଯାଇତାଇ ଭାବେ । ଯେଉଁସବୁ ପ୍ରୟୋଜନ ଏବଂ ସ୍ୱାର୍ଥରକ୍ଷା ପାଇଁ ଗୋତ୍ରର ବିଭିନ୍ନ ସଂସ୍ଥା ନିଯୁକ୍ତ ହୋଇଥିଲେ ଏବଂ ସେସବୁର ଯେଉଁ ଯୋଗ୍ୟତା ଥିଲା ଏବଂ ଜୀବିକା ନିର୍ବାହ କ୍ଷେତ୍ରରେ ବିପ୍ଳବ ଦେଖାଦେବା ଫଳରେ ଏବଂ ସେଥିଯୋଗୁଁ ସମାଜ ବ୍ୟବସ୍ଥା ମଧ୍ୟରେ ପରିବର୍ତ୍ତନ ଫଳରେ ନୂଆନୂଆ ପ୍ରୟୋଜନ ଏବଂ ସ୍ୱାର୍ଥ ଦେଖାଦେଲା । ଏହି ସବୁ ନୂତନ ପ୍ରୟୋଜନ ଏବଂ ସ୍ୱାର୍ଥ ପୁରାତନ ଗୋତ୍ରପ୍ରଥା ନିକଟରେ କେବଳ ବିଜାତୀୟ ନଥିଲା, ସେସବୁ ପ୍ରତ୍ୟେକ ପ୍ରକାରରେ ତାକୁ ବ୍ୟାହତ କରୁଥିଲା । ଶ୍ରମ ବିଭାଗ ଦ୍ୱାରା ସୃଷ୍ଟ ବିଭିନ୍ନ କାରିଗର ଦଳଙ୍କର ସ୍ୱାର୍ଥ ଏବଂ ଗ୍ରାମର ବିପରୀତରେ ସହରମାନଙ୍କର ବିଶେଷ ଚାହିଦା ପାଇଁ ନୂଆନୂଆ ସଂସ୍ଥାର ପ୍ରୟୋଜନ ଦେଖାଦେଲା । କିନ୍ତୁ ଏହି ପ୍ରତିଟି ଦଳ ମଧ୍ୟରେ ଥିଲେ ବିଭିନ୍ନ ଗୋତ୍ର, ଫ୍ରାତ୍ରୀ ଏବଂ ଉପଜାତିର ଲୋକ, ଏପରିକି ବିଦେଶୀ ଲୋକ ମଧ୍ୟ । ଏଥିଯୋଗୁଁ ନୂଆ ସଂସ୍ଥାଗୁଡ଼ିକ ଅପରିହାର୍ଯ୍ୟ ଭାବେ ଗୋତ୍ର ପ୍ରଥାର ବାହାରେ ତା ସହିତ ସମାନ୍ତରାଳ ଭାବେ, ଅର୍ଥାତ୍, ତା ବିରୁଦ୍ଧରେ ଗଢ଼ି ଉଠିଥିଲା । ଅନ୍ୟ ଦିଗରେ, ଏକା ଗୋତ୍ର ଏବଂ ଉପଜାତି ମଧ୍ୟରେ ଧନୀ ଏବଂ ଦରିଦ୍ର, ମହାଜନ ଏବଂ ଖାତକ ଥିବା ହେତୁ ପ୍ରତ୍ୟେକ ଗୋତ୍ର ସଂଘ ମଧ୍ୟରେ ସ୍ୱାର୍ଥ ସଂଘର୍ଷ ପ୍ରକଟିତ ହେଲା ଏବଂ ଶୀର୍ଷତାରେ ପହଞ୍ଚିଲା । ତା'ପରେ ପୁଣି ନୂଆ ଅଧିବାସୀମାନେ ଥିଲେ, ଯେଉଁମାନେ ହେଉଛନ୍ତି ଗୋଷ୍ଠୀର ବହିର୍ଭୂତ ଲୋକ ଏବଂ ରୋମ୍ ଭଳି, ଯେଉଁମାନେ କି ଦେଶର ଏକ ବିଶିଷ୍ଟ ଶକ୍ତି ହୋଇ ପାରିଥାନ୍ତେ । ତା'ଛଡ଼ା ସଂଖ୍ୟାଗତ ଭାବେ ସେମାନେ ଏତେ ବେଶି ଥିଲେ ଯେ, ରକ୍ତ ସଂପର୍କିତ ଗୋତ୍ର ଏବଂ ଉପଜାତି ମଧ୍ୟରେ ସେମାନଙ୍କ ଧୀରେଧୀରେ ମିଶ୍ରଣ ବି ସମ୍ଭବ ନଥିଲା । ଏମାନଙ୍କ ନିକଟରେ ଗୋତ୍ରୀୟ ଗୋଷ୍ଠୀଗୁଡ଼ିକ ଥିଲା ରୁଦ୍ଧଦ୍ୱାର, ବିଶେଷ ସୁବିଧାଭୋଗୀ ସଂସ୍ଥାଭଳି । ପ୍ରଥମେ ଯାହା ସ୍ୱାଭାବିକ ଗଣତନ୍ତ୍ର ଥିଲା, ଏବେ ତାହା ଏକ ଘୃଣିତ ଆଭିଜାତ୍ୟରେ ପରିଣତ ହେଲା । ପରିଶେଷରେ, ଗୋତ୍ରପ୍ରଥା ଏଭଳି ଏକ ସମାଜ ମଧ୍ୟରୁ ଉଦ୍‌ଭବ ହୋଇଥିଲା,

ଯେଉଁଠି କୌଣସି ଆଭ୍ୟନ୍ତରୀଣ ବିରୋଧ ନଥିଲା ଏବଂ ସେ ପ୍ରଥାଟି କେବଳ ସେହି ସମାଜ ପାଇଁ ଉପଯୋଗୀ ଥିଲା । ଜନମତ ବ୍ୟତୀତ ଏହାର ଆଉ କୌଣସି ବଳପ୍ରୟୋଗର ଶକ୍ତି ନଥିଲା । କିନ୍ତୁ ଏବେ ଏଭଳି ଏକ ସମାଜର ଉଦ୍‌ଭବ ଘଟିଲା, ଯେଉଁଠି ଜୀବନଯାତ୍ରାର ସମଗ୍ର ଆର୍ଥନୀତିକ ବ୍ୟବସ୍ଥା ଫଳରେ ସାମାଜିକ ସତ୍ତା ସ୍ୱାଧୀନ ନାଗରିକ ଏବଂ କ୍ରୀତଦାସ, ଧନୀ ଶୋଷକ ଏବଂ ଶୋଷିତ ଦରିଦ୍ର ମଧ୍ୟରେ ବିଭକ୍ତ ହୋଇଗଲା । ସେ ସମାଜ ଏହିସବୁ ବିରୋଧଗୁଡ଼ିକୁ ମେଣ୍ଟେଇବାକୁ କେବଳ ଅସମର୍ଥ ନଥିଲା, ଏସବୁକୁ, କ୍ରମଶଃ, ଚରମ ପର୍ଯ୍ୟାୟକୁ ଘେନିଯିବାକୁ ବାଧ୍ୟ ହୋଇଥିଲା । ସେଭଳି ଏକ ସମାଜ ତିଷ୍ଠିପାରେ କେବଳ ଏହିସବୁ ଶ୍ରେଣୀମାନଙ୍କ ମଧ୍ୟରେ ନିରନ୍ତର ପ୍ରକାଶ୍ୟ ସଂଗ୍ରାମର ପରିବେଶ ଭିତରେ, ଅଥବା ତୃତୀୟ ଏକ ଶକ୍ତିର ଶାସନ ଅଧୀନରେ । ସେ ଶକ୍ତି, ବାହ୍ୟତଃ, ପରସ୍ପର ସଂଗ୍ରାମରତ ଶ୍ରେଣୀଗୁଡ଼ିକର ଊର୍ଦ୍ଧ୍ୱରେ ରହି ଏମାନଙ୍କର ପ୍ରକାଶ୍ୟ ସଂଗ୍ରାମକୁ ଦମନ କରିବ ଏବଂ ଖୁବ୍ ବେଶି ହେଲେ ଆର୍ଥନୀତିକ କ୍ଷେତ୍ରରେ, ତଥାକଥିତ ଆଇନଗତ ରୂପରେ ସେ ଶ୍ରେଣୀ ସଂଗ୍ରାମକୁ ଚାଲିବାକୁ ଦେବ । ଗୋତ୍ର ପ୍ରଥା ସଂପୂର୍ଣ୍ଣ ରୂପେ ଅକାମି ହୋଇ ପଡ଼ିଥିଲା । ଶ୍ରମ ବିଭାଗ ଏବଂ ତାର ପରିଣାମ ସ୍ୱରୂପ ସମାଜର ଶ୍ରେଣୀ ବିଭାଗ ତାଙ୍କୁ ଧ୍ୱଂସକରି ଦେଲା । ଏହାର ସ୍ଥାନ ଗ୍ରହଣ କଲା ରାଷ୍ଟ୍ର ।

**(ପରିବାର, ବ୍ୟକ୍ତିଗତ ସଂପତ୍ତି ଓ ରାଷ୍ଟ୍ରର ଉତ୍ପତ୍ତି ପୁସ୍ତକରୁ ସଂଗୃହୀତ)**



# ସମାଜବାଦ କାହିଁକି ?

ଆଲବର୍ଟ ଆଇନ୍‌ଷ୍ଟାଇନ୍
ଭାଷାନ୍ତର : କୁଳମଣି ଜେନା

ଅର୍ଥନୀତି ଓ ସମାଜ ବ୍ୟବସ୍ଥା ଉପରେ ବିଶେଷଜ୍ଞ ନହୋଇ ସମାଜବାଦ ସଂପର୍କରେ ମତାମତ ଦେବା ସମୀଚୀନ ହେବ କି ?

ମୋ ମତରେ ବିଭିନ୍ନ କାରଣରୁ ଏହା ସମ୍ଭବ । ପ୍ରଥମତଃ ସମାଜବାଦ ବିଷୟଟି ଉପରେ ବୈଜ୍ଞାନିକ ଦୃଷ୍ଟିଭଂଗୀରୁ ବିଚାର ହେବା ଆବଶ୍ୟକ । ବେଳେବେଳେ ମନେହୁଏ ଜ୍ୟୋତିର୍ବିଜ୍ଞାନ ଓ ଅର୍ଥନୀତି ବିଜ୍ଞାନ ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ । ଏପରି ମନେହେବାର କାରଣ ଉଭୟ ବିଜ୍ଞାନ ଚତୁଃପାର୍ଶ୍ୱ ଘଟଣାବଳୀର ପାରସ୍ପରିକ ସଂପର୍କକୁ ବିଶ୍ଳେଷଣ କରିଥାଏ । ଏସବୁ ସତ୍ତ୍ୱେ ଉଭୟ ବିଜ୍ଞାନ ମଧ୍ୟରେ ଆଲୋଚନା ଓ ଗବେଷଣାର ଉପାୟମାନ ଭିନ୍ନ; ଏବଂ ଉଭୟ ବିଜ୍ଞାନର ବୈଜ୍ଞାନିକମାନେ ବିଭିନ୍ନ ଗୋଷ୍ଠୀ, ଘଟଣା ଓ ସେମାନଙ୍କ ମଧ୍ୟରେ ଥିବା ଆନ୍ତଃ ସଂପର୍କକୁ ନିଜନିଜ ବାଟରେ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଥାନ୍ତି ।

ଏବେ ଅର୍ଥନୀତି ବିଜ୍ଞାନ ସଂପର୍କରେ ଆଲୋଚନା କରାଯାଉ । ଏହା ସତ୍ୟ ଯେ ଅର୍ଥନୀତି ସମ୍ବନ୍ଧିତ ଘଟଣାବଳୀ ବହୁ ବିଷୟ ଉପରେ ନିର୍ଭରଶୀଳ ଏବଂ ବହୁ ଘଟଣାଦ୍ୱାରା ଆକ୍ରାନ୍ତ । ସ୍ୱତନ୍ତ୍ର ରୂପେ ସେସବୁ ଘଟଣାର ବ୍ୟାଖ୍ୟା, ପର୍ଯ୍ୟାଲୋଚନା, ନିରୀକ୍ଷଣ ବା ମୂଲ୍ୟାୟନ କଠିନ । ଅଧିକନ୍ତୁ; ତଥାକଥିତ ସଭ୍ୟତାର ସମସ୍ତ ଘଟଣାବଳୀ କେବଳ ଆର୍ଥନୀତିକ କ୍ରିୟାକଳାପର ଫଳଶ୍ରୁତି ନୁହଁ । ଉଦାହରଣ ସ୍ୱରୂପ ଇତିହାସର ବହୁ ବିଜୟୀ ରାଷ୍ଟ୍ର ନିର୍ଦ୍ଦିଷ୍ଟ ଏକ ଅଞ୍ଚଳକୁ ନିଜ ଅକ୍ତିଆରକୁ ନେଲାପରେ ଉକ୍ତ ଅଞ୍ଚଳର ଭୂ-ସଂପଦର ମାଲିକ ହୋଇ ପ୍ରଥମେ ଏକ ପୁରୋହିତ ସଂପ୍ରଦାୟ ସୃଷ୍ଟି କରନ୍ତି । ପରିଣତି ସ୍ୱରୂପ ଉକ୍ତ ସଂପ୍ରଦାୟ କର୍ତ୍ତୃକ ସାମାଜିକ ଶିକ୍ଷାର ବିତରଣ ଘଟି ନୂତନ ଶ୍ରେଣୀ ବିଭାଜନ ସୃଷ୍ଟି ହୁଏ । ପରବର୍ତ୍ତୀ କାଳରେ ଏହି ଶ୍ରେଣୀ ବିଭାଜନ ସହ ପୁରୋହିତ ପ୍ରଥା ଏକ ସ୍ଥାୟୀ ଅନୁଷ୍ଠାନରେ ରୂପାନ୍ତରିତ ହୋଇ ସାମାଜିକ ସଂସ୍କୃତି ଓ ମୂଲ୍ୟବୋଧର ଜନ୍ମଦାତା ସାଜେ । ଅପର ପକ୍ଷରେ ଉକ୍ତ ପୁରୋହିତ ସଂପ୍ରଦାୟ କର୍ତ୍ତୃକ ଉପରୋକ୍ତ ସଂସ୍କୃତି ଓ ମୂଲ୍ୟବୋଧମାନ

ସାମଗ୍ରିକ ଭାବରେ ମାନବୀୟ ଚେତନାର ଅଂଶବିଶେଷ ସ୍ୱରୂପ ସାମାଜିକ ବ୍ୟବହାରକୁ ନିୟନ୍ତ୍ରଣ କରିଥାଏ ।

ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଥୋରେଷ୍ଟାଇନ୍ ଭେବ୍‌ଲେନ୍‌ଙ୍କ ମତରେ ଆମେ ଯାହା ଦେଖିବାକୁ ପାଉ ତାହା ହେଲା ମଣିଷ ଏଯାବତ୍ ପରରାଜ୍ୟ ଜୟ ଓ ଲୁଣ୍ଠନର ସ୍ତରକୁ ଅତିକ୍ରମ କରିପାରିନି । ଏହା ସତ୍ୟ ଯେ ଇତିହାସର ଏକ ନିର୍ଦ୍ଦିଷ୍ଟ ସ୍ତରର ଆର୍ଥନୀତିକ ନିୟମାବଳୀ ଅନ୍ୟ ଏକ ସ୍ତରପାଇଁ ପ୍ରଯୁଜ୍ୟ ହୋଇ ନପାରେ । ଏଠାରେ ଉଲ୍ଲେଖ କରିବା ଆବଶ୍ୟକ, ସମାଜବାଦର ଲକ୍ଷ୍ୟ ଯେହେତୁ ଶୋଷଣ ଓ ଲୁଣ୍ଠନର ସ୍ତରକୁ ଅତିକ୍ରମ କରି ବିକାଶର ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ପହଞ୍ଚିବା; ସେଇ ପରିପ୍ରେକ୍ଷୀରେ ଏହା ମଧ୍ୟ ସ୍ପଷ୍ଟ ହୋଇଯିବା ଦରକାର ଯେ ପ୍ରକୃତ ସମାଜବାଦ କଣ ? ଏହି ରଚନାଟି ଆମର ଚିର ଅଭିଳଷିତ ସମାଜବାଦୀ ସମାଜ ସଂପର୍କରେ ସମ୍ୟକ ଆଲୋକପାତ ।

ମୋ ମତରେ ସମାଜବାଦର ଲକ୍ଷ୍ୟ ହେଉଛି ମାନବ ଜୀବନକୁ ସାମାଜିକ ନୈତିକତାର ଚରମ ବିନ୍ଦୁରେ ଉପନୀତ କରାଇବା । ଏଠାରେ କହିରଖିବା ଆବଶ୍ୟକ ଯେ ସ୍ୱୟଂ ବିଜ୍ଞାନ ଲକ୍ଷ୍ୟ ସ୍ଥିର କରେନା; ମଣିଷ ହିଁ ଲକ୍ଷ୍ୟ ସ୍ଥିର କରେ; ଏବଂ ମଣିଷକୁ ସେଇ କଳ୍ପିତ ଲକ୍ଷ୍ୟପାଖରେ ପହଞ୍ଚାଇବା ପାଇଁ ବିଜ୍ଞାନ ଏକ ମାଧ୍ୟମ ଭାବରେ କାମ କରେ; ବିଜ୍ଞାନ ଉପାୟ ଓ ସାଧନମାନ ବତାଇଦିଏ । ଆମେ ଏହା ମଧ୍ୟ ଜାଣିରଖିବା ଦରକାର ଯେ ଧରାପୃଷ୍ଠରେ ବିଭିନ୍ନ ସମୟରେ ଅବତୀର୍ଣ୍ଣ ହେଉଥିବା ବିଶ୍ୱବନ୍ଦନୀୟ ବ୍ୟକ୍ତିତ୍ୱମାନେ ସ୍ୱ-ଉଦ୍ୟମ ବଳରେ ନୈତିକତାକୁ ଆଧାର କରି ମାନବ ସମାଜ ପାଇଁ ଲକ୍ଷ୍ୟ ଓ ସିଦ୍ଧାନ୍ତମାନ ଗଢ଼ି ତୋଳନ୍ତି; ଏବଂ କାଳକ୍ରମେ ସେମାନଙ୍କ ସୃଜନଲବ୍ଧ ସେଇ ଲକ୍ଷ୍ୟ କୌଣସି କାରଣରୁ ଭ୍ରୂଣାବସ୍ଥାରୁ ବିଲୟ ନଲଭି ଯଦି ଜୀବନୀଶକ୍ତିରେ ଭରପୂର ହୋଇ ସଜୀବତା ପ୍ରାପ୍ତ ହୁଏ, ତାହେଲେ ତାହା ସାମୂହିକ ଅବଚେତନର ଅଂଶବିଶେଷ ସ୍ୱରୂପ କ୍ରମଶଃ ସାମାଜିକ ବିବର୍ତ୍ତନର ଧାରାକୁ ଆଗେଇ ନେବାରେ ସାହାଯ୍ୟ କରେ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ମାନବ ସମାଜରେ କୌଣସି ବୈଜ୍ଞାନିକ ପଦ୍ଧତି ପ୍ରୟୋଗ ବା ପରୀକ୍ଷା କାଳରେ ଆମେ ବିଜ୍ଞାନର ଯାଦୁକରୀ ଶକ୍ତି ଅଛି ବୋଲି ଭାବିବା ଠିକ୍ ହେବନି । ଅପର ପକ୍ଷରେ ଏହା ଭାବିବା ମଧ୍ୟ ଭୁଲ୍ ହେବ ଯେ ସମାଜ ବା ସଂଗଠନ ବାବଦରେ ଯାବତୀୟ ପ୍ରଶ୍ନର ଉତ୍ତର ଏବଂ ଉପୁଜୁଥିବା ସମସ୍ୟାର ସମାଧାନ କେବଳ ବିଶେଷଜ୍ଞମାନେ ଦେଇପାରିବେ ।

ଏବେ ଅଧିକାଂଶ ମଣିଷଙ୍କ ମୁହଁରୁ ଗୋଟାଏ କଥା ଶୁଣିବାକୁ ମିଳୁଛି, ଯେ ମାନବସମାଜ ଏକ ଗଭୀର ସଂକଟ ମଧ୍ୟକୁ ନିକ୍ଷିପ୍ତ । ତା'ର ସ୍ଥାୟିତ୍ୱ ଆଜି ବିପନ୍ନ । ଏପରି ଏକ ଅବସ୍ଥାରେ ଏହା ସ୍ୱତଃ ଦୃଶ୍ୟମାନ ଯେ ମଣିଷ ବ୍ୟକ୍ତିକୈନ୍ଦ୍ରିକ ଓ ଖାପଛଡ଼ା ହୋଇ ଉଠୁଛି । ସଂକଟର ଏହି ମୁହୂର୍ତ୍ତରେ ମଣିଷ ଭିତରେ ଉଦାସୀନତା ଓ ବୀତସ୍ପୃହତା ବଢ଼ି ଚାଲିଛି । ସେ ନିଜ ଉପରେ ବା ନିଜର ସମାଜ ଉପରେ ଆସ୍ଥା ରଖି ପାରୁନି । ନିଜର ଗୋଷ୍ଠୀଠାରୁ ନିଜେ ଅଲଗା ହୋଇଯାଉଛି । ବିଷୟଟିକୁ ଅଧିକ ଗ୍ରହଣଯୋଗ୍ୟ ଓ ବୋଧଗମ୍ୟ କରି ଗଢ଼ିତୋଳିବା ପାଇଁ ମୁଁ ଜଣେ ବନ୍ଧୁଙ୍କ ସହ ମୋର ବ୍ୟକ୍ତିଗତ ବାର୍ତ୍ତାଳାପର ସାହାଯ୍ୟ ନେଉଛି । ନିକଟରେ ଜଣେ ବୁଦ୍ଧିମାନ ଓ ବିଚକ୍ଷଣ ବ୍ୟକ୍ତିଙ୍କ ସହ ମୋର ସାକ୍ଷାତ ହୋଇଥିଲା । ଆଲୋଚନା ପ୍ରସଂଗରେ ବନ୍ଧୁଜଣଙ୍କୁ ମୁଁ ଅବଗତ କରାଇବାକୁ ଚାହିଁଥିଲି ଯେ ଭବିଷ୍ୟତରେ ଯଦି କେବେ ତୃତୀୟ ବିଶ୍ୱଯୁଦ୍ଧ ସଂଗଠିତ ହୁଏ ତାହେଲେ ଭୂପୃଷ୍ଠରୁ ମାନବ ସମାଜର ଅସ୍ତିତ୍ୱ ଲୋପ ପାଇଯିବ । ଏହି ଆସନ୍ନ ବିପଦ କବଳରୁ ଉଦ୍ଧାର ପାଇବାକୁ ହେଲେ ଆମକୁ ଜାତୀୟତାର ସଂକୀର୍ଣ୍ଣ ଅର୍ଗଳିରୁ ମୁକ୍ତ ହୋଇ ଆନ୍ତର୍ଜାତୀୟ ସୁରକ୍ଷା ସଂଗଠନ ଗଢ଼ି ତୋଳିବାକୁ ପଡ଼ିବ; ଯାହା ଯୁଦ୍ଧ କବଳରୁ ଆମକୁ ରକ୍ଷା କରିବ । ବୈଚିତ୍ର୍ୟ ଏହିକି ଯେ, ସେଦିନ ଆଶ୍ଚର୍ଯ୍ୟାନ୍ୱିତ କରାଇ ବୁଦ୍ଧିମାନ ବନ୍ଧୁଜଣକ ମୋତେ କହିଥିଲେ - ମାନବ ସମାଜ ଧ୍ୱଂସପ୍ରାପ୍ତ ହେବାଟାକୁ ଆପଣ ବିରୋଧ କରୁଛନ୍ତି କାହିଁକି ?

ତାଙ୍କ କଥା ଶୁଣି ମୁଁ ଭାବିଥିଲି ଗୋଟାଏ ଶତାବ୍ଦୀ ପୂର୍ବରୁ ଏପରି ହାଲ୍‌କା ମନ୍ତବ୍ୟ ଦେବାଭଳି ମଣିଷ ଅନ୍ତତଃ ଭୂପୃଷ୍ଠରେ ନଥିବେ । ସେଦିନ ଉପରୋକ୍ତ ମନ୍ତବ୍ୟ ଦେଇଥିବା ବ୍ୟକ୍ତି ଜଣକ ହତାଶାର ଚରମ ସୀମାରେ ଉପନୀତ ହୋଇ ଯେ ଏପରି କହୁଥିଲେ ଓ କୌଣସି କାରଣରୁ ଜୀବନର ବ୍ୟର୍ଥତା ଓ ପରାଜୟ ହିଁ ତାଙ୍କର ଚୈତନ୍ୟକୁ ଦିଗହଜା କରି ଗଢ଼ି ତୋଳିଥିଲା ଏଥିରେ ସନ୍ଦେହ ନାହିଁ । ଅଧିକନ୍ତୁ ମୋର ମନେ ହୋଇଥିଲା, ବନ୍ଧୁଙ୍କର ଉପରୋକ୍ତ ମନ୍ତବ୍ୟ ଏକାକୀତ୍ୱର ଯନ୍ତ୍ରଣା ଭୋଗୁଥିବା ଜଣେ ମଣିଷର ଦୁଃଖଦ ସ୍ୱରଲିପି; ଯେଉଁ ସ୍ୱରଲିପିର ସ୍ୱର କେବଳ ସେଇ ବନ୍ଧୁଙ୍କ ମଧ୍ୟରେ ସୀମାବଦ୍ଧ ନରହି ଆଜି ବହୁ ମଣିଷଙ୍କ ମନକୁ କାବୁ କରିସାରିଛି ।

ଏପରି ହେବାର କାରଣ କ'ଣ ? ଏହା କାହିଁକି ଘଟୁଛି ? ଏଥିରୁ ଉଦ୍ଧାର ପାଇବାର କ'ଣ କୌଣସି ଉପାୟ ନାହିଁ ? ଏପରି କିଛି ପ୍ରଶ୍ନ ଉତ୍‌ଥାପିତ ହୋଇଯିବାଟା ଅତି ସହଜ । କିନ୍ତୁ ଏହାର ଉତ୍ତର କଠିନ । ଏହି ସମସ୍ୟା ସଂପର୍କରେ ଓ ତାର ସମାଧାନ ଦିଗରେ ମଣିଷକୁ କେହି କ'ଣ କିଛି ନିର୍ଭରଯୋଗ୍ୟ ପ୍ରତିଶ୍ରୁତି ଦେଇପାରିବକି ? ଅବଶ୍ୟ

ଏ ବାବଦରେ ମୁଁ ଚେଷ୍ଟା କରିବି; ମୋର ପାରୁପର୍ଯ୍ୟନ୍ତ ଉଦ୍ୟମ କରିବି । କିନ୍ତୁ ଏଠାରେ ପ୍ରଥମରୁ କହି ରଖିବା ଆବଶ୍ୟକ ଯେ ଏ ସମ୍ବନ୍ଧରେ ମୋର ଧାରଣା ତଥା ପ୍ରୟାସ ବେଳେବେଳେ ଦୁର୍ବୋଧ; ବେଳେବେଳେ ପରସ୍ପର ବିରୋଧୀତାର ଶିକାର ହେବାର ସମ୍ଭାବନା ମଧ୍ୟ ରହିଛି । ସେଥିପାଇଁ ବିଷୟ ଓ ସମସ୍ୟା ସଂପର୍କରେ ସହଜ ସରଳ ଉତ୍ତର ବା ସମାଧାନ ଆଶା କରା ନଯାଉ ।

ମଣିଷ ଏକାଧାରରେ ଏକୁଟିଆ ପ୍ରାଣୀ ଓ ସାମାଜିକ ପ୍ରାଣୀ (Man is one and the same time solitary being and social being) । ଗୋଷ୍ଠୀବଦ୍ଧ ସମାଜରେ ଏକୁଟିଆ ପ୍ରାଣୀ ଭାବରେ ମଣିଷର ସ୍ୱଭାବ ହେଲା – ଆପଣାର ସୁରକ୍ଷା ପ୍ରତି ନଜର ଦେବା – ଅଧିକନ୍ତୁ ନିଜର ଅସ୍ତିତ୍ୱ ବଜାୟ ରଖିବା । ଏତଦ୍‌ଭିନ୍ନ ଏକୁଟିଆ ମଣିଷର ଗୁଣ ହେଲା ତାର ନିକଟତମ ପ୍ରତିବେଶୀ ପ୍ରତି ସୁଦୃଷ୍ଟି ରଖିବା । ସହଜାତ ଗୁଣାବଳୀର ବିକାଶ ଓ ସାମର୍ଥ୍ୟର ଅଭିବୃଦ୍ଧି ବ୍ୟକ୍ତି ମଣିଷର ଅନ୍ୟତମ ଧ୍ୟେୟ । ସାମାଜିକ ପ୍ରାଣୀ ଭାବରେ ମଣିଷ ଅନ୍ୟର ସଖ୍ୟ ଓ ଅନ୍ୟଠାରେ ନିଜର ପରିଚୟ ଜ୍ଞାପନ କରେ । ଜୀବନର ପ୍ରତିଟି ସୋପାନରେ ସାମାଜିକ ମଣିଷର ସ୍ୱଭାବ ହେଲା ନିଜର ଉନ୍ନତି ସହ ଅନ୍ୟମାନଙ୍କର ଉନ୍ନତି ପ୍ରତି ନଜର ଦେବା । ସଂପୂର୍ଣ୍ଣ ବୈଚିତ୍ର୍ୟଭରା କେତେକ ପରସ୍ପର ବିରୋଧୀ ଗୁଣାବଳୀ ଓ ଚରିତ୍ର ରାଜି ମଧ୍ୟ ମାନବ ଅସ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ । ଏହା ଅତୀବ ଗୁରୁତ୍ୱପୂର୍ଣ୍ଣ ଯେ ପାରସ୍ପରିକ ବିରୋଧ ସତ୍ତ୍ୱେ ସମୟାନୁକ୍ରମେ ମଣିଷ ତା'ର ଭିତର ଅସ୍ତିତ୍ୱର ଭାରସାମ୍ୟ ସୃଷ୍ଟିକରି, ଅସମ୍ଭବ ରୂପେ ସମାଜ କଲ୍ୟାଣରେ ବ୍ରତୀ ହୁଏ । ଏହା ସତ୍ୟ ଯେ ମଣିଷର ଚାରିତ୍ରିକ ଗୁଣାବଳୀ ଅନେକଟା ଉତ୍ତରାଧିକାର ସୂତ୍ରରୁ ପ୍ରାପ୍ତ ହୋଇଥାଏ; କିନ୍ତୁ ଅସଲରେ ବ୍ୟକ୍ତିତ୍ୱର ପରିଣତ ରୂପକୁ ସେ ତା'ର ପରିବେଶରୁ ଆହରଣ କରିଥାଏ । ମଣିଷ ଯେଉଁ ପରିବେଶରେ ବଢ଼େ ସେଇ ପରିବେଶର ପ୍ରଭାବ ଓ ସର୍ବୋପରି ସାମାଜିକ ବ୍ୟବସ୍ଥା, ପରମ୍ପରା, ଚଳଣି, ରୀତି ରିଆଜ ସବୁକିଛିର ସମନ୍ୱୟରେ ତା'ର ସାମାଜିକ ବ୍ୟବହାରରେ ପ୍ରତିଫଳନ ଘଟେ । ସମାଜ କହିଲେ ଯେଉଁ ବିମୂର୍ତ୍ତ ଧାରଣାଟି (Abstract idea) ଆମ ମନରେ ବସା ବାନ୍ଧେ, ବସ୍ତୁତଃ ତାହାହେଲା ବ୍ୟକ୍ତି ମଣିଷ (ଏକୁଟିଆ ମଣିଷ)ର ସମକାଳ ଓ ପୂର୍ବକାଳ ମଣିଷ ମାନଙ୍କ ସହ ପ୍ରତ୍ୟକ୍ଷ ବା ଅପ୍ରତ୍ୟକ୍ଷ ସଂପର୍କର ମିଶ୍ରରାଗ । ବ୍ୟକ୍ତି ମଣିଷର ବୈଶିଷ୍ଟ୍ୟ ଯେ ସେ ଏକକ ଭାବରେ ଚିନ୍ତା କର୍ମ, ଅନୁଭବ ଓ ପ୍ରୟାସ ପାଇଁ ସମର୍ଥ । କିନ୍ତୁ ଏଇଠି ତା'ର ଯାତ୍ରା ଶେଷହୁଏନା । ଆମେ ଜାଣିବା ଦରକାର ଯେ ବୌଦ୍ଧିକ ଓ ଆବେଗିକ ସ୍ତରରେ ସମାଜକୁ ବାଦ୍‌ଦେଇ ବ୍ୟକ୍ତି ମଣିଷର ଅସ୍ତିତ୍ୱ କଳନା ଅସମ୍ଭବ । ସମାଜ ହିଁ ମଣିଷକୁ ଖାଦ୍ୟ, ବସ୍ତ୍ର, ବାସଗୃହ, କାର୍ଯ୍ୟ କରିବାର

ସାଧନ, ଭାଷା, ଚିନ୍ତା ଆଦି ଯୋଗାଇ ଦେଇଥାଏ । ଅପର ପକ୍ଷରେ ଶ୍ରମ ପ୍ରକ୍ରିୟାରେ ମଣିଷର ଭାଗିଦାରୀ ମଧ୍ୟଦେଇ ମଣିଷ ଜୀବନର ଅନେକ କିଛି ସମ୍ଭବ ହୁଏ । ସଂପ୍ରତି ମଣିଷ ଯେଉଁ ସ୍ତରରେ ପହଞ୍ଚିଛି ତା' ପଛରେ ରହିଛି କୋଟିକୋଟି ଅତୀତ ଓ ବର୍ତ୍ତମାନ; ଯେଉଁ ଅତୀତ ଓ ବର୍ତ୍ତମାନକୁ ଆମେ ସମାଜ ନାମକ ଏକ କ୍ଷୁଦ୍ର ଶବ୍ଦ ଭିତରେ ଆବଦ୍ଧ ଥିବା ଲକ୍ଷ୍ୟ କରିବା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛିନାହିଁ ।

ସମାଜ ଉପରେ ମଣିଷର ନିର୍ଭରଶୀଳତା ଏକ ପ୍ରାକୃତିକ ଘଟଣା; ଏକ ଜୈବ ଆବଶ୍ୟକତା; ଯାହାକୁ ଲୋପ କରି ହେବନାହିଁ । ପିମ୍ପୁଡ଼ି ଓ ମହୁମାଛିମାନେ ଯେମିତି ପ୍ରାକୃତିକ ଭାବେ ଐକ୍ୟବଦ୍ଧ, ମଣିଷ ମଧ୍ୟ ସେହିପରି ଐକ୍ୟବଦ୍ଧ । ପିମ୍ପୁଡ଼ି ଓ ମହୁମାଛିଠାରୁ ମଣିଷର ପାର୍ଥକ୍ୟ ହେଲା – ପିମ୍ପୁଡ଼ି ଓ ମହୁମାଛିମାନଙ୍କର ସାମାଜିକ ଶୃଙ୍ଖଳା ଅପରିବର୍ତ୍ତନୀୟ କିନ୍ତୁ ମଣିଷ ସମାଜର ସାମାଜିକ ଶୃଙ୍ଖଳା ଧରାବନ୍ଧା ନୁହଁ; ସମୟାନୁଯାୟୀ ପରିବର୍ତ୍ତନୀୟ । ଯୁଗରୁ ଯୁଗାନ୍ତରରେ ମଣିଷ ନୂତନ ସାମାଜିକ ନିୟମ ଶୃଙ୍ଖଳାକୁ ଆପେଣଇ ନେଇଥାଏ; ପାରସ୍ପରିକ ସଂପର୍କର ଓ ରୀତି ରିଆଜର ବେଶ୍ କିଛି ପରିବର୍ତ୍ତନ ଆଣିଥାଏ । ସେଥିପାଇଁ କୁହାଯାଇପାରେ ମଣିଷ ଏକ ପରିବର୍ତ୍ତନ ଉନ୍ମୁଖ ପ୍ରାଣୀ ।

କଥା କହିବାର କ୍ଷମତା ଓ ସ୍ମରଣଶକ୍ତି ମଣିଷ ସମାଜର ବିକାଶ କ୍ଷେତ୍ରରେ ଏକ ବିଶେଷ ସଂଯୋଗ । ସ୍ମରଣ ଶକ୍ତି ଓ ଭାଷା ବ୍ୟବହାରର ଦକ୍ଷତା ଯୋଗୁଁ ମଣିଷ ବିଜ୍ଞାନ, କଳା ଓ ପ୍ରଯୁକ୍ତି ଠାରୁ ଆରମ୍ଭ କରି ନାନାବିଧ ସାମାଜିକ ସଂଗଠନର ନିର୍ମାଣ ଓ ବିକାଶ ଘଟାଇ ପାରିଛି । ଭୂପୃଷ୍ଠରେ ମଣିଷ ହିଁ ଏକମାତ୍ର ପ୍ରାଣୀ ଯିଏ ନିଜେନିଜର ଜୀବନକୁ ଗଢ଼ି ତୋଳିପାରେ ଓ ଏହି ଗଢ଼ିତୋଳିବା କ୍ଷେତ୍ରରେ ଚିନ୍ତାକ୍ରିୟାର ସଚେତନ ପ୍ରୟୋଗ ତାକୁ ସାହାଯ୍ୟ କରିଥାଏ । ମଣିଷର ଜୈବ ଆକାଂକ୍ଷା ହେଉଛି ପ୍ରବୃତ୍ତିର ଅଂଶବିଶେଷ ଓ ସହଜାତ । ମଣିଷ ଏହି ସହଜାତ ପ୍ରବୃତ୍ତି ଓ ଗୁଣାବଳୀରେ ଭୂଷିତ ହୋଇ ନାନାବିଧ ସଂସର୍ଗ-ସଂପର୍କ ଜରିଆରେ ସମାଜ କର୍ତ୍ତୃକ ଏକ ସାଂସ୍କୃତିକ ବ୍ୟବହାରର ବଶବର୍ତ୍ତୀ ହୁଏ; ଯାହା ତା'ର ସାମାଜିକ ଚରିତ୍ରକୁ ଗଢ଼ିତୋଳେ । କାଳାନୁକ୍ରମେ ମଣିଷର ସାଂସ୍କୃତିକ ବ୍ୟବହାରର ପରିବର୍ତ୍ତନ ମଧ୍ୟ ସଂଗଠିତ ହେଉଥାଏ ଏବଂ ଏହା ସଂଗଠିତ ହୁଏ ବ୍ୟକ୍ତି ଓ ସମାଜର ପାରସ୍ପରିକ ଆଦାନ ପ୍ରଦାନ ସଂପର୍କ ମଧ୍ୟ ଦେଇ । ଆଧୁନିକ ନୃତତ୍ତ୍ୱବିଦ୍‌ମାନେ ତଥାକଥିତ ଆଦିମ ସଂସ୍କୃତିର ଉତ୍ସ ଅନୁସନ୍ଧାନ କରି କହନ୍ତି ଯେ, ବିଭିନ୍ନ ସାମାଜିକ ସଂଗଠନ ଓ ଭିନ୍ନଭିନ୍ନ ସାଂସ୍କୃତିକ ପରିବେଶ ମଧ୍ୟରେ ଲାଳିତ ପାଳିତ ଓ ବର୍ଦ୍ଧିତ ହେଉଥିବା ମଣିଷର ସାମାଜିକ ବ୍ୟବହାରରେ ଭିନ୍ନତା ପରିଲକ୍ଷିତ ହେବା ସ୍ୱାଭାବିକ । ଯେଉଁମାନେ ମାନବ କଲ୍ୟାଣ ପାଇଁ କାମ

କରୁଛନ୍ତି ସେମାନେ ଜାଣିବା ଦରକାର ଯେ ମଣିଷ ଜନ୍ମଗତ ରୂପ, ରଂଗ ଓ ଅଧିକାରକୁ ନେଇ କ୍ରୁର ଓ ସ୍ୱାର୍ଥପରଭାବେ ପରସ୍ପରକୁ ନିଶ୍ଚିହ୍ନ କରିପାରେନା ।

ମଣିଷର ଜୀବନକୁ ସୁଖୀ ଓ ସୁନ୍ଦରକରି ଗଢ଼ିତୋଳିବା ପାଇଁ ସାମାଜିକ ଢାଞ୍ଚା ଓ ସାଂସ୍କୃତିକ ବ୍ୟବହାରର ପରିବର୍ତ୍ତନ କ'ଣ ସମ୍ଭବ ? ପ୍ରଶ୍ନଟି ଉତ୍‌ଥାପିତ ହେବାମାତ୍ରେ ଏହାର ଉତ୍ତର ଅନୁସନ୍ଧାନ ଅବସରରେ ଆମକୁ ଏହା ସ୍ୱୀକାର କରିବାକୁ ହେବ ଯେ ଜୀବନରେ ଏପରି କିଛି ଜିନିସ ଅଛି ଯାହା ଅପରିବର୍ତ୍ତନୀୟ । ବିଶେଷ କରି ଜୈବ ପ୍ରକୃତି । ସମାଜ ଓ ସଭ୍ୟତାର ଅଗ୍ରଗତି ମଧ୍ୟ ଦେଇ ମଣିଷ ଆଜି ଯେଉଁଠି ପହଞ୍ଚିଛି ସେଠୁ ସେ ଅତୀତର ଆତ୍ମନିର୍ଭରଶୀଳ ଅର୍ଥନୀତି ବା ଗ୍ରାମ୍ୟ ସଭ୍ୟତା ଓ ଆଦର୍ଶର ସ୍ୱପ୍ନିଳ ଜଗତ ପାଖକୁ ଫେରିଯାଇ ପାରିବନି । ସେହିପରି ସଂଘବଦ୍ଧ ଜୀବନ ବ୍ୟତୀତ ଏକକ ଭାବରେ ଜୀବନ ଜିଇଁବା ମଣିଷ ପକ୍ଷରେ ସମ୍ଭବ ନୁହଁ; ଏପରିକି କ୍ଷୁଦ୍ରଗୋଷ୍ଠୀ ଭାବରେ ମଧ୍ୟ ନୁହଁ । ସାଂପ୍ରତିକ ସ୍ଥିତିରେ ସମାଜ ବିନା ସ୍ୱତନ୍ତ୍ର, ସ୍ୱାଧୀନ, ନିର୍ଭରଶୀଳ ଏକକ ଜୀବନ ଏକ ପ୍ରକାର ଅସମ୍ଭବ । ଘନ ଜନବସତିପୂର୍ଣ୍ଣ ଅଞ୍ଚଳରେ ସ୍ଥାୟୀଭାବରେ ବାସ କରୁଥିବା ମଣିଷଦ୍ୱାରା କେନ୍ଦ୍ରୀଭୂତ ଉତ୍ପାଦନ ଓ ତତ୍‌ସଂଭୂତ ଶ୍ରମ ବିଭାଜନ ସାଂପ୍ରତିକ ବିଶ୍ୱର ମଣିଷ ପାଇଁ ଅନିବାର୍ଯ୍ୟ ଆବଶ୍ୟକତା ରୂପେ ଦେଖାଦେଇଛି । ତେଣୁ ଅତୀତର ପ୍ରକୃତି କୋଳରେ ସଂଘବଦ୍ଧ ଆଶ୍ରୟସ୍ଥଳୀକୁ ମଣିଷ ଆଉ ଫେରିଯାଇ ପାରିବନି ।

ମନେହୁଏ ଆମେ ଆଲୋଚନାର ଶୀର୍ଷ ଛୁଇଁବାକୁ ଯାଉଛେ । ମୁଁ ଏବେ ଆମ ସମୟର ସଂକଟର କେନ୍ଦ୍ରବିନ୍ଦୁ ସ୍ପର୍ଶ କରିବି; ନିର୍ଯାସ ସଂପର୍କରେ କିଛି ଆଲୋକପାତ କରିବି । ଆମ ସମୟର ସବୁଠାରୁ ବଡ଼ ସମସ୍ୟା ହେଲା ବ୍ୟକ୍ତି ଓ ସମାଜ ମଧ୍ୟରେ ସୃଷ୍ଟି ହେଉଥିବା ଦ୍ୱନ୍ଦ୍ୱ । ସାଂପ୍ରତିକ କାଳର ବ୍ୟକ୍ତି ମଣିଷଟି ଅଧିକତର ଭାବରେ ସମାଜ ନିର୍ଭରଶୀଳ; ସମାଜ ସହିତ ତାର ସଂପର୍କ ଓ ସ୍ୱାର୍ଥକୁ ନେଇ ସେ ସଦା ଜାଗ୍ରତ । କିନ୍ତୁ ଦୁଃଖର ବିଷୟ ବ୍ୟକ୍ତିର ସମାଜ ନିର୍ଭରଶୀଳତା ଓ ଜାଗୃତି ଏଯାବତ୍ ଇତିବାଚକ ହୋଇପାରିନି । ବ୍ୟକ୍ତି ଏଯାବତ୍ ସମାଜ ସହିତ ତାର ସଂପର୍କକୁ ରକ୍ଷାକାରୀ ଶକ୍ତି; ସଜୀବ ସତ୍ତା ଓ ସ୍ୱାଭାବିକ ବନ୍ଧନ ବୋଲି ମନେକରୁନି । ଅପରପକ୍ଷରେ ବ୍ୟକ୍ତି ପାଖରେ ସମାଜ ତାର ଆର୍ଥନୀତିକ ସ୍ୱାଧୀନତାକୁ ଛଡ଼ାଇ ନେଉଥିବା ଏକ ଶକ୍ତି ରୂପରେ ଦେଖାଦେଇଛି । ମଣିଷର ସାମାଜିକ ଅବସ୍ଥାନ ଏପରି ଏକ ସ୍ତରରେ ପହଞ୍ଚିଛି ଯେଉଁଠି ତା'ର ସ୍ଥିତି ଅହଂସର୍ବସ୍ୱ - ବ୍ୟକ୍ତିକୈନ୍ଦ୍ରିକତା ଓ ମୁଁତ୍ୱର ଶିକାର; ପରିଣତିସ୍ୱରୂପ ସମାଜ କ୍ରମ ଦୁର୍ବଳ ହେବାରେ ଲାଗିଛି । ମୋଟାମୋଟି ଭାବରେ କହିବାକୁ ଗଲେ ଆଜିର ସମାଜରେ ମଣିଷ ଅଧଃପତନର ଶିକାର । ମଣିଷ ଆଜି ନିଜ ଅହଂକାରର ନିଗଡ଼ରେ ନିଜେ ବନ୍ଦୀ । ଫଳତଃ

ସେ ତାର ସମସ୍ତ ସରଳପଣିଆକୁ ହରାଇ ଏକାକୀତ୍ୱର ଗହ୍ୱର ମଧ୍ୟକୁ ନିକ୍ଷିପ୍ତ । ସେଥିପାଇଁ ସେ ନିଜକୁ ଅସୁରକ୍ଷିତ ମନେ କରୁଛି । ମଣିଷ ଆଜି ପ୍ରାକୃତିକ ସୁଖ ଆନନ୍ଦରୁ ବଞ୍ଚିତ । ଏହି ଜଟିଳ ଓ ବିପଦପୂର୍ଣ୍ଣ ସ୍ଥିତିରେ ଏକମାତ୍ର ନିରନ୍ତର ସମାଜମୁଖୀନତା ହିଁ ଜୀବନକୁ ଅର୍ଥବହ କରି ଗଢ଼ି ତୋଳିପାରେ ।

ମୋ ମତରେ ସାଂପ୍ରତିକ ବିଶ୍ୱ ସଂକଟର ମୂଳ କାରଣ ଧନତାନ୍ତ୍ରିକ ସମାଜ ଓ ତା'ର ଆର୍ଥନୀତିକ ନୈରାଜ୍ୟବାଦ । ଏହାହିଁ ଆଜି ସମାଜର ମୂଳଶତ୍ରୁ । ଆମେ ଦେଖିବାକୁ ପାଉଛେ ଆମ ଆଖି ଆଗରେ ମୁଷ୍ଟିମେୟ ଉତ୍ପାଦନର ମାଲିକ ଏକ ବିଶାଳ ଉତ୍ପାଦକ ଗୋଷ୍ଠୀର ସଂଯୁକ୍ତ ଶ୍ରମକୁ ଶୋଷଣ କରି ଚାଲିଛନ୍ତି । ମଜାକଥା ତାହା ସେମାନେ ବଳପୂର୍ବକ ଭାବେ କରୁନାହାନ୍ତି; ସୁଚତୁର ଭାବରେ ସମସ୍ତ ପ୍ରକାର ବିଧିନିୟମ ଓ ପାରସ୍ପରିକ ବୁଝାମଣା ଭିତ୍ତିରେ କରି ଚାଲିଛନ୍ତି । ଏହା ମଧ୍ୟ ବୁଝିବା ଦରକାର ଯେ ସେମାନେ ସାଂପ୍ରତିକ ବିଶ୍ୱର ସମସ୍ତ ଉତ୍ପାଦନର ଉପାୟ ଓ ଉପକରଣର ମାଲିକ ହୋଇ ସେ ସବୁକୁ ସେମାନଙ୍କର ବ୍ୟକ୍ତିଗତ ସଂପତ୍ତିରେ ପରିଣତ କରିଛନ୍ତି । ଫଳତଃ ଉଭୟ ଭୋଗ୍ୟ ପଣ୍ୟ ଓ ପଣ୍ୟ ପ୍ରସ୍ତୁତକାରୀ ସାମଗ୍ରୀ, ସବୁକିଛିର ସେମାନେ ହେଉଛନ୍ତି ଆଇନ ସମ୍ମତ ଅଧିକାରୀ । ଏବଂ ଅଧିକାଂଶ କ୍ଷେତ୍ରରେ ଏହା ସେମାନଙ୍କର ବ୍ୟକ୍ତିଗତ ସଂପତ୍ତି ।

ଉପରୋକ୍ତ ଆଲୋଚନାକୁ ଭିତ୍ତିକରି ସିଧାସଳଖ ଭାବରେ କୁହାଯାଇପାରେ ଯେ ସେ ହେଉଛି ସର୍ବହରା ଯିଏ ଉତ୍ପାଦିତ ସାମଗ୍ରୀ ବା ଉତ୍ପାଦନ ଉପକରଣ ସମୂହ ଉପରେ ନିଜର ହକ୍ ସାବ୍ୟସ୍ତ କରିପାରେନା । ସର୍ବହରା ଶ୍ରେଣୀ ହାତରେ ମାଲିକାନା ସ୍ୱତ୍ୱ ନଥିବା ହେତୁ ଉତ୍ପାଦନ ବ୍ୟବସ୍ଥାର ନିୟନ୍ତକ ମାଲିକମାନେ ଅଚିରାତ୍ ତାର ଶ୍ରମଶକ୍ତିକୁ କ୍ରୟ କରିଥାନ୍ତି । ସଚରାଚର ଏହାହିଁ ଦେଖିବାକୁ ମିଳିଥାଏ ଯେ ଉତ୍ପାଦନର ଉପକରଣକୁ ପ୍ରୟୋଗ କରି ସର୍ବହରାମାନେ ଯାହା ଉତ୍ପାଦନ କରନ୍ତି, ତତ୍କ୍ଷଣାତ୍ ତାହା ପୁଞ୍ଜିପତିର ବ୍ୟକ୍ତିଗତ ସଂପତ୍ତିରେ ରୂପାନ୍ତରିତ ହୋଇଯାଏ ।

ଶ୍ରମିକ ତା'ର ଶ୍ରମଶକ୍ତିର ପ୍ରୟୋଗରେ ଯାହା ସୃଷ୍ଟିକରେ ସେଥିପାଇଁ ମାଲିକମାନେ ତାକୁ ଯାହା ଦେଇଥାନ୍ତି ଅର୍ଥାତ୍ ଶ୍ରମିକର ଶ୍ରମ ମୂଲ୍ୟ ନିର୍ଦ୍ଧାରଣ ଓ ମୋଟାମୋଟି ଭାବରେ ଶ୍ରମ ଓ ପୁଞ୍ଜିର ସଂପର୍କ ଆଲୋଚନା ଦୃଷ୍ଟିରୁ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ପ୍ରଥମରୁ ଏହା ଜାଣିବା ଆବଶ୍ୟକ ଯେ ଉତ୍ପାଦନ କ୍ଷେତ୍ରରେ ଶ୍ରମିକ ମାଲିକ ସଂପର୍କ, ସ୍ୱାଧୀନ ଚୁକ୍ତିଦ୍ୱାରା ସଂପାଦିତ ହୋଇଥାଏ । ଏହି ଚୁକ୍ତିବଳରେ ମାଲିକମାନେ ଉତ୍ପାଦିତ ଦ୍ରବ୍ୟର ସମାନୁପାତିକ ଶ୍ରମମୂଲ୍ୟ ନଦେଇ ନିଜର ଆବଶ୍ୟକତାକୁ ଆଖି ଆଗରେ ରଖି ଶ୍ରମିକକୁ ତାର ଚଳିବା ମୁତାବକ ମଜୁରି ଦେଇଥାନ୍ତି । ଏତଦ୍ଦ୍ୱାରା ସଂପଦ ମୂଲ୍ୟ ଓ ଶ୍ରମମୂଲ୍ୟର

ଆନୁପାତିକ ସମତା ରକ୍ଷା କରିହୁଏନା; ବୈଷମ୍ୟ ବଢ଼ିଚାଲେ; କିଛି ବ୍ୟକ୍ତିଙ୍କ ନିକଟରେ ପୁଞ୍ଜିର କେନ୍ଦ୍ରୀକରଣ ଘଟେ; ବୃହତ୍ ପୁଞ୍ଜି କ୍ଷୁଦ୍ର ପୁଞ୍ଜିକୁ ଆତ୍ମସାତ୍ କରେ । ଏବଂ ବୃହତ୍ ପୁଞ୍ଜିର ମାଲିକମାନେ ଦେଶ ଓ ବିଶ୍ୱରେ ମୁଷ୍ଟିମେୟର ଶାସନ କାୟେମ୍ କରନ୍ତି । ଏହାବି ଦେଖିବାକୁ ମିଳେ ଗଣତାନ୍ତ୍ରିକ ପ୍ରତିଷ୍ଠାନ ସମୂହ, ବୃହତ୍ ପୁଞ୍ଜିର ଏକାଧିପତ୍ୟକୁ ପ୍ରତିହତ କରି ପାରନ୍ତିନି । ଭୋଟରମାନଙ୍କ ଜରିଆରେ ରାଜନୈତିକ ଦଳର ପ୍ରତିନିଧିମାନେ, ଦେଶ ଶାସନ ଉଦ୍ଦେଶ୍ୟରେ ନିର୍ବାଚିତ ହୋଇଥାନ୍ତି । କିନ୍ତୁ ବାସ୍ତବ କ୍ଷେତ୍ରରେ ଦେଖାଯାଏ ସେମାନେ ବୃହତ୍ ପୁଞ୍ଜିର ସେବା କରୁଛନ୍ତି । ବୃହତ୍ ପୁଞ୍ଜିର ମାଲିକମାନେ ଭୋଟଦାତା ଓ ଭୋଟ ଗ୍ରହୀତାଙ୍କ ମଧ୍ୟରେ ବ୍ୟବଧାନ ସୃଷ୍ଟିକରି ଆପଣାର ସ୍ୱାର୍ଥକୁ ଚରିତାର୍ଥ କରନ୍ତି । ଏଣୁ ଗଣତନ୍ତ୍ରରେ ନିର୍ବାଚିତ ପ୍ରତିନିଧିମାନେ ଦୁର୍ବଳ ବର୍ଗର ଲୋକଙ୍କ ପାଇଁ କିଛି କରିପାରନ୍ତି ନାହିଁ । ଏହି ପ୍ରକ୍ରିୟାରେ ଗଣମାଧ୍ୟମ ଓ ଶିକ୍ଷା ମଧ୍ୟ ପୁଞ୍ଜିପତିର ନିୟନ୍ତ୍ରଣାଧୀନ ହୋଇଯାଏ । କ୍ରମଶଃ ଦେଖିବାକୁ ମିଳେ ସାଧାରଣ ଲୋକ ନିଜର ରାଜନୈତିକ ଅଧିକାରକୁ ପ୍ରୟୋଗ କରିବା କ୍ଷେତ୍ରରେ ବ୍ୟର୍ଥ ହେଉଛନ୍ତି ।

ବ୍ୟକ୍ତିଗତ ମାଲିକାନାଧୀନ ପୁଞ୍ଜିର ଦୁଇଟି ବୈଶିଷ୍ଟ୍ୟ ଲକ୍ଷଣୀୟ । ଗୋଟିଏ ବୈଶିଷ୍ଟ୍ୟ ହେଲା ଉତ୍ପାଦନ ଉପକରଣ ଉପରେ ନିୟନ୍ତ୍ରଣ ବା ମାଲିକାନା ସ୍ୱତ୍ୱ ଆହରଣ ଓ ଆପଣା ସ୍ୱାର୍ଥରେ ତାର ଇଚ୍ଛାଧୀନ ବ୍ୟବହାର; ଦ୍ୱିତୀୟ ବୈଶିଷ୍ଟ୍ୟଟି ହେଲା – ଶ୍ରମଶକ୍ତିର ଲୁଣ୍ଠନ ସକାଶେ ମୁକ୍ତ ଶ୍ରମଚୁକ୍ତି । ଅବଶ୍ୟ ନିର୍ଭେଜାଲ ପୁଞ୍ଜିବାଦ ଓ ବିଶୁଦ୍ଧ ଧନତନ୍ତ୍ର ବୋଲି କିଛିନାହିଁ । କିନ୍ତୁ ଏହା ଏଠାରେ କହିରଖିବା ଆବଶ୍ୟକ ଯେ ମୋଟାମୋଟି ଏକ ପୁଞ୍ଜିବାଦୀ ବ୍ୟବସ୍ଥାରେ ତଥାକଥିତ ମୁକ୍ତ ରାଜିନାମା (ଶ୍ରମଚୁକ୍ତି) ଜରିଆରେ ଶ୍ରମିକ ଶ୍ରେଣୀ ଯାହା କିଛି ସୁବିଧା ସୁଯୋଗ ହାସଲ କରିପାରିଛି ତାହା ତାର ଦୀର୍ଘ କ୍ଳେଶଦାୟୀ ତିକ୍ତ କଷାୟ ସଂଗ୍ରାମର ଫଳଶ୍ରୁତି । ଶ୍ରମିକ ଶ୍ରେଣୀର ଦୀର୍ଘକାଳ ଏଯାବତ୍ ବହୁ ରକ୍ତକ୍ଷୟୀ ସଂଗ୍ରାମ ସତ୍ତ୍ୱେ ବର୍ତ୍ତମାନର ଅର୍ଥନୀତି ଯେଉଁ ପୁଞ୍ଜିବାଦୀକୁ ସେଇ ପୁଞ୍ଜିବାଦୀ ହୋଇ ରହିଯାଇଛି ।

ସବୁଠାରୁ ଦୁଃଖଦାୟକ ଯାହା, ତାହାହେଲା, ବ୍ୟକ୍ତିଗତ ସଂପତ୍ତିଭିତ୍ତିକ ଏକ ପୁଞ୍ଜିବାଦୀ ବ୍ୟବସ୍ଥାରେ ଉତ୍ପାଦନର ଲକ୍ଷ୍ୟ ହେଲା ମୁନାଫା । ମାନବ ପ୍ରସ୍ତୁତ ଦ୍ରବ୍ୟର ମାନବୀୟ ବ୍ୟବହାର ଏହାର ଲକ୍ଷ୍ୟ ନୁହଁ । ଅପର ପକ୍ଷରେ ଏକ ପୁଞ୍ଜିବାଦୀ ବ୍ୟବସ୍ଥାରେ ଅସଂଖ୍ୟ କର୍ମଠ ମଣିଷମାନଙ୍କ ପାଇଁ କର୍ମନିଯୁକ୍ତିର ଅଭାବ ଏକ ସାଧାରଣ ଘଟଣା । ଏହାର ପରିଣତି କ୍ରମବର୍ଦ୍ଧମାନ ବେକାରବାହିନୀ; ଯାହା ସଚରାଚର ଦେଖିବାକୁ ମିଳିଥାଏ । କେବଳ ସେତିକି ନୁହେଁ ଆଜି ଯେ ନିଯୁକ୍ତି ପାଏ କାଲି ତା ପାଇଁ ନିଯୁକ୍ତି ହରାଇବାର

ସ୍ଥିତି ଏଠାରେ ସଦା ବିଦ୍ୟମାନ । ଏହାହିଁ ଦେଖିବାକୁ ମିଳିଥାଏ ଯେ ବେକାର, ଅର୍ଦ୍ଧବେକାର ଓ ସ୍ୱଳ୍ପ ଉପାର୍ଜନକ୍ଷମ ଅସୁରକ୍ଷିତ ଶ୍ରମିକଙ୍କୁ ନେଇ ସୀମିତ ପୁଞ୍ଜିବାଦୀ ବଜାରରେ ମାନବ ବ୍ୟବହାରଯୋଗ୍ୟ ଆବଶ୍ୟକ ସାମଗ୍ରୀର ଉତ୍ପାଦନ ସଦା ସଂକୁଚିତ ଓ ବିପୁଳ ଦୁଃଖ କଷ୍ଟଭରା ଜୀବନହିଁ ପୁଞ୍ଜିବାଦୀ ବ୍ୟବସ୍ଥାର ପରିଣତି ।

ପୁଞ୍ଜିବାଦରେ ବିଜ୍ଞାନ ଓ ପ୍ରଯୁକ୍ତିର ଅଭୂତପୂର୍ବ ଅଗ୍ରଗତି ଶ୍ରମଜୀବୀ ମଣିଷର ସ୍ଥିତିକୁ ଅଧିକ ଦୁର୍ବିସହ କରି ଗଢ଼ି ତୋଳେ । ଯେକୌଣସି ନୂତନ ପ୍ରଯୁକ୍ତିର ପ୍ରୟୋଗ ଶ୍ରମ ସଂକୋଚନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଇବା ସହ 'ବେକାରୀ' ବୃଦ୍ଧିରେ ସାହାଯ୍ୟ କରେ । ପୁଞ୍ଜି ବଜାରରେ ଅବିରାମ ପ୍ରତିଯୋଗିତା ହେତୁ ସ୍ୱୟଂ ପୁଞ୍ଜି ଅସୁରକ୍ଷିତ ହୋଇ ଉଠେ । ସାଧାରଣ ମାନ୍ଦା ଅବସ୍ଥା ଏହାର ଭୟଙ୍କର ଚେହେରାକୁ ଆମ ସମ୍ମୁଖରେ ଉପସ୍ଥିତ କରାଏ । ସୀମାହୀନ ପ୍ରତିଯୋଗିତା ହେତୁ ଅସଂଖ୍ୟ ଶ୍ରମଦିବସର ଅବସାନ ଘଟେ । ମଣିଷ ଚେତନାର ସ୍ତରରେ ପଙ୍ଗୁ ଦୁର୍ବଳ ହେବାସହ କ୍ରମଶଃ ଅଳସୁଆ ଅକ୍ଷମ ହୋଇପଡ଼େ । ପୂର୍ବରୁ ମୁଁ ବହୁବାର ସୂଚାଇ ଅଛି ଯେ ଅବସାଦଗ୍ରସ୍ତ ଅକ୍ଷମ, ଅଳସୁଆ ମଣିଷମାନେ ପୁଞ୍ଜିବାଦୀ ସମାଜର ବଡ଼ ଶତ୍ରୁ ଭାବରେ ଦଣ୍ଡାୟମାନ ହୁଅନ୍ତି ।

ଆସନ୍ତୁ ପୁଞ୍ଜିବାଦୀ ସମାଜର ଶିକ୍ଷା ବ୍ୟବସ୍ଥା ପ୍ରତି ଦୃଷ୍ଟି ନିକ୍ଷେପ କରିବା । ପୁଞ୍ଜିବାଦୀ ସମାଜର ଶିକ୍ଷା ବ୍ୟବସ୍ଥା ମନ୍ଦ ପ୍ରବୃତ୍ତିଦ୍ୱାରା ପରିଚାଳିତ । ବସ୍ତୁତଃ ପୁଞ୍ଜିବାଦୀ ସମାଜର ଶିକ୍ଷା ଛାତ୍ରମାନଙ୍କୁ ପ୍ରତିଯୋଗିତା ପ୍ରବଣ କରି ଗଢ଼ିତୋଳେ । ସେମାନଙ୍କ ମନରେ ଏହିପରି ସ୍ୱପ୍ନର ବୀଜ ବୁଣେ, ଯଥା – ଭଲ ପାଠ ପଢ଼ିଲେ ସେମାନେ କାଳେ ଭବିଷ୍ୟତରେ ଅଧିକ ଅର୍ଥ ଉପାର୍ଜନ କରିବେ, ଉଚ୍ଚ ପଦବିରେ ଅଧିଷ୍ଠିତ ହେବେ । ପୁଞ୍ଜିବାଦୀ ଶିକ୍ଷା ବ୍ୟବସ୍ଥା ଛାତ୍ରମାନଙ୍କୁ କ୍ୟାରିଅର ସଚେତନ କରି ଗଢ଼ିତୋଳେ ।

ମୋ ମତରେ ଆମର ସମାଜକୁ ପୁଞ୍ଜିବାଦ ରୂପୀ ବୃହତ୍ ଶତ୍ରୁ କବଳରୁ ଉଦ୍ଧାର କରିବାକୁ ହେଲେ ସମାଜବାଦୀ ଅର୍ଥନୀତିର ପ୍ରତିଷ୍ଠା ଅତ୍ୟନ୍ତ ଜରୁରି । କିନ୍ତୁ ଏହି ଅର୍ଥନୀତି ପ୍ରତିଷ୍ଠା ପାଇଁ ଶିକ୍ଷାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସମାଜବାଦକୁ ଆଖି ଆଗରେ ରଖି ସାମାଜିକ ଶିକ୍ଷାର ବିସ୍ତାର ହେବା ଆବଶ୍ୟକ । ମୁଁ ମନେକରେ ସମାଜବାଦୀ ଅର୍ଥନୀତିରେ ଉତ୍ପାଦନ ଉପକରଣ ଗୁଡ଼ିକର ମାଲିକାନା ସମାଜ ହାତରେ ନ୍ୟସ୍ତ ହେବା ଆବଶ୍ୟକ ଓ ତାହା ଯୋଜନାବଦ୍ଧ ରୂପରେ ପରିଚାଳିତ ହେବା ଦରକାର । ଯୋଜନାବଦ୍ଧ ଅର୍ଥନୀତିର ମୂଳ ଲକ୍ଷ୍ୟ ହେଉଛି ସାମାଜିକ ଆବଶ୍ୟକତା ପୂରଣ । ଏହା ସେଇ ଉତ୍ପାଦନ ନୀତିକୁ ଆପଣେଇ ନେବ ଯେଉଁ ଉତ୍ପାଦନ ନୀତି ବଳରେ ସମସ୍ତଙ୍କ ପାଇଁ ଅବଲମ୍ବନ ଓ ନିଯୁକ୍ତିର ସୁଯୋଗ ରହିବ; ଯାହା ତା'ର ଜୀବନଧାରଣର ଆବଶ୍ୟକତାକୁ ମଧ୍ୟ ପୂରଣ କରିବ ।

କ୍ଷମତା ଓ ତଥାକଥିତ ସାଫଲ୍ୟ ପଛରେ ଧାଇଁବା ସକାଶେ ଅନୁପ୍ରେରିତ କରିବା ଅପେକ୍ଷା ସମାଜବାଦୀ ଶିକ୍ଷା ପଦ୍ଧତି ମଣିଷର ଅନ୍ତର୍ନିହିତ ଗୁଣାବଳୀର ବିକାଶ ଘଟାଇ ତା ମନରେ ସମାଜର ଅନ୍ୟାନ୍ୟ ସଦସ୍ୟମାନଙ୍କ ପ୍ରତି ସମମର୍ମିତାର ଭାବ ସୃଷ୍ଟି କରିବ । ଏହା ମନେରଖିବା ଆବଶ୍ୟକ ଯେ ଯୋଜନାବଦ୍ଧ ଅର୍ଥନୀତି ସମାଜବାଦ ପ୍ରତିଷ୍ଠା ପାଇଁ ଏକ ପଦକ୍ଷେପ । ଏହା ସ୍ୱୟଂ ସମାଜବାଦ ନୁହଁ । ଯୋଜନାବଦ୍ଧ ଅର୍ଥନୀତି ବି ମଣିଷକୁ ଦାସତ୍ୱର ଶୃଙ୍ଖଳରେ ବାନ୍ଧିପାରେ । କେନ୍ଦ୍ରୀକୃତ ଅର୍ଥନୀତିରେ ଅମଲାତନ୍ତ୍ର ଠାରୁ ଆରମ୍ଭ କରି ରାଜନୀତିକ, ଆର୍ଥନୀତିକ, ନାନାବିଧ ସମସ୍ୟା ଉପୁଜିବାର ସମ୍ଭାବନା ଅଛି । ଅମଲାତନ୍ତ୍ରକୁ ସର୍ବଶକ୍ତିମାନ ହେବାକୁ ନଦେବା ସକାଶେ, କେଉଁ ପଦକ୍ଷେପମାନ ଗ୍ରହଣ କରାଯିବା ଆବଶ୍ୟକ; ଗଣତନ୍ତ୍ରରେ ଅମଲାତନ୍ତ୍ରର ଶକ୍ତିକୁ କିଭଳି ଖର୍ବ କରାଯାଇପାରିବ; ପ୍ରଶାସନ ଓ ବ୍ୟୁରୋକ୍ରାସିର ପ୍ରାଦୁର୍ଭାବରୁ କିଭଳି ବ୍ୟକ୍ତିର ସ୍ୱାଧୀନତା ଓ ଅଧିକାର ସୁରକ୍ଷିତ ହେବ ? ସମାଜବାଦର ଲକ୍ଷ୍ୟପଥରେ ପହଞ୍ଚିବାକୁ ହେଲେ ଏ ସମସ୍ତ ପ୍ରଶ୍ନର ଉତ୍ତର ଅତ୍ୟନ୍ତ ଜରୁରି ।

ସମାଜ ପରିବର୍ତ୍ତନର ସନ୍ଧିକ୍ଷଣରେ ସଂପ୍ରତି ସମାଜବାଦର ଲକ୍ଷ୍ୟ ଓ ସମସ୍ୟା ସଂପର୍କରେ ପରିଚ୍ଛନ୍ନ ଧାରଣା ଆବଶ୍ୟକ । ଏବେ ସମାଜବାଦ ସଂପର୍କରେ ସ୍ୱାଧୀନ ଓ ମୁକ୍ତ ଭାବରେ ଆଲୋଚନା କରିବାଟାକୁ ଅପବିତ୍ର ମନେ କରାଯାଉଛି । ଏ କ୍ଷେତ୍ରରେ ଜନଗଣଙ୍କ ସ୍ୱାର୍ଥକୁ ଆଖି ଆଗରେ ରଖି ମୁକ୍ତ ଆଲୋଚନାକୁ ଆଗେଇ ନେବା ଦିଗରେ ଆପଣମାନଙ୍କର ପତ୍ରିକା ପ୍ରକାଶନ ପ୍ରୟାସ ନିଶ୍ଚିତ ଭାବରେ ଏକ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ।



# ମୁଁ ନାସ୍ତିକ କାହିଁକି ?

ଭଗତ୍ ସିଂ

ଭାଷାନ୍ତର : ନୀଳମଣି ସାହୁ

*(ଅତୀତରେ ଭାରତରେ ନାସ୍ତିକ ନ ଥିଲେ ଏକଥା ନୁହେଁ । 'ଆସ୍ତିକ' ଓ 'ନାସ୍ତିକ' ଶବ୍ଦ ଦୁଇଟି ଭାରତୀୟ ଦର୍ଶନର ଆଦ୍ୟକାଳରୁ ବ୍ୟବହୃତ ହୋଇ ଆସୁଛି । ଭାରତୀୟ ଦର୍ଶନରେ 'ଆସ୍ତିକ' ଶବ୍ଦଟି ଦୁଇଟି ଅର୍ଥରେ ବ୍ୟବହୃତ ହୋଇଥିବା ଦେଖାଯାଏ । ବେଦକୁ ମାନିଲେ ଆସ୍ତିକ, ନମାନିଲେ ନାସ୍ତିକ । ଜନ୍ମଜନ୍ମାନ୍ତରରେ ବିଶ୍ୱାସ ରଖିଲେ ଆସ୍ତିକ, ନ ରଖିଲେ ନାସ୍ତିକ । ଚାର୍ବାକ୍‌ପନ୍ଥୀ ବା ଲୋକାୟତବାଦୀ ମାନେ ବାସ୍ତବବାଦୀ ଥିଲେ । ଏହି ସଂସାର ହିଁ ସେମାନଙ୍କ ପାଇଁ ଏକମାତ୍ର ସଂସାର ଥିଲା । ସେମାନେ ବେଦକୁ ମାନୁନଥିଲେ, ଜନ୍ମଜନ୍ମାନ୍ତରରେ ବିଶ୍ୱାସ ରଖୁନଥିଲେ ତଥା ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରୁନଥିଲେ । ତେଣୁ ସେମାନଙ୍କୁ ନାସ୍ତିକ ଶିରୋମଣି କୁହାଯାଉଥିଲା । ସେମାନଙ୍କୁ ଓ ସେମାନଙ୍କ ଦର୍ଶନକୁ କାଳକ୍ରମେ ଧ୍ୱଂସ କରି ଦିଆଗଲା । ଆଜି ଚାର୍ବାକ୍ ଦର୍ଶନ ନାମରେ ଆପଣମାନେ ଯାହା ଶୁଣୁଛନ୍ତି ତାହା ହେଉଛି ସେମାନଙ୍କ ଶତ୍ରୁଙ୍କ ମୁଖର କଥା । ଯେପରି,*

*'ଯାବତ୍ ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍ ।'*

*ଆଧୁନିକ ଭାରତରେ, ବିଶେଷକରି ତାର ରାଜନୀତିକ କ୍ଷେତ୍ରରେ, ପ୍ରଥମ କରି ଶହିଦ ଭଗତ ସିଂ ସାହସ ଓ ଦୃଢ଼ତାର ସହ ନାସ୍ତିକବାଦ ସଂପର୍କରେ ଆଲୋଚନା କରିଛନ୍ତି ଓ ନିଜକୁ ଜଣେ ନାସ୍ତିକ ବୋଲି ଘୋଷଣା କରିଛନ୍ତି ।*

*ସ୍ୱାଧୀନତା ସଂଗ୍ରାମୀ ବାବା ରଣଧୀର ସିଂ ଗଦର ପାର୍ଟି ସହ ସଂପର୍କ ରଖିଥିବା ଅପରାଧରେ ୧୯୩୦-୩୧ ବେଳକୁ ଲାହୋର ଜେଲରେ ଦଣ୍ଡ ଭୋଗୁଥିଲେ । ସେ ଜଣେ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ଭଗତ ସିଂ ଈଶ୍ୱର ବିଶ୍ୱାସ କରୁନଥିବା ଶୁଣି ତାଙ୍କୁ ଅତ୍ୟନ୍ତ ଦୁଃଖ ଲାଗିଥିଲା । ତେଣୁ ଅନ୍ୟ ବନ୍ଧୁଙ୍କ ସହଯୋଗରେ ସେ ଭଗତ ସିଂଙ୍କୁ ତାଙ୍କ ସେଲ୍‌ରେ ଭେଟି ଈଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ତାଙ୍କୁ ବୁଝାଇବାକୁ ଚେଷ୍ଟାକଲେ । ବିଫଳ ମଧ୍ୟ ହେଲେ । ଶେଷରେ ସେ ରାଗିଯାଇ ତାଙ୍କର କଟୁ ମନ୍ତବ୍ୟରେ କହିଥିଲେ, 'ଖ୍ୟାତି ତୁମର ମତି ଭ୍ରମ କରିଛି, ବୃଦ୍ଧି ପାଇଛି ତୁମର ଅହଂକାର, ଯାହା ଈଶ୍ୱର ଓ ତୁମ ମଧ୍ୟରେ ଏକ କଳା ପରଦା ହୋଇ ଠିଆହୋଇଛି ।' ଏହି ମନ୍ତବ୍ୟର ଉତ୍ତରରେ ଶହିଦ ଭଗତ ସିଂ 'ମୁଁ ନାସ୍ତିକ କାହିଁକି' ? ଲେଖିଥିଲେ । - ସଂପାଦକ*

ଏକ ନୂଆପ୍ରଶ୍ନ ମୁଣ୍ଡଟେକୁଛି । ଏକ ସର୍ବଶକ୍ତିମାନ, ସର୍ବବ୍ୟାପୀ ତଥା ସର୍ବଜ୍ଞ ଈଶ୍ୱରଙ୍କ ଅସ୍ତିତ୍ୱରେ ମୁଁ ଯେଉଁ ନୂଆ ବିଶ୍ୱାସ କରୁନାହିଁ ତାହା କ'ଣ ମୋର ଅହଂକାର ଯୋଗୁଁ ? ଏହିଭଳିଆ ଏକ ପ୍ରଶ୍ନର ସମ୍ମୁଖୀନ ହେବିବୋଲି ମୁଁ କେବେବି ଭାବିନଥିଲି । କିନ୍ତୁ କେତେକ ବନ୍ଧୁଙ୍କ ସହ କଥାବାର୍ତ୍ତାରୁ ଆଭାସ ମିଳେ ଯେ ମୋର ବନ୍ଧୁମାନଙ୍କ ମଧ୍ୟରୁ କେତେକ ଯେଉଁମାନଙ୍କୁ ବନ୍ଧୁ ବୋଲି କହି ମୁଁ ଯଦି ଅତ୍ୟଧିକ ଦାବି କରୁନଥାଏ - ମୋ ସହିତ ସ୍ୱଳ୍ପ ସଂପର୍କରେ ଭିତ୍ତିରେ ଏପରି ଏକ ନିର୍ଣ୍ଣୟରେ ଉପନୀତ ହୋଇ କହନ୍ତି ଯେ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବାଟା ମୋ ପକ୍ଷରେ ଅତ୍ୟୁକ୍ତି ହୋଇଚି ଏବଂ କେତେକ ପରିମାଣରେ ମୋ ଅହଂକାର ହିଁ ମୋର ଏହି ଅବିଶ୍ୱାସକୁ ଦୃଢ଼ୀଭୂତ କରୁଛି । ବାସ୍ତବରେ, ଏହା ଏକ ଗମ୍ଭୀର ସମସ୍ୟା । କିନ୍ତୁ ମୁଁ ଏହିଭଳିଆ ସାଧାରଣ ମାନବୀୟ ଲକ୍ଷଣଗୁଡ଼ିକ ଠୁଁ ଊର୍ଦ୍ଧ୍ୱରେ ବୋଲି ବଡ଼ାଇ କରୁନାହିଁ । ମୁଁ ଜଣେ ମଣିଷ ଓ ତାଛଡ଼ା ଅନ୍ୟକିଛି ନୁହେଁ । ତାଠାରୁ କୌଣସି ଭାବେ ଅଧିକ ବୋଲି କେହି ମଧ ଦାବି କରି ପାରିବେନି । ମୋ ଭିତରେ ମାନବୀୟ ଦୁର୍ବଳତା ରହିଛି । ତେଣୁ ଅହଂକାର ମୋର ସ୍ୱଭାବର ଏକ ଅଂଶ ହୋଇ ରହିଛି । ମୋର ସାଥୀମାନଙ୍କ ମଧ୍ୟରୁ କେତେକ ମୋତେ ହିଁ ଜଣେ ସ୍ୱେଚ୍ଛାଚାରୀ ବୋଲି କହୁଥିଲେ । ଏପରିକି ମୋର ବନ୍ଧୁ ଶ୍ରୀ ବି.କେ. ଦତ୍ତ ବେଳେବେଳେ ମୋ ପ୍ରତି ସେପିର ଆକ୍ଷେପ କରୁଥିଲେ । କେତେକ ପ୍ରସଂଗରେ ମୁଁ ଜଣେ ସ୍ୱେଚ୍ଛାଚାରୀ ବୋଲି ନିନ୍ଦିତ ହୋଇଛି । ଅବିଚାରୀ ଭାବେ ମୁଁ ମୋର ମତାମତକୁ ଅନ୍ୟମାନଙ୍କ ଉପରେ ଲଦିଦିଏ ଓ ମୋର ପ୍ରସ୍ତାବଗୁଡ଼ିକୁ ଗୃହୀତ କରାଇନିଏ ବୋଲି ମୋର କେତେକ ବନ୍ଧୁ ପ୍ରତିବାଦ କରନ୍ତି ଓ ତାହା ପୁଣି ସେମାନେ କରନ୍ତି ଅତି ଗୁରୁତର ଆକାରରେ । କେତେକାଂଶରେ ଏହିକଥା ସତ, ମୁଁ ଅସ୍ୱୀକାର କରୁନି । ଏହାକୁ ବ୍ୟକ୍ତିଗତ ସ୍ୱାର୍ଥପରତା ବୋଲି କୁହାଯାଇପାରେ । ଆମର ବିଚାରଧାରା ଓ ଜନଗଣଙ୍କ ମଧ୍ୟରେ ବହୁ ପ୍ରଚଳିତ ଅନ୍ୟାନ୍ୟ ମତଗୁଡ଼ିକ ମଧ୍ୟରେ ଥିବା ବିରୋଧର ଆକାର ସହ ମୋର ଅହଂକାର ଜଡ଼ିତ । ତଥାପି ତାହା ବ୍ୟକ୍ତିଗତ ନୁହେଁ । ହୁଏତ ହୋଇପାରେ, କିନ୍ତୁ ତାହାହେଉଛି କେବଳ ଆମର ବିଚାରଧାରା ପାଇଁ ଆମର ଯଥାର୍ଥ ଗର୍ବ ଏବଂ ଯାହା ଅହଂକାର ରୂପେ ପରିଗଣିତ ହେବନି । ସଂକ୍ଷେପରେ କହିଲେ, ଜଣେ ଲୋକର ହୃଦୟରେ ନିଜକୁ ନେଇ ଅନୁଚିତ ଗର୍ବର ଆଧିକ୍ୟ ହିଁ 'ଅହଂକାର' । ଏହିଭଳିଆ ଅନୁଚିତ ଗର୍ବ ମୋତେ ନିରୀଶ୍ୱରବାଦ ଆଡ଼କୁ ନେଇଛି ନା ବିଷୟଟିକୁ ଅତି ଯତ୍ନର ସହ ଅଧ୍ୟୟନ ତଥା ଅନେକ ବିଚାର ଆଲୋଚନା କରିବା ପରେ ମୁଁ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅବିଶ୍ୱାସ କରୁଛି ? ଏହି ପ୍ରଶ୍ନ ହିଁ ମୁଁ ଏଠି ଆଲୋଚନା କରିବାପାଇଁ ଚାହୁଁଛି । ମୁଁ ଏଠାରେ ଏହା ସ୍ପଷ୍ଟ କରିଦେବା ପାଇଁ ଚାହେଁ ଯେ ବ୍ୟକ୍ତିଗତ ସ୍ୱାର୍ଥପରତା ଓ ଅହଂକାର ହେଉଛି ଦୁଇଟି ଭିନ୍ନଭିନ୍ନ ବସ୍ତୁ ।

ପ୍ରଥମେ ଅନୁଚିତ ଗର୍ବ ବା ଆତ୍ମବଡ଼ପଣିଆ କିପପରିଭାବେ ଜଣେ ମଣିଷର ଈଶ୍ୱର ବିଶ୍ୱାସରେ ବାଧାଦେବ ତାହା ବୁଝିବାରେ ମୁଁ ସଂପୂର୍ଣ୍ଣ ରୂପେ ବିଫଳ ହୋଇଛି । ମୁଁ କେତେକ ପରିମାଣର ଜନପ୍ରିୟତା, ସେଥିପାଇଁ ଅଯୋଗ୍ୟ ଥିବା ସତ୍ତ୍ୱେ, ହାସଲ କରି ଥାଇପାରେ ଅବା ସେହି ଉଦ୍ଦେଶ୍ୟରେ ନିହାତି ଆବଶ୍ୟକ ବା ଅପରିହାର୍ଯ୍ୟ ଗୁଣଗୁଡ଼ିକ ମୋ ପାଖେ ନଥାଇ ପାରେ, ତଥାପି ମୁଁ ଜଣେ ପ୍ରକୃତରେ ମହାନ୍ ମଣିଷର ମହାନତାକୁ ସ୍ୱୀକୃତି ଦେବାପାଇଁ ଅନିଚ୍ଛା ପ୍ରକାଶ କରିପାରେ । ଏପରି ଏକ ସମ୍ଭାବନା ସଂପର୍କରେ ମୁଁ ଭାବିପାରୁଛି । କିନ୍ତୁ ଈଶ୍ୱରଙ୍କ ପାଖେ ବିଶ୍ୱାସ ରଖୁଥିବା ଜଣେ ଲୋକ ତାର ବ୍ୟକ୍ତିଗତ ଅହଂକାର ଯୋଗୁଁ ସେପରି ବିଶ୍ୱାସ କରିଦେବା ବନ୍ଦ କରିଦେବ କିପରି ? ସେଥିପାଇଁ କେବଳ ଦୁଇଟି ବାଟ ଅଛି । ଗୋଟିଏ ହେଲା ଲୋକଟି ନିଜକୁ ଈଶ୍ୱରଙ୍କ ପ୍ରତିଦ୍ୱନ୍ଦ୍ୱୀ ବୋଲି ଭାବିପାରେ । ଅନ୍ୟଟି ନିଜକୁ ହିଁ ଈଶ୍ୱରବୋଲି ବିଶ୍ୱାସ କରିବା ଆରମ୍ଭ କରିଦେଇ ଥାଇପାରେ । ଯେଉଁ ବାଟ ଧରିଲେ ବି ତାକୁ ଖାଣ୍ଟି ନାସ୍ତିକ କୁହାଯାଇ ପାରିବ ନାହିଁ । ଅନ୍ୟଟିରେ, ପରଦାର ଅନ୍ତରାଳରେ ରହି ପ୍ରକୃତିର ସମସ୍ତ ଗତିର ନିୟନ୍ତା ହିସାବରେ ଏକ ସଚେତନ ସତ୍ତାର ଅସ୍ତିତ୍ୱକୁ ମଧ୍ଯ ସେ ମାନିନେଉଛି । ସେ ନିଜକୁ ପରମ ସତ୍ତା ବୋଲି ଭାବୁଛି କି ନିଜ ଭିନ୍ନ ଅନ୍ୟ କାହାକୁ ସେହି ପରମ ସଚେତନ ସତ୍ତାର ମାନ୍ୟତା ଦେଉଛି, ତାହା ଆମପାଇଁ ଅସଲ ବିଷୟ ନୁହେଁ । ଅସଲ ବିଷୟ ହେଲା, ସେହି ଦୁଇଟି ବାଟରୁ କୌଣସି ବି ବାଟକୁ ମୁଁ ଧରୁନି । ସେହି ସର୍ବଶକ୍ତିମାନ ସର୍ବୋଚ୍ଚ ସତ୍ତାର ଅସ୍ତିତ୍ୱକୁ ହିଁ ମୁଁ ଅସ୍ୱୀକାର କରୁନି । ମୁଁ କାହିଁକି ଅସ୍ୱୀକାର କରୁଛି ତାର ଆଲୋଚନା ପରେ କରିବା । ମୁଁ ଏଠାରେ ଗୋଟିଏ କଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ନିରୀଶ୍ୱରବାଦର ସିଦ୍ଧାନ୍ତଗୁଡ଼ିକୁ ଗ୍ରହଣ କରିବାପାଇଁ ମୋତେ ମୋର ଅହଂକାର ପ୍ରରୋଚିତ କରୁନାହିଁ । ମୁଁ ଜଣେ ପ୍ରତିଦ୍ୱନ୍ଦ୍ୱୀ ନୁହେଁ, ଅବତାର ନୁହେଁ, ଖୋଦ୍ ପରମସତ୍ତା ମଧ୍ଯ ନୁହେଁ । ଏଣୁ ଏହା ନିଶ୍ଚିତ ଯେ ଏହିଭଳିଆ ଚିନ୍ତାକରିବା ପାଇଁ ଅହଂକାର ମୋତେ ବାଟ କଢ଼େଇ ନେଇନାହିଁ । ଏହି ଅଭିଯୋଗର ଖଣ୍ଡନ ପାଇଁ ତଥ୍ୟଗୁଡ଼ିକର ଯାଞ୍ଚ ବିଚାର କରିବା । ମୋର ଏହି ବନ୍ଧୁମାନଙ୍କ ମତରେ ଉଭୟ ଦିଲ୍ଲୀ ବୋମା ଓ ଲାହୋର ଷଡ଼ଯନ୍ତ୍ର ମାମଲା ଦୁଇଟି ବିଚାର କାଳରେ ସମ୍ଭବତଃ ଅହେତୁକ ଜନପ୍ରିୟତା ହାସଲ କରିଥିବା କାରଣରୁ ମୁଁ ଅତୀବ ଅହଂକାରୀ ହୋଇଯାଇଛି । ଆସନ୍ତୁ ଦେଖିବା ଯାହାରି ଭିତ୍ତିରେ ସେମାନେ ଏପରି କହୁଛନ୍ତି ତାହା ଠିକ୍ କି ନୁହେଁ । ମୋର ନିରୀଶ୍ୱରବାଦର ପ୍ରାରମ୍ଭକାଳ ଏବର କଥା ନୁହେଁ । ମୁଁ ଈଶ୍ୱରଙ୍କ ଅସ୍ତିତ୍ୱରେ ବିଶ୍ୱାସ କରିବା ବନ୍ଦ କରିଦେଇଥିଲି ସେତେବେଳେ, ଯେତେବେଳେ ମୁଁ ଥିଲି ଜଣେ ଅଜଣା, ଅଶୁଣା ଯୁବକ, ଯାହାର ଅସ୍ତିତ୍ୱ ସଂପର୍କରେ ମୋର ଏହି ଉପରୋକ୍ତ

ବନ୍ଧୁମାନେ ଅଗବତ ମଧ୍ୟ ନଥିଲେ । ଅନ୍ତତଃ ପକ୍ଷେ ଜଣେ କଲେଜ ଛାତ୍ର ଏପରି କୌଣସି ଧରଣର ଅନୁଚିତ ଗର୍ବକୁ ଜାବୁଡ଼ି ଧରିବନି ଯାହା ତାକୁ ନିରୀଶ୍ୱରବାଦ ଆଡ଼କୁ ବାଟ କଢ଼େଇ ନେବ । ଯଦିଚ କେତେକ ଅଧ୍ୟାପକଙ୍କ ପ୍ରିୟ ଥିଲାବେଳେ ଅନ୍ୟ କେତେକଙ୍କ ଅପ୍ରିୟ ଥିଲି, କେବେହେଁ ମୁଁ ପରିଶ୍ରମୀ ତଥା ଅଧ୍ୟବସାୟୀ ନଥିଲି । ଅହଂକାର ରୂପୀ ଅନୁଭବର ଉପଭୋଗ କରିବାପାଇଁ ମୁଁ କୌଣସି ସୁଯୋଗ ପାଇ ନଥିଲି । ବରଂ ମୁଁ ଅତ୍ୟନ୍ତ ଲାଜକୁଳା ସ୍ୱଭାବର ବାଳକଟିଏ ଥିଲି, ଯାହାର ମନରେ କିଛିଟା ନୈରାଶ୍ୟବାଦୀ ଝୁଙ୍କ ଥିଲା ଭବିଷ୍ୟତ ପେସାକୁ ନେଇ । ସେହି ସମୟରେ ବି ସଂପୂର୍ଣ୍ଣ ରୂପେ ନିରୀଶ୍ୱରବାଦୀ ନଥିଲି । ମୋର ଜେଜେବାପା, ଯାହାଙ୍କ ପ୍ରଭାବରେ ମୁଁ ଲାଳିତପାଳିତ ହୋଇଥିଲି, ସେ ହେଉଛନ୍ତି ଜଣେ ରକ୍ଷଣଶୀଳ ଆର୍ଯ୍ୟସମାଜୀ । ଜଣେ ଆର୍ଯ୍ୟସମାଜୀ ଯାହା ବି ହୁଅନ୍ତୁ ନା କାହିଁକି ନିଶ୍ଚିତ ରୂପେ ନିରୀଶ୍ୱରବାଦୀ ନୁହଁନ୍ତି । ମୋର ପ୍ରାଥମିକ ଶିକ୍ଷା ସଂପନ୍ନ ହେବାପରେ ମୁଁ ଲାହୋରର ଡି.ଏ.ଭି. ପବ୍ଲିକ୍ ସ୍କୁଲରେ ନାମ ଲେଖାଇଲି ଓ ତାହାର ଛାତ୍ରାବାସରେ ପୂରା ଏକବର୍ଷ ରହିଲି । ସେଠାରେ ସକାଳ ସନ୍ଧ୍ୟାର ପ୍ରାର୍ଥନା ଛଡ଼ା ଘଣ୍ଟାଘଣ୍ଟା ଧରି 'ଗାୟତ୍ରୀମନ୍ତ୍ର'ର ଆବୃତ୍ତି କରୁଥିଲି । ସେହି ଦିନଗୁଡ଼ିକରେ ସଂପୂର୍ଣ୍ଣ ରୂପେ ମୁଁ ଜଣେ ଭକ୍ତ ଥିଲି । ପରେ ମୁ ମୋ ବାପାଙ୍କ ସହ ରହିଲି । ଧର୍ମଗୁଡ଼ିକର ରକ୍ଷଣଶୀଳତାର ନଜରରେ ସେ ହେଉଛନ୍ତି ଜଣେ ଉଦାରବାଦୀ । ତାଙ୍କରି ଶିକ୍ଷାର ପ୍ରଭାବରେ ମୁଁ ସ୍ୱାଧୀନତା ଉଦ୍ଦେଶ୍ୟରେ ମୋ ଜୀବନକୁ ଉତ୍ସର୍ଗ କରିଦେବାପାଇଁ ଇଚ୍ଛା କରିଥିଲି । କିନ୍ତୁ ସେ ନାସ୍ତିକ ନୁହଁନ୍ତି । ସେ ଜଣେ ଦୃଢ଼ ଈଶ୍ୱରବିଶ୍ୱାସୀ । ପ୍ରତିଦିନ ପ୍ରାର୍ଥନା କରିବାପାଇଁ ସେ ରୀତିମତ ମୋତେ ଉତ୍ସାହିତ କରୁଥିଲେ । ତେଣୁ ଏହି ଭାବରେ ହିଁ ମୁଁ ପ୍ରତିପାଳିତ ହୋଇଥିଲି । ଅସହଯୋଗର ଦିନଗୁଡ଼ିକରେ ମୁଁ ନ୍ୟାସନାଲ କଲେଜରେ ଯୋଗଦେଲି । ସେଠାରେ ମୁଁ ଧର୍ମର ସମସ୍ୟାଗୁଡ଼ିକ ସଂପର୍କରେ, ଏପରିକି ଈଶ୍ୱରଙ୍କ ସଂପର୍କରେ, ଉଦାରଭାବେ ଚିନ୍ତାକରିବା, ଆଲୋଚନା ସମାଲୋଚନା କରିବା ଆରମ୍ଭ କରିଥିଲି । ତଥାପି ମୁଁ ଧର୍ମପ୍ରାଣ ଈଶ୍ୱରବିଶ୍ୱାସୀ ଥିଲି । ସେହି ସମୟ ବେଳକୁ ମୁଁ ଅକଟା ଲମ୍ବା ବାଳର ଯତ୍ନନେବା ଆରମ୍ଭ କରି ଦେଇଥିଲି, କିନ୍ତୁ ଶିଖଧର୍ମର ଅବା ଅନ୍ୟ କୌଣସି ଧର୍ମର ସିଦ୍ଧାନ୍ତ ଓ ଦେବଉପାଖ୍ୟାନ, ପୁରାଣଗୁଡ଼ିକୁ ଆଦୌ ବିଶ୍ୱାସ କରିପାରୁନଥିଲି । ତଥାପି ଈଶ୍ୱରଙ୍କ ଅସ୍ତିତ୍ୱରେ ମୋର ଦୃଢ଼ ବିଶ୍ୱାସ ଥିଲା ।

ପରେ ମୁଁ ବିପ୍ଳବୀ ଦଳରେ ଯୋଗଦେଲି । ଯେଉଁ ନେତାଙ୍କ ପ୍ରଭାବରେ ପ୍ରଥମେ ମୁଁ ଆସିଲି, ଈଶ୍ୱର ଅଛନ୍ତି । ଏହି କଥାରେ ତାଙ୍କର କୌଣସି ବିଶ୍ୱାସ ନଥିଲା ତଥାପି ସତ୍‌ସାହସ ନଥିଲା ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବାପାଇଁ । ଈଶ୍ୱରଙ୍କ ସଂପର୍କରେ

ମୋର ଦୃଢ଼, ଲଗାତାର ଅନୁସନ୍ଧାନର ଉତ୍ତରରେ ସେ ସାଧାରଣତଃ କହୁଥିଲେ, 'ଆବଶ୍ୟକତା ଅନୁଭବ କଲେ ପ୍ରାର୍ଥନା କରୁଥାଅ ।' ହଁ, ଏହାହିଁ ହେଉଛି ସାହସ ବିହୀନ ନାସ୍ତିକବାଦ - ନାସ୍ତିକ ହେବାପାଇଁ ଯେଉଁ ସାହସର ଆବଶ୍ୟକ ସେହି ସାହସର ଅଭାବ ରହିଛି ଏଠି । ଦ୍ୱିତୀୟରେ ଯେଉଁ ନେତାଙ୍କ ସଂସ୍ପର୍ଶରେ ମୁଁ ଆସିଲି ସେ ଥିଲେ ଜଣେ ଦୃଢ଼ ଈଶ୍ୱରବିଶ୍ୱାସୀ । ତାଙ୍କର ନାମଟି କହିଦିଏ - ସମ୍ମାନାସ୍ପଦ ସାଥି ସଚ୍ଚିନ୍ଦ୍ର ନାଥ ସାନ୍ୟାଲ । କରାଚୀ ଷଡ଼ଯନ୍ତ୍ର ମାମଲାରେ ସେ ଆଜୀବନ ଦେଶାନ୍ତର ଦଣ୍ଡ କଳାପାଣିରେ ଭୋଗୁଛନ୍ତି । ତାଙ୍କର ଅତି ପ୍ରସିଦ୍ଧ ତଥା ଏକମାତ୍ର ବହି ବନ୍ଦୀଜୀବନର ପ୍ରଥମ ପୃଷ୍ଠାରୁ ହିଁ ଈଶ୍ୱରଙ୍କର ପ୍ରବଳ ଗୁଣକୀର୍ତ୍ତନ କରାଯାଇଛି । ସେହି ସୁନ୍ଦର ବହିଟିର ଦ୍ୱିତୀୟ ଭାଗର ଶେଷ ପୃଷ୍ଠାରେ ସେ ଯେଉଁ ରହସ୍ୟମୟ ପ୍ରଶଂସା ବେଦାନ୍ତ ଦର୍ଶନର ପ୍ରଭାବରେ ଈଶ୍ୱରଙ୍କ ଉପରେ ଢାଳି ଦେଇଛନ୍ତି ତାହା ହେଉଛି ତାଙ୍କର ଚିନ୍ତାଧାରା ଏକ ସୁସ୍ପଷ୍ଟ ଅଂଶ । ମୋକଦ୍ଦମା ଦାୟରକାରୀ ଅର୍ଥାତ୍ ସରକାରଙ୍କ କାହାଣୀ ଅନୁସାରେ ୧୯୨୫ ମସିହା ଜାନୁଆରୀ ୨୮ ଦିନ ସାରା ଭାରତରେ ଯେଉଁ 'ବୈପ୍ଳବିକ ପ୍ରଚାରପତ୍ର' ବଣ୍ଟା ଯାଇଥିଲା, ତାହା ହେଉଛି ତାଙ୍କର ବୌଦ୍ଧିକ ପରିଶ୍ରମର ଫଳ । ହଁ, ଗୁପ୍ତ କାର୍ଯ୍ୟକ୍ଷେତ୍ରରେ ଏହା ଅନିବାର୍ଯ୍ୟ ଯେ ଯେଉଁ ମତାମତ ମୁଖ୍ୟ ନେତାଙ୍କର ଅତିପ୍ରିୟ ସେହି ମତାମତକୁ ହିଁ ସେ ସମସ୍ତଙ୍କ ମତାମତ ଭାବେ ପ୍ରକାଶ କରିଥାନ୍ତି ଏବଂ କାହାର କେଉଁଠି ଆପତ୍ତି, ଅସହମତି ଥିବା ସତ୍ତ୍ୱେ ସମସ୍ତ କର୍ମୀ ସେହି ମତାମତକୁ ମାନିନିଅନ୍ତି । ସେହି ପ୍ରଚାରପତ୍ରଟିର ଗୋଟିଏ ପୂରା ପାରାଗ୍ରାଫ୍ ଉତ୍ସର୍ଗ କରାଯାଇଥିଲା ସର୍ବଶକ୍ତିମାନ ଓ ତାଙ୍କ ଲୀଳା ତଥା କାର୍ଯ୍ୟାବଳୀର ବର୍ଣ୍ଣନା ପାଇଁ । ସେହି ସମସ୍ତ କଥା ରହସ୍ୟମୟ ଥିଲା । ମୁଁ ଯାହା ଦୃଷ୍ଟିକୁ ଆଣିବାପାଇଁ ଚାହିଁଥିଲି ତାହା ହେଲା ବିପ୍ଳବୀ ଦଳରେ ଅବିଶ୍ୱାସ ରୂପକ ଧାରଣା ଏପରିକି ଅଙ୍କୁରିତ ମଧ୍ୟ ହୋଇନଥିଲା । ପ୍ରସିଦ୍ଧ କାକୋରୀ ସହିଦମାନେ ଚାରିଜଣଯାକ ସେମାନଙ୍କର ଶେଷ ଦିନଗୁଡ଼ିକ ପ୍ରାର୍ଥନାରେ କଟାଇଥିଲେ । ରାମପ୍ରସାଦ ବିସ୍ମିଲ ଜଣେ ରକ୍ଷଣଶୀଳ ଆର୍ଯ୍ୟ ସମାଜୀ ଥିଲେ । ସମାଜବାଦ ଓ ସାମ୍ୟବାଦ ସଂପର୍କରେ ତାଙ୍କର ବିସ୍ତୃତ ଅଧ୍ୟୟନ ସତ୍ତ୍ୱେ, ରାଜେନ୍ ଲାହିଡ଼ି ଗୀତା ଓ ଉପନିଷଦର ଶ୍ଳୋକଗୁଡ଼ିକୁ ଆବୃତ୍ତି କରିବାପାଇଁ ତାଙ୍କର ଯେଉଁ ଇଚ୍ଛା ତାକୁ ଚାପି ରଖି ପାରିଲେନି । ସେମାନଙ୍କ ମଧ୍ୟରେ ମୁଁ କେବଳ ଗୋଟିଏ ଲୋକକୁ ଦେଖିଲି ଯିଏ କେବେ ପ୍ରାର୍ଥନା କରୁ ନଥିଲେ ଏବଂ ସାଧାରଣତଃ କହୁଥିଲେ, 'ମଣିଷର ଦୁର୍ବଳତା ଅବା ଜ୍ଞାନର ଅସୀମତାର ପରିଣାମ ହେଉଛି ଦର୍ଶନ ।' ସେ ମଧ୍ୟ ଦେଶାନ୍ତର ଦଣ୍ଡ କଳାପାଣିରେ ଭୋଗୁଛନ୍ତି । କିନ୍ତୁ ସେ ମଧ୍ୟ ଈଶ୍ୱରଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିବାପାଇଁ କେବେ ସାହସ କରି ନଥିଲେ ।

ସେତେବେଳେ ପର୍ଯ୍ୟନ୍ତ ମୁଁ କେବଳ ଜଣେ କଳ୍ପନାବିଳାସୀ ଆଦର୍ଶବାଦୀ ବିପ୍ଳବୀ ଥିଲି । ସେତେବେଳେ ପର୍ଯ୍ୟନ୍ତ ଅନୁସରଣ କରିବା ଥିଲା ଆମ କାମ । ସମସ୍ତ ଦାୟିତ୍ୱ ବହନ କରିବାର ସମୟ ବର୍ତ୍ତମାନ ପହଞ୍ଚିଲା । ଅନିବାର୍ଯ୍ୟ ପ୍ରତିକ୍ରିୟାଶୀଳ ଅବସ୍ଥା ଯୋଗୁଁ କେତେକ ସମୟ ପାଇଁ ଦଳର ଅସ୍ତିତ୍ୱ ହିଁ ଅସମ୍ଭବ ମନେହେଲା । ଉତ୍ସାହୀ ସାଥିମାନେ ନା ନା ନେତାମାନେ ଆମକୁ ଟାହିଟାପରା କରିବା ଆରମ୍ଭ କରିଦେଲେ । ଆମର କାର୍ଯ୍ୟକ୍ରମ ନିଷ୍ଫଳ ବୋଲି କେଉଁଦିନ ମୋର ମଧ ହୃଦ୍‌ବୋଧ ହୋଇଯିବକି ଭାବି ମୁଁ ଡରୁଥିଲି । ମୋର ବିପ୍ଳବୀ ଜୀବନରେ ତାହା ଏକ ମୋଡ଼ ଥିଲା । 'ଅଧ୍ୟୟନ କର' 'ଅଧ୍ୟୟନ କର' ଏହି ଆହ୍ୱାନ ମୋର ମସ୍ତିଷ୍କର ଗଳିକନ୍ଦିରେ ପ୍ରତିଧ୍ୱନିତ ହେଉଥିଲା । ବିପକ୍ଷ ଦ୍ୱାରା ଉପସ୍ଥାପିତ ଯୁକ୍ତିର ସାମନା କରିବା ଉଦ୍ଦେଶ୍ୟରେ ତୁମକୁ ସକ୍ଷମ କରିବା ପାଇଁ ଅଧ୍ୟୟନ କର । ତୁମ ସିଦ୍ଧାନ୍ତ ସପକ୍ଷରେ ଯୁକ୍ତି ଉପସ୍ଥାପନା କରିବାପାଇଁ ତୁମକୁ ସକ୍ଷମ କରିବା ଉଦ୍ଦେଶ୍ୟରେ ଅଧ୍ୟୟନ କର । ମୁଁ ଅଧ୍ୟୟନ କରିବା ଆରମ୍ଭ କଲି । ମୋର ପୂର୍ବର ବିଶ୍ୱାସ ଓ ଧାରଣା ଜଗତରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଲା । ଆମ ଆଗପିଢ଼ିର ଲୋକମାନେ ବିଶେଷ ଭାବେ ପ୍ରଭାବିତ ହେଉଥିଲେ କେବଳ ରୋମାଞ୍ଚକର ହିଂସାତ୍ମକ ପଦ୍ଧତି ଦ୍ୱାରା । ଆମପାଇଁ ତାହା ବଦଳିଗଲା । ତାର ସ୍ଥାନନେଲା ଗୁରୁତ୍ୱପୂର୍ଣ୍ଣ ଚିନ୍ତାଧାରା । ଆଉ ଏଣିକି ରହସ୍ୟବାଦ ନୁହେଁ କି ଅନ୍ଧବିଶ୍ୱାସ ନୁହେଁ, ବାସ୍ତବବାଦ ହେଲା ଆମର ଝୁଙ୍କ । ଭୟଙ୍କର ଆବଶ୍ୟକତା କ୍ଷେତ୍ରରେ ଶକ୍ତିର ପ୍ରୟୋଗ ଯଥାର୍ଥ ଅଥଚ ସମସ୍ତ ଗଣ ଆନ୍ଦୋଳନ ପାଇଁ ଅହିଂସା ନୀତି ଅପରିହାର୍ଯ୍ୟ । ପଦ୍ଧତି ସଂପର୍କରେ ସେତିକି । ସବୁଠାରୁ ବଳି ମୁଖ୍ୟ ବିଷୟ ହେଲା ଯେଉଁ ଆଦର୍ଶ ପାଇଁ ଆମେ ସଂଗ୍ରାମ କରିବୁ ତାହାର ସ୍ୱଷ୍ଟ ଅବଧାରଣା । ସେତେବେଳେ କର୍ମକ୍ଷେତ୍ରରେ କୌଣସି ଜରୁରି କାର୍ଯ୍ୟକ୍ରମ ନଥିବା ଯୋଗୁଁ ବିଶ୍ୱବିପ୍ଳବ ସମ୍ପର୍କରେ ଭିନ୍ନଭିନ୍ନ ମତାଦର୍ଶ ଅଧ୍ୟୟନ କରିବା ପାଇଁ ମୁଁ ଯଥେଷ୍ଟ ସୁଯୋଗ ପାଇଥିଲି । ନୈରାଶ୍ୟବାଦୀ ନେତା ବାକୁନିନଙ୍କ ଲେଖା ପଢ଼ିଲି, ସାମ୍ୟବାଦର ପ୍ରତିଷ୍ଠାତା ମାର୍କ୍ସଙ୍କ କିଛି ଗ୍ରନ୍ଥ, ଲେନିନ୍, ଟ୍ରଟସ୍କି ଓ ଅନ୍ୟମାନେ ଯେଉଁମାନେ ନିଜ ଦେଶରେ ବିପ୍ଳବ ସଙ୍ଗଠିତ କରିଥିଲେ ସେମାନଙ୍କ ବହୁତ କିଛି ବହି ଅଧ୍ୟୟନ କଲି । ସେମାନେ ସମସ୍ତେ ନାସ୍ତିକ ଥିଲେ । ବାକୁନିନଙ୍କ ଈଶ୍ୱର ଓ ରାଷ୍ଟ୍ର ଖଣ୍ଡଖଣ୍ଡକିଆ ଅପୂର୍ଣ୍ଣବୋଧ ହେଲେ ସୁଦ୍ଧା ବିଷୟବସ୍ତୁର ଚର୍ଚ୍ଚା ହୃଦୟସ୍ପର୍ଶୀ ହୋଇଛି । ଆହୁରି ପରେ ମୁଁ ନିର୍ଲମ୍ବ ସ୍ୱାମୀଙ୍କ କାଣ୍ଡଜ୍ଞାନ ନାମକ ପୁସ୍ତକଟି ସମ୍ପର୍କରେ ଆସିଲି । ତହିଁରେ କେବଳ ଏକ ଧରଣର ରହସ୍ୟମୟ ନାସ୍ତିକବାଦ ଉପସ୍ଥାପିତ ହୋଇଥିଲା । ବିଷୟଟି ମୋତେ ଅତ୍ୟନ୍ତ ରୁଚିକର ବୋଧହେଲା । ୧୯୨୬ ମସିହାର ଶେଷ ବେଳକୁ ମୋର ହୃଦ୍‌ବୋଧ ହୋଇ ସାରିଥିଲା ଯେ ସଂସାର

ସୃଷ୍ଟିକର୍ତ୍ତା, ପରିଚାଳକ ତଥା ନିୟନ୍ତ୍ରଣକାରୀ ଭାବେ ଏକ ସର୍ବଶକ୍ତିମାନ ପରମ ସତ୍ତାଙ୍କର ଅସ୍ତିତ୍ୱ ଭିତ୍ତିହୀନ । ମୋର ଏହି ଅବିଶ୍ୱାସକୁ ଅନ୍ୟଙ୍କ ଠାରେ ପ୍ରକାଶ କଲି । ମୋର ବନ୍ଧୁମାନଙ୍କ ସହ ଏହି ସମ୍ପର୍କିତ ବିଷୟ ଗୁଡ଼ିକ ଉପରେ ବିଚାର ଆଲୋଚନା ଚାଲିଲା । ମୁଁ ଛାପାମରା ନାସ୍ତିକ ହୋଇସାରିଥିଲି । ଅଥଚ ଏହାର ଅର୍ଥ କ'ଣ ବର୍ତ୍ତମାନ ଆଲୋଚନା କରିବା ।

୧୯୨୭ ମଇ ମାସରେ ମୋତେ ଲାହୋରରେ ଗିରଫ କରାଗଲା । ଏହା ଥିଲା ଅପ୍ରତ୍ୟାଶିତ । ପୁଲିସ୍ ଯେ ମୋତେ ଖୋଜୁଥିଲା ଏହି ବିଷୟରେ ମୁଁ ଆଦୌ ଅବଗତ ନଥିଲି । ଉଦ୍ୟାନ ମଧ ଦେଇ ଗଲାବେଳେ ହଠାତ୍ ନିଜକୁ ପୁଲିସ୍ ଘେର ମଧରେ ପାଇଲି । ଆଶ୍ଚର୍ଯ୍ୟର କଥା ସେତେବେଳେ ମୁଁ ଅତ୍ୟନ୍ତ ଶାନ୍ତ ଥିଲି । ମନରେ ଚାଞ୍ଚଲ୍ୟ ନଥିଲା କି ଉତ୍ତେଜନାର ଅନୁଭବ ନଥିଲା । ମୁଁ ପୁଲିସ୍ ଅଟକରେ ରହିଲି । ପରଦିନ ମୋତେ ନିଆ ଯାଇଥିଲା ରେଳବାଇ ପୁଲିସ ହାଜତକୁ ଯେଉଁଠି ମୁଁ ପୂରା ଗୋଟିଏ ମାସ କଟେଇବାର ଥିଲା । ପୁଲିସ୍ କର୍ମଚାରୀଙ୍କ ସହ ବହୁ ଦିନର କଥାବାର୍ତ୍ତାରୁ ଅନୁମାନ କଲି ଯେ କାକୋରି ପାର୍ଟି ସହ ମୋର ସମ୍ବନ୍ଧ ତଥା ବୈପ୍ଳବିକ ଆନ୍ଦୋଳନ ସହ ସମ୍ପର୍କିତ ମୋର କାର୍ଯ୍ୟକଳାପକୁ ନେଇ ସେମାନଙ୍କ ନିକଟରେ କେତେକ ଖବର ଥିଲା । ସେମାନେ ମୋତେ କହିଲେ ଯେ ଲକ୍ଷ୍ନୌରେ ମାମଲାଟିର ବିଚାର କାଳରେ ମୁଁ ସେଠାକୁ ଯାଇଥିଲି, ବନ୍ଦୀମାନଙ୍କୁ ପୁଲିସ୍ କବଳରୁ ଜୋରଜବରଦସ୍ତି ମୁକୁଳେଇବା ପାଇଁ ମଧସ୍ତି ହୋଇଥିଲି, ସେମାନଙ୍କ ସ୍ୱୀକୃତି ପାଇବା ପରେ ଆମେ କେତେକ ବୋମା ଯୋଗାଡ଼ କରିଥିଲୁ, ତହିଁ ମଧରୁ ଗୋଟିକୁ ପରଖିବା ଉଦ୍ଦେଶ୍ୟରେ ୧୯୨୬ ମସିହାର ଦଶହରା ପର୍ବର ଜନଗହଳି ମଧକୁ ଫୋପାଡ଼ା ଯାଇଥିଲା । ମୋର ନିଜ ସ୍ୱାର୍ଥରେ ବୋଲି ଜଣାଇ ସେମାନେ ଆହୁରି କହିଲେ ଯେ ବିପ୍ଳବୀ ଦଳର ଗତିବିଧି ଉପରେ କିଛି ଆଲୋକପାତ କରି ମୁଁ ଯଦି କୌଣସି ବିବୃତି ଦିଏ ତେବେ ମୋତେ ବନ୍ଦୀ କରିବା ପରିବର୍ତ୍ତେ ଛାଡ଼ି ଦିଆଯିବ, ପୁରସ୍କୃତ କରାଯିବ, ଏପରିକି ରାଜସାକ୍ଷୀ ହିସାବରେ ମଧ କୋର୍ଟରେ ହାଜର କରାଯିବନି । ପ୍ରସ୍ତାବଟି ଶୁଣି ମୁଁ ହସିଲି । ଏହି ସମସ୍ତ ଥିଲା ବାଜେ କଥା । ଆମ ଭଳିଆ ଚିନ୍ତାଧାରାରେ ବିଶ୍ୱାସ କରୁଥିବା ଲୋକମାନେ ସେମାନଙ୍କର ନିଜର ନିରୀହ ଜନତାଙ୍କ ଉପରକୁ ବୋମା ପକାନ୍ତିନି । ଦିନେ ସକାଳୁ ସି.ଆଇ.ଡି.ର ତତ୍କାଳୀନ ସିନିଅର ସୁପରିନ୍‌ଟେଣ୍ଡେଣ୍ଟ ମି.ନିଉମ୍ୟାନ୍ ମୋ ନିକଟକୁ ଆସିଲେ । ବହୁ ଅନୁକମ୍ପା ବୋଳା କଥାବାର୍ତ୍ତା ମୋ ସହିତ ହେବା ପରେ ତାଙ୍କପାଇଁ ନିହାତି ଦୁଃଖଦାୟକ କଥା କହିବାକୁ ଯାଇ କହିଲେ ଯେ ସେମାନଙ୍କ ଚାହିଦା ଅନୁସାରେ ମୁଁ ଯଦି କୌଣସି ବିବୃତି ନଦିଏ,

ତେବେ କାକୋରି ମାମଲାରେ ଜଡ଼ିତ କରି ଶାସନ ବିରୁଦ୍ଧରେ ଯୁଦ୍ଧ ଷଡ଼ଯନ୍ତ୍ର ତଥା ଦଶହରା ବୋମା ଦୌରାତ୍ମ୍ୟ ସହ ଜଡ଼ିତ କରି ନୃଶଂସ ହତ୍ୟା ଅପରାଧର ବିଚାର ଉଦ୍ଦେଶ୍ୟରେ କୋର୍ଟକୁ ପଠାଇବା ପାଇଁ ସେମାନେ ବାଧ ହେବେ । ଆହୁରି ଏହା ମଧ କହିଲେ ଯେ, ମୋତେ ଦୋଷୀ ସାବ୍ୟସ୍ତ କରି ଫାଶି ଦଣ୍ଡରେ ଦଣ୍ଡିତ କରେଇବା ପାଇଁ ସେମାନଙ୍କ ନିକଟରେ ଯଥେଷ୍ଟ ସାକ୍ଷ୍ୟପ୍ରମାଣ ଅଛି । ସେହି ଦିନଗୁଡ଼ିକରେ ମୁଁ, ସମ୍ପୂର୍ଣ୍ଣ ରୂପେ ନିର୍ଦ୍ଦୋଷ ଥିବା ସତ୍ତ୍ୱେ, ବିଶ୍ୱାସ କରୁଥିଲି ଯେ ପୁଲିସ୍ ଚାହିଁଲେ ତାହା କରିଦେଇ ପାରିବ । ସେହିଦିନ ହିଁ କେତେକ ପୁଲିସ୍ କର୍ମଚାରୀ ଦୁଇ ବେଳା ନିୟମିତ ଭାବେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା ପାଇଁ ମତେ ପ୍ରବର୍ତ୍ତାଇ ଥିଲେ । ମୁଁ ତ ନାସ୍ତିକ ହୋଇ ସାରିଥିଲି । ମୁଁ ଜଣେ ନାସ୍ତିକ ବୋଲି ମୋର ଯେଉଁ ଗର୍ବ, ତାହା କେବଳ ସୁଖଶାନ୍ତିର ଦିନମାନଙ୍କ ପାଇଁ ସୀମିତ ନା ଏହିଭଳିଆ କଠିନ ସମୟରେ ମଧ ମୁଁ ମୋର ସିଦ୍ଧାନ୍ତଗୁଡ଼ିକରେ ଦୃଢ଼ ରହିପାରୁଛି ତାର ନିଷ୍ପତ୍ତି ମୁଁ ନିଜେ କରିବା ପାଇଁ ଚାହିଁଲି । ବହୁ ଭାବନା ପରେ ମୋର ନିଷ୍ପତ୍ତି ହେଲା ଏୟା ଯେ ଈଶ୍ୱରଙ୍କ ଠାରେ ବିଶ୍ୱାସ ରଖିବା ଓ ତାଙ୍କୁ ପ୍ରାର୍ଥନା କରିବା ଦିଗରେ ମୁଁ ନିଜକୁ ପରିଚାଳିତ କରିପାରିବିନି । ନା, ଆଦୌ ନୁହେଁ । ତାହା ଥିଲା ଅସଲ ପରୀକ୍ଷା ଓ ତହିଁରେ ମୁଁ ସଫଳ ହେଲି । ମୁହୂର୍ତ୍ତକ ପାଇଁ ସୁଦ୍ଧା ଅନ୍ୟ କୌଣସି ବସ୍ତୁର ପ୍ରତିବଦଳରେ ମୋ ବେକର ସୁରକ୍ଷା ଚାହିଁ ନଥିଲି । ତେଣୁ ଈଶ୍ୱର ଅବିଶ୍ୱାସରେ ମୁଁ ଅତି ଦୃଢ଼ ଥିଲି ଓ ଆଜି ମଧ ଅଛି । ସେହି ପରୀକ୍ଷାର ସାମନା କରିବା ସହଜ କଥା ନଥିଲା । 'ଈଶ୍ୱର ବିଶ୍ୱାସ' ଦୁଃଖ ଲାଘବ କରେ, ଏପରିକି ତାକୁ ସୁଖରେ ପରିଣତ କରିପାରେ । ଈଶ୍ୱରଙ୍କ ଠାରୁ ମଣିଷ ବଳିଷ୍ଠ ସାନ୍ତ୍ୱନା ଓ ସହନଶକ୍ତି ପାଇପାରନ୍ତି । ଝଡ଼ ତୋଫାନ ବେଳେ ଅହଙ୍କାର- ଯଦି ବି କିଛି ଥାଏ- ଉଭେଇ ଯାଏ, ଏବଂ ସଚରାଚର ପ୍ରଚଳିତ ବିଶ୍ୱାସଗୁଡ଼ିକର ଅବଜ୍ଞା କରିବା ପାଇଁ ମଣିଷ ସାହସ କରେନା । ଯଦି ସେ କରେ, ତେବେ ଆମକୁ ବୁଝିବାକୁ ହେବ ଯେ ତୁଚ୍ଛ ଅହଙ୍କାର ଛଡ଼ା ତାହା ପାଖେ ଅନ୍ୟ କୌଣସି ଶକ୍ତି ରହିଛି । ବର୍ତ୍ତମାନର ଅବସ୍ଥା ଏକବାରେ ଠିକ୍ ସେୟା । ରାୟ କ'ଣ ହେବ ତାହା ଏବେଠୁ ଆମ୍ଭମାନଙ୍କୁ ଭଲଭାବେ ଜଣା । ସପ୍ତାହ ମଧରେ ତାହା ଶୁଣେଇ ଦିଆଯିବ । ଗୋଟିଏ ଉଦ୍ଦେଶ୍ୟ ପାଇଁ ମୁଁ ମୋ ଜବୀନକୁ ଉତ୍ସର୍ଗ କରୁଛି ଏହି ଧାରଣା ଛଡ଼ା ଆଉ ସାନ୍ତ୍ୱନା କ'ଣ ? ମୁସଲମାନ ଅବା ଖ୍ରୀଷ୍ଟିଆନ୍ ସ୍ୱର୍ଗରେ ଦୁର୍ଲଭ ସୁଖ ପ୍ରାପ୍ତି ତଥା ନିଜର ଦୁଃଖଯନ୍ତ୍ରଣା ଓ ବଳିଦାନର ପ୍ରତିବଦଳରେ ପୁରସ୍କାରର ସ୍ୱପ୍ନ ଦେଖିପାରେ । କିନ୍ତୁ ମୁଁ କ'ଣ ଆଶା କରିପାରିବି ? ମୁଁ ଜାଣେ ଯେଉଁ ମୁହୂର୍ତ୍ତରେ ମୋ ବେକରେ ଦଉଡ଼ିଟି ବନ୍ଧାଯିବ ଓ ମୋ ପାଦତଳୁ ପଟାଖଣ୍ଡିକ କାଢ଼ି ଦିଆଯିବ, ସେହି ମୁହୂର୍ତ୍ତଟି ହେବ

ମୋର ଶେଷ ମୁହୂର୍ତ୍ତ- ମୋର ଅନ୍ତିମ ମୁହୂର୍ତ୍ତ । ମୁଁ, ଅବା ଆହୁରି ନିର୍ଦ୍ଦିଷ୍ଟ ଭାବରେ ଆଧିଭୌତିକ ଭାଷାର ପଦ ବ୍ୟବହାର କରି କହିଲେ, ମୋର ଆତ୍ମା ସେହି ମୁହୂର୍ତ୍ତରେ ସମ୍ପୂର୍ଣ୍ଣ ରୂପେ ଲୋପ ପାଇଯିବ । ଆଉ କିଛି ନଥିବ । ମୋର ଯଦି ସେହି ଦୃଷ୍ଟିରେ ଦେଖିବାର ସାହସ ଅଛି ତେବେ ଏକ ଛୋଟିଆ ସଂଗ୍ରାମମୟ ଜୀବନ- ଯାହାର ଅନ୍ତ ମଧ୍ୟ କୌଣସି ପ୍ରକାରେ ବୈଭବଶାଳୀ ଅନ୍ତ ନୁହେଁ- ତାହାହିଁ ହେବ ମୋର ପୁରସ୍କାର । ତାହା ହିଁ ସବୁକିଛି । କୌଣସି ସ୍ୱାର୍ଥପର ଉଦ୍ଦେଶ୍ୟ ନଥାଇ ଇହଲୋକରେ ବା ପରଲୋକରେ ବିଗ୍ଭର-ପୁରସ୍କାର କାମନା ନଥାଇ ସମ୍ପୂର୍ଣ୍ଣ ନିଃସ୍ୱାର୍ଥୀ ଭାବେ ସ୍ୱାଧୀନତା ନିମନ୍ତେ ମୁଁ ଜୀବନକୁ ସମର୍ପଣ କରିଦେଇଛି, କାରଣ ଅନ୍ୟ କୌଣସି କଥା କରିବା ମୋ ପକ୍ଷେ ସମ୍ଭବପର ନଥିଲା । ଯେଉଁଦିନ ଆମ୍ଭେମାନେ ଦେଖିବା ଏହି ମାନସିକତାରେ ଉଦ୍‌ବୁଦ୍ଧ ହୋଇଥିବା ବହୁ ନରନାରୀଙ୍କୁ, ଯେଉଁମାନେ ମାନବଜାତିର ସେବା ତଥା ଦୁଃଖୀ ମଣିଷର ମୁକ୍ତି ଉଦ୍ଦେଶ୍ୟରେ ନିଜନିଜକୁ ଉତ୍ସର୍ଗ କରିବା ଛଡ଼ା ଅନ୍ୟ କିଛି କରିପାରିବେନି, ସେହିଦିନଟି ସ୍ୱତନ୍ତତାର ଏକ ନୂଆ ଯୁଗର ଉଦ୍‌ଘାଟନ କରିବ । ସେମାନେ ଏହି ମାର୍ଗ, ଯାହା ସେମାନଙ୍କର ବ୍ୟକ୍ତିଗତ ଜୀବନ ପାଇଁ ବିପଦସଙ୍କୁଳ ଅଥଚ ସେମାନଙ୍କର ମହତ୍ ଆତ୍ମା ପାଇଁ ଏହା ହିଁ ଏକମାତ୍ର କଳ୍ପନୀୟ ଗୌରବମୟ ମାର୍ଗ, ତାହାକୁ ଅନୁସରଣ କରିବେ, ରାଜା ହେବା ପାଇଁ ନୁହେଁ, ଏହି ଧରାପୃଷ୍ଠରେ ବର୍ତ୍ତମାନ ବା ପରଜନ୍ମରେ ଅବା ମୃତ୍ୟୁ ପରେ ସ୍ୱର୍ଗରେ ପରୁସ୍କୃତ ହେବା ଆଶାରେ ନୁହେଁ । ଏହା ସେମାନଙ୍କୁ ଅନୁପ୍ରାଣିତ କରିବନି ଅତ୍ୟାଗ୍ଭରୀ, ଶୋଷଣକାରୀ ଓ ଦୁର୍ଦ୍ଦାନ୍ତଙ୍କ ବିରୁଦ୍ଧରେ ସଂଗ୍ରାମର ଡାକରା ଦେବା ପାଇଁ, ଅନୁପ୍ରାଣିତ କରିବ କେବଳ ମାନବଜାତିର ବେକ ଉପରୁ ଦାସତ୍ୱର ଯୁଆଳିକୁ କାଢ଼ି ଫୋପାଡ଼ିବାର ଉଦ୍ଦେଶ୍ୟ, ଏବଂ ସ୍ୱତନ୍ତ୍ରତା ଓ ଶାନ୍ତି ପ୍ରତିଷ୍ଠା ଲକ୍ଷ୍ୟରେ । ଏପରି ମହତ୍ ଉଦ୍ଦେଶ୍ୟକୁ ନେଇ ସେମାନଙ୍କର ଯେଉଁ ଗର୍ବ ତାକୁ ଅହଂକାର ବୋଲି କଦର୍ଥ କରି ହେବକି ? ଏପରି ଘୃଣ୍ୟ ଅପବାଦ କରିବା ପାଇଁ କିଏ ବା ସାହସ କରିବ ? ଯଦି କେହି କରେ, ତେବେ ତାକୁ ମୁଁ କହିବି ଯେ ସେ ଏକ ନିର୍ବୋଧ ଅବା ଠକ । ତାକୁ କ୍ଷମା କରିଦେବା, କାରଣ ସେମାନଙ୍କ ହୃଦୟର ଗଭୀରତା, ଆବେଗ, ଭାବ ତଥା ଉପଲବ୍ଧିକୁ ଅନୁଭବ କରିବା ପାଇଁ ସେ ଅକ୍ଷମ । କେବଳ ଏକ ମାଂସପିଣ୍ଡ ଭଳି ତାର ହୃଦୟଟା ନିର୍ଜୀବ, ତାର ଚକ୍ଷୁଗୁଡ଼ିକ ଦୁର୍ବଳ, ଅନ୍ୟାନ୍ୟ ସ୍ୱାର୍ଥର ପାପ ଦ୍ୱାରା ସେଗୁଡ଼ିକ ଢାଙ୍କି ହୋଇ ରହିଛି । ଆତ୍ମନିର୍ଭରଶୀଳତାକୁ ଅହଂକାର ବୋଲି କଦର୍ଥ କରିବା ପ୍ରବଣତା ସର୍ବଦା ରହି ଆସିଛି, ଯାହା ଅତ୍ୟନ୍ତ ଦୁଃଖଦାୟକ ତଥା ଶୋଚନୀୟ, ଅଥଚ କିଛି କରି ହେବନି ।

ଆପଣ ଯାଆନ୍ତୁ, ପ୍ରଚଳିତ ବିଶ୍ୱାସର ବିରୋଧ କରନ୍ତୁ, ଯାଆନ୍ତୁ ସମାଲୋଚନା କରନ୍ତୁ ବୀରପୁରୁଷଙ୍କର, ମହାମନୀଷୀଙ୍କର, ଯେଉଁମାନେ ସମାଲୋଚନାର ଉର୍ଦ୍ଧ୍ୱରେ ବୋଲି ଲୋକମାନେ ସାଧାରଣତଃ ବିଶ୍ୱାସ କରନ୍ତି, କାରଣ ସେମାନେ ଅଭ୍ରାନ୍ତ ବୋଲି ଧରି ନିଆଯାଇଥାଏ, ଦେଖିବେ ଆପଣଙ୍କ ନିଯୁକ୍ତିର ବଳିଷ୍ଠତା ଜନତାଙ୍କୁ ବାଧ କରିବ ଆପଣ ଜଣେ ଆତ୍ମବଡ଼ପଣିଆ ଲୋକ କହି ନିନ୍ଦା କରିବା ପାଇଁ । ଏହା ଘଟେ ମାନସିକ ସ୍ଥାଣୁତା ଯୋଗୁଁ । ସମାଲୋଚନା ଓ ସ୍ୱାଧୀନ ଚିନ୍ତା, ଏହି ଦୁଇଟି ହେଉଛି ଜଣେ ବିପ୍ଳବୀର ଅପରିହାର୍ଯ୍ୟ ଗୁଣ । ଯେହେତୁ ମହାତ୍ମାଜୀ ମହାନ, ତାଙ୍କୁ କେହି ସମାଲୋଚନ କରିବା ଉଚିତ ନୁହେଁ । ଯେହେତୁ ଶିଖରରେ ସେ ପହଞ୍ଚି ସାରିଛନ୍ତି, ଯାହା ସବୁ ସେ କହିବେ- ରାଜନୀତି ଅବା ଧର୍ମ ଅବା ଅର୍ଥନୀତି ଅବା ନୀତିଶାସ୍ତ୍ର, ଯେଉଁ କ୍ଷେତ୍ର ହେଉନା କାହିଁକି- ତାହା ସବୁ ଠିକ୍ । ଠିକ୍ ବୋଲି ଆପଣଙ୍କର ହୃଦ୍‌ବୋଧ ହେଉ ବା ନହେଉ ଆପଣ କହିବାକୁ ବାଧ : 'ହଁ, ତାହା ସତ ।' ଏହି ମାନସିକତା ପ୍ରଗତି ଆଡ଼କୁ ବାଟ କଢ଼ାଇ ନିଏନା । ଓଲଟି ଏହା ଅତି ସୁସ୍ପଷ୍ଟ ଭାବେ ପ୍ରତିକ୍ରିୟାଶୀଳ ।

ଯେହେତୁ ଆମର ପୂର୍ବପୁରୁଷମାନେ କୌଣସି ଏକ ପରମ ସତ୍ତା- ସର୍ବଶକ୍ତିମାନ ଈଶ୍ୱରଙ୍କ ବିଶ୍ୱାସ କରିବା ଆରମ୍ଭ କରିଥିଲେ, ତେଣୁ ଯଦି କୌଣସି ଲୋକ ସେହି ବିଶ୍ୱାସର ବୈଧତାକୁ ଅବା ସେହି ପରମ ସତ୍ତାଙ୍କର ଅସ୍ତିତ୍ୱକୁ ହିଁ ନେଇ ଆପତ୍ତି ଉଠାଏ, ତେବେ ତାକୁ ଧର୍ମଦ୍ରୋହୀ, ବିଶ୍ୱାସଘାତକ କୁହାଯିବ । ଯଦି ତାହାର ଯୁକ୍ତି ଏତେ ନିଖୁଣ, ସୁସଙ୍ଗତ, ବଳିଷ୍ଠ ଯେ ପ୍ରତିଯୁକ୍ତି ଦ୍ୱାରା ଖଣ୍ଡନ କରାଯାଇ ପାରିବ ନାହିଁ, ମନ ଏତେ ଦମ୍ଭିଲା ଯେ ତା ଉପରକୁ ସର୍ବଶକ୍ତିମାନଙ୍କ କ୍ରୋଧଜାତ ଦୁର୍ଭାଗ୍ୟ ମାଡ଼ି ଆସିବାର ଧମକ ମଧ ଦବେଇ ରଖି ପାରିବନି, ତାକୁ ଜଣେ ଆତ୍ମବଡ଼ପଣିଆ ଲୋକ କହି ନିନ୍ଦା କରାଯିବ, ତାର ମନକୁ ଅହଂକାରୀ ଆଖ୍ୟା ଦିଆଯିବ । ତେବେ ଏହି ତୁଚ୍ଛା ତର୍କବିତର୍କରେ ସମୟ ନଷ୍ଟ କାହିଁକି ? ସମଗ୍ର ବିଷୟଟିକୁ ପ୍ରମାଣିତ କରିବାର ଚେଷ୍ଟା କାହିଁକି ? ଏହି ପ୍ରଶ୍ନଟି ଲୋକ ସମ୍ମୁଖକୁ ପ୍ରଥମଥର ପାଇଁ ଆସିଛି ଏବଂ ଏପରି ବାସ୍ତବ ରୂପରେ ଚର୍ଚ୍ଚା ହେଉଛି ପ୍ରଥମଥର ପାଇଁ, ତେଣୁ ଏହି ଦୀର୍ଘ ଆଲୋଚନା ।

ପ୍ରଥମ ପ୍ରଶ୍ନଟି ସମ୍ପର୍କରେ ମୁଁ ସ୍ପଷ୍ଟ କରି ଦେଇଛି ଯେ ଅହଙ୍କାର ମୋତେ ନାସ୍ତିକବାଦ ଆଡ଼କୁ ନେଇନାହିଁ । ମୁଁ ଯେଉଁ ଭାବେ ଯୁକ୍ତି କରିଛି, ତାହା ଅନ୍ୟକୁ ବୁଝେଇବା ପାଇଁ ଯଥାର୍ଥ ହୋଇଛି କି ନାହିଁ ତାହା ମୋର ପାଠକମାନେ ବିଚାର କରିବେ, ମୁଁ ନୁହେଁ । ମୁଁ ଜାଣେ ବର୍ତ୍ତମାନ ପରିସ୍ଥିରେ ଈଶ୍ୱର-ବିଶ୍ୱାସ ମୋ ଜୀବନକୁ ଆହୁରି ସରଳ କରନ୍ତା, ମୋ ଭାର ଆହୁରି ହାଲୁକା ହୁଅନ୍ତା । କିନ୍ତୁ ତାଙ୍କଠାରେ ମୋର ଯେଉଁ

ଅବିଶ୍ୱାସ ତାହା ସମଗ୍ର ପରିବେଶଟିକୁ ଅତ୍ୟନ୍ତ ଶୁଷ୍କ କରିଦେଇଛି ଏବଂ ଅବସ୍ଥାଟି ଆହୁରି ଅଧିକ ରୁକ୍ଷ ରୂପ ଧାରଣା କରିପାରେ । ରହସ୍ୟବାଦରୁ ଟିକିଏ ନିଖିଏ ଏହାକୁ ରସାଳ, ଛନ୍ଦମୟ କରନ୍ତା । କିନ୍ତୁ ନୟିତକୁ ସାମନା କରିବା ପାଇଁ କୌଣସି ମାଦକ ଦ୍ରବ୍ୟର ସାହାଯ୍ୟ ନେବାକୁ ମୁଁ ଚାହୁଁନାହିଁ । ମୁଁ ଜଣେ ବାସ୍ତବବାଦୀ । ବିଚାର ବୁଦ୍ଧି ସାହାଯ୍ୟରେ ମୋ ଭିତରେ ଥିବା ପ୍ରବୃତ୍ତିକୁ ପରାସ୍ତ କରିବା ପାଇଁ ଚେଷ୍ଟା କରି ଆସିଛି । ଏହି ଲକ୍ଷ୍ୟ ହାସଲ କରିବାରେ ସର୍ବଦା ମୁଁ ସଫଳ ହୋଇନାହିଁ । କିନ୍ତୁ ମଣିଷର କର୍ତ୍ତବ୍ୟ ହେଲା ଚେଷ୍ଟା କରିବା, ପ୍ରଯତ୍ନ କରିବା । ସଫଳତା ନିର୍ଭର କରେ ସୁବିଧା ସୁଯୋଗ ତଥା ପାରିପାର୍ଶ୍ୱିକ ଅବସ୍ଥା ଉପରେ ।

ଦ୍ୱିତୀୟ ପ୍ରଶ୍ନ ସମ୍ପର୍କରେ ଏହା କୁହାଯାଇ ପାରେ ଯେ ଯଦି ଅହଙ୍କାର ଯୋଗୁଁ ନୁହେଁ, ତେବେ ପୁରାତନ ତଥାପି ଆଜି ମଧ୍ୟ ପ୍ରଚଳିତ ଈଶ୍ୱରଙ୍କ ଅସ୍ତିତ୍ୱ ନେଇ ଯେଉଁ ବିଶ୍ୱାସ ତାକୁ ଅବିଶ୍ୱାସ କଲା ଭଳି ଅନ୍ୟ କୌଣସି ଯୁକ୍ତ ନିଶ୍ଚୟ ଥିବ । ହଁ, ମୁଁ ସେହି ବିଷୟ ହିଁ କହିବାକୁ ଯାଉଛି । ଯୁକ୍ତି ରହିଛି । ମୋ ବିଚାରରେ, ଯଦି ଜଣେ ମଣିଷର ନିଜ ଅକ୍ତିଆରରେ କିଛି ଚିନ୍ତାଶକ୍ତି ରହିଛି ତେବେ ସେ ତାର ପାରିପାର୍ଶ୍ୱିକ ଅବସ୍ଥାକୁ ସର୍ବଦା ଯୁକ୍ତି ପ୍ରମାଣ ସାହାଯ୍ୟରେ ବୁଝିବାକୁ ଚେଷ୍ଟା କରେ । ଯେଉଁଠି ସାକ୍ଷାତ ପ୍ରମାଣର ଅଭାବ ଦେଖାଦିଏ, ସେଠାରେ ଦର୍ଶନର ଭୂମିକା ମୁଖ୍ୟ ହୋଇଯାଏ । ଯେପରି ମୁଁ ଆଗରୁ କହି ସାରିଛି, କୌଣସି ଜଣେ ବିପ୍ଳବୀ ବନ୍ଧୁ ସର୍ବଦା କହୁଥିଲେ ମାନବିକ ଦୁର୍ବଳତାର ପରିଣତି ହେଉଛି ଦର୍ଶନ । ଆମର ପୂର୍ବଜମାନଙ୍କ ହାତରେ ଯେତେବେଳେ ଯଥେଷ୍ଟ ଫୁରସତ୍ ରହୁଥିଲା ସେତେବେଳେ ସେମାନଙ୍କ ଏହି ସଂସାରର ରହସ୍ୟଗୁଡ଼ିକର ସମାଧାନ କରିବା ଚେଷ୍ଟାରେ ରହୁଥିଲେ । ଏହାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ସମ୍ପର୍କିତ ସକଳ ପ୍ରଶ୍ନର, ସମସ୍ତ କାହିଁକି, କେଉଁଠୁ, କାହପାଇଁ ଉତ୍ତର ଦେବା ପାଇଁ ସେମାନଙ୍କ ନିକଟରେ ସାକ୍ଷାତ୍ ପ୍ରମାଣର ଭୟଙ୍କର ଅଭାବ ଥିଲା । ତେଣୁ ସମାଧାନ ସେମାନେ ନିଜ ନିଜ ବାଟରେ କଲେ । ଫଳରେ ବିଭିନ୍ନ ଧର୍ମୀୟ ଚିନ୍ତାଧାରାର ମୌଳିକ ତତ୍ତ୍ୱଗୁଡ଼ିକ ମଧ୍ୟରେ ଦେଖାଯାଏ ବିସ୍ତୃତ ପ୍ରଭେଦ, ଯାହା ବେଳେବେଳେ ଚରମ ଶତ୍ରୁତା ଓ କଳହର ଆକାର ନିଏ । କେବଳ ପ୍ରାଚ୍ୟ ଓ ପାଶ୍ଚାତ୍ୟର ଦର୍ଶନରେ ପ୍ରଭେଦ ଦେଖା ଯାଏନି, ପ୍ରତ୍ୟେକଟି ଗୋଲାର୍ଦ୍ଧ ମଧ୍ୟରେ ଥିବା ଚିନ୍ତନ ଗୋଷ୍ଠୀଙ୍କ ଦର୍ଶନରେ ବି ପ୍ରଭେଦ ଦେଖାଯାଏ । ପ୍ରାଚ୍ୟର ଧର୍ମଗୁଡ଼ିକ ମଧ୍ୟରେ ମୁସ୍‌ଲିମ୍ ଧର୍ମ ଓ ହିନ୍ଦୁଧର୍ମ ସହ ଆଦୌ ମେଳ ଖାଏନା । କେବଳ ଭାରତର କଥା ବିଚାରକୁ ନେଲେ, ବୌଦ୍ଧଧର୍ମ ଜୈନଧର୍ମ ପୁଣି ବେଳେବେଳେ ବ୍ରାହ୍ମଣବାଦ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବ୍ରାହ୍ମଣବାଦ ଭିତରେ ପୁଣି ଆର୍ଯ୍ୟ ସମାଜ ଓ ସନାତନ ଧର୍ମ

କଳହରତ । ଚାର୍ବାକ ପୁଣି ଅତୀତ ଯୁଗର ଆଉ ଜଣେ ସ୍ୱାଧୀନ ଚିନ୍ତକ । ପ୍ରାଚୀନ ଯୁଗରେ ସେ ଈଶ୍ୱରଙ୍କ ପ୍ରଭୁତ୍ୱର ବିରୋଧ କରିଥିଲେ । ଏହିସବୁ ତତ୍ତ୍ୱଗୁଡ଼ିକ ମୌଳିକ ପ୍ରଶ୍ନର ଉତ୍ତର ଭାବେ ପରସ୍ପରଠାରୁ ଭିନ୍ନ ଏବଂ ପ୍ରତ୍ୟେକ ଉତ୍ତରଦାତା ଭାବନ୍ତି ଯେ ସେ ହିଁ ଠିକ୍ । ତାହା ହିଁ ଦୁର୍ଭାଗ୍ୟ । ଅଜ୍ଞତା ବିରୁଦ୍ଧରେ ଆମର ଭବିଷ୍ୟତ ସଂଗ୍ରାମ ପାଇଁ ପରୀକ୍ଷାନିରୀକ୍ଷା ତଥା ପ୍ରାଚୀନ ଯୁଗର ବିଦ୍ୱାନ ଓ ଚିନ୍ତକଙ୍କ ଉକ୍ତିକୁ ଭିତ୍ତି ରୂପେ ବ୍ୟବହାର କରିବା ଏବଂ ଏହି ରହସ୍ୟମୟ ସମସ୍ୟାର ସମାଧାନର ସନ୍ଧାନ କରିବା ପାଇଁ ଚେଷ୍ଟା କରିବା ପରିବର୍ତ୍ତେ, ଆମେ ଅଳସୁଆମାନେ- ଅଳସୁଆ ବୋଲି ଆମେ ନିଜେ ପ୍ରମାଣ ଦେଇ ସାରିଛେ- ଧର୍ମ ନାମରେ ହଟଗୋଳ କରୁଛେ, ସେମାନଙ୍କର ତର୍ଜମାଗୁଡ଼ିକ ପାଇଁ ଅବିଚଳ ତଥା ଦ୍ୱିଧାହୀନ ବିଶ୍ୱାସ ଦାବି କରୁଛେ ଏବଂ ଏହି ଭାବେ ଆମ୍ଭେମାନେ ମାନବ ପ୍ରଗତିର ସ୍ଥାଣୁତା ପାଇଁ ଦୋଷୀ ।

ପ୍ରଗତିର ଜଣେ ସପକ୍ଷବାଦୀଙ୍କ ପାଇଁ ଏହା ଅନିବାର୍ଯ୍ୟ ଯେ ସେ ପ୍ରାଚୀନ ବିଶ୍ୱାସର ପ୍ରତ୍ୟେକଟି ବିଷୟକୁ ଅବିଶ୍ୱାସ କରିବ, ତାର ସମାଲୋଚନା କରିବ, ପୁଣି ଯୁକ୍ତି ଦ୍ୱାରା ନିଜକୁ ପୁନଃପ୍ରତିଷ୍ଠା କରିବା ପାଇଁ ତାକୁ ଆହ୍ୱାନ କରିବ । ପ୍ରଚଳିତ ବିଶ୍ୱାସ ଅନ୍ଧିସନ୍ଧିରେ ଥିବା ପ୍ରତ୍ୟେକଟି ବିଷୟକୁ ନେଇ ସେ ବିଚାରବିମର୍ଶ କରିବ । ପର୍ଯ୍ୟାପ୍ତ ବିଚାର ଆଲୋଚନା ଯଦି କାହାକୁ କୌଣସି ସିଦ୍ଧାନ୍ତ ବା ଦର୍ଶନରେ ବିଶ୍ୱାସ କରିବା ପାଇଁ ବାଧ୍ୟ କରେ, ତେବେ ସେପରି ବିଶ୍ୱାସକୁ ସ୍ୱାଗତ । ତାହାର ଯୁକ୍ତି ଭ୍ରମାତ୍ମକ ହେଇଥାଇପାରେ, ସେ ଭୁଲ କରିଥାଇପାରେ, ଅବାଟରେ ଯାଇଥାଇ ପାରେ, ତର୍କଦୋଷ ଥାଇପାରେ । ତଥାପି ସେ ବର୍ତ୍ତମାନର ସଂଶୋଧନର ଅଧୀନ, କାରଣ ଚିନ୍ତନ ହେଉଛି ତାର ପଥ ପ୍ରଦର୍ଶକ । କିନ୍ତୁ ନିରୋଳା ବିଶ୍ୱାସ ଓ ଅନ୍ଧବିଶ୍ୱାସ ବିପଜ୍ଜନକ ଅଟେ, କାରଣ ଏହା ମସ୍ତିଷ୍କକୁ ମାନ୍ଦା କରେ ଓ ମଣିଷକୁ ପ୍ରତିକ୍ରିୟାଶୀଳ କରେ । ନିଜକୁ ବାସ୍ତବବାଦୀ ବୋଲି ଦାବି କରୁଥିବା ଲୋକ ପ୍ରାଚୀନ ବିଶ୍ୱାସର ସମସ୍ତ ବିଷୟକୁ ଯୁକ୍ତିର ସାମନା କରିବା ପାଇଁ ଆହ୍ୱାନ କରିବ । ଯଦି ବିଷୟଟିଏ ଯୁକ୍ତିର ପ୍ରଚଣ୍ଡ ଆକ୍ରମଣ ସହ୍ୟ କରି ପାରିବନି, ତେବେ ଚୁରମାର ହୋଇଯିବ । ତା'ହେଲେ ତାର ପ୍ରଥମ କର୍ତ୍ତବ୍ୟ ହେଲା ଏହି ସମସ୍ତ ବିଷୟକୁ ଭାଙ୍ଗି ଚୁରମାର୍ କରି ଏକ ନୂତନ ଦର୍ଶନର ସ୍ଥାପନା ପାଇଁ ସ୍ଥାନ ପ୍ରସ୍ତୁତ କରିବା । ଏହା ହେଲା ଏହାର ନକାରାତ୍ମକ ଦିଗ । ଏହାପରେ ଆରମ୍ଭ ହେବ ଏହାର ସକାରାତ୍ମକ କାମ, ଯହିଁରେ ପୁନର୍ଗଠନ ଉଦ୍ଦେଶ୍ୟରେ ବେଳେବେଳେ ପୁରାତନ ବିଶ୍ୱାସର କେତେକ ବିଷୟକୁ ବ୍ୟବହାର କରାଯାଇପାରେ । ମୋ କଥା କହିବାକୁ ଯାଇ ଆରମ୍ଭରୁ ହିଁ ମାନି ନେଉଛି ଯେ ଆଲୋଚ୍ୟ ବିଷୟ ସମ୍ପର୍କରେ ମୁଁ ବିଶେଷ କିଛି ଅଧ୍ୟୟନ

କରିବା ପାଇଁ ସକ୍ଷମ ହୋଇନାହିଁ । ପ୍ରାଚ୍ୟର ଦର୍ଶନ ଅଧ୍ୟୟନ କରିବା ପାଇଁ ମୋର ବଡ଼ ଇଚ୍ଛା ଥିଲା, କିନ୍ତୁ ତାହା କରିବା ପାଇଁ କୌଣସି ସୁବିଧାସୁଯୋଗ ବା ଅବସର ପାଇଲି ନାହିଁ । ଆଲୋଚନାର ବିଷୟବସ୍ତୁ, ନକାରାତ୍ମକ ଅଧ୍ୟୟନ ସମ୍ପର୍କରେ ଏହା କହିପାରେ ଯେ ପୁରୁଣା ବିଶ୍ୱାସର ସଠିକତା ସମ୍ପର୍କରେ ମୁଁ ଯେଉଁ ପ୍ରଶ୍ନ ଉଠେଇଛି ତାହା, ମୁଁ ଭାବୁଛି, ମୋର ହୃଦ୍‌ବୋଧ ଉପରେ ପର୍ଯ୍ୟବସିତ । ପ୍ରକୃତିର ଗତି ସମୂହର ସଞ୍ଚାଳକ, ନିୟନ୍ତ୍ରକ, ନିର୍ଦ୍ଦେଶକ ରୂପେ ଏକ ସଚେତନ ପରମ ସତ୍ତାର ନାସ୍ତିତ୍ୱ ମୁଁ ହୃଦ୍‌ବୋଧ କରୁଛି । ଆମେ ପ୍ରକୃତିରେ ବିଶ୍ୱାସ କରୁ ଏବଂ ସମଗ୍ର ପ୍ରଗତିଶୀଳ ପଦକ୍ଷେପର ଲକ୍ଷ୍ୟ ହେଲା ପ୍ରକୃତି ଉପରେ ମଣିଷର ଆଧିପତ୍ୟ ମଣିଷର ସେବାରେ । ଏହାର ପଛରେ ଆଉ କୌଣସି ସଚେତନ ଶକ୍ତି ନାହିଁ ନିର୍ଦ୍ଦେଶ ଦେବା ପାଇଁ । ଏହା ହିଁ ଆମ ଦର୍ଶନ ।

ନକାରାତ୍ମକ ଦିଗରୁ ଆମେ 'ବିଶ୍ୱାସକର୍ତ୍ତାମାନଙ୍କୁ' କେତେକ ପ୍ରଶ୍ନ ପଚାରୁଛୁ:

(୧) ଯଦି, ଆପଣମାନଙ୍କ ବିଶ୍ୱାସ ଅନୁସାରେ, ଏହି ପୃଥିବୀ ବା ସଂସାରକୁ ସୃଷ୍ଟି କରିଥିବା ସର୍ବଶକ୍ତିମାନ, ସର୍ବବ୍ୟାପ୍ତ, ସର୍ବଜ୍ଞାତ ତଥା ଅସୀମ କ୍ଷମତାର ଅଧିକାରୀ ଈଶ୍ୱର ଅଛନ୍ତି, ତେବେ କୁହନ୍ତୁ କାହିଁକି ସେ ସୃଷ୍ଟି କଲେ ଏହି ସଂସାରକୁ ? ଯାହା ଦୁଃଖ, କଷ୍ଟ, ଯନ୍ତ୍ରଣାରେ ଭରା ଅସଂଖ୍ୟ କାହାଣୀର ଏକ ବାସ୍ତବ, ଚିରନ୍ତନ ସନ୍ନିବେଶ ।

ପ୍ରାର୍ଥନା କରୁଛି, ଦୟାକରି କହନ୍ତୁନି ଯେ ଏହା ହିଁ ତାଙ୍କର ନିୟମ: କୌଣସି ନିୟମ ଦ୍ୱାରା ଯଦି ସେ ବନ୍ଧା, ତେବେ ସେ ସର୍ବଶକ୍ତିମାନ ନୁହନ୍ତି । ଆମ ଭଳିଆ ସେ ଆଉ ଜଣେ ଦାସ । ଦୟାକରି କହନ୍ତୁନି ଯେ ଏଥିରେ ହିଁ ତାଙ୍କର ଆନନ୍ଦ । ନେରୋ ଗୋଟିଏ ରୋମ୍ ପୋଡ଼ିଥିଲେ । ସେ ଅତି ସୀମିତ ସଂଖ୍ୟାର ଲୋକଙ୍କୁ ମାରିଥିଲେ । ତାଙ୍କର ନିଜର ସମ୍ପୂର୍ଣ୍ଣ ଆନନ୍ଦ ପାଇଁ ଅତି କମ୍ ଦୁଃଖଦ ଘଟଣା ସୃଷ୍ଟି କରିଥିଲେ । ତଥାପି ଇତିହାସରେ ତାଙ୍କ ନାମ କେଉଁଠି ? କେଉଁ ନାମରେ ଐତିହାସିକମାନେ ତାଙ୍କୁ ଉଲ୍ଲେଖ କରନ୍ତି । ଯେତିକି ବଦନାମ ତାଙ୍କ ଉପରେ ଢାଳି ଦିଆଯାଇଛି; ସ୍ୱେଚ୍ଛାଚାରୀ, ନିଷ୍ଠୁର, ବଦମାସ ନେରୋଙ୍କ ନିନ୍ଦା କରି ଶତ୍ରୁଭାବାପନ୍ନ ଗାଳିଗୁଲଜରେ ଇତିହାସର ପୃଷ୍ଠାଗୁଡ଼ିକୁ କଳଙ୍କିତ କରାଯାଇଛି । କେହି ଜଣେ ଚେଙ୍ଗିଜ୍ ଖାଁ ନିଜର ଆନନ୍ଦ ପାଇଁ କେତେକ ହଜାର ଲୋକଙ୍କ ଜୀବନ ନେଇଥିଲା ବୋଲି ଆମେ ସେହି ନାମଟିକୁ ମଧ୍ୟ ଘୃଣା କରୁଛେ । ତେବେ ଅଂସଖ୍ୟ ଦୁଃଖଦ ଘଟଣା ଯିଏ ସୃଷ୍ଟି କରି ଆସିଛନ୍ତି ଓ ବର୍ତ୍ତମାନ ମଧ୍ୟ ପ୍ରତିଦିନ, ପ୍ରତିଘଣ୍ଟା, ପ୍ରତି ମିନିଟରେ ସୃଷ୍ଟି କରି ଚାଲିଛନ୍ତି, ଆପଣଙ୍କର ସେହି ସର୍ବଶକ୍ତିମାନ, ଚିରନ୍ତନ ନେରୋଙ୍କର କାର୍ଯ୍ୟକଳାପର ଯଥାର୍ଥତା କିପରି ଭାବେ ପ୍ରତିପାଦନ କରିବେ ? ପ୍ରତି ମୁହୂର୍ତ୍ତରେ ଚେଙ୍ଗିଜ୍ ଖାଁଙ୍କର କୁକର୍ମକୁ ପଛରେ ପକେଇ ଦେଲାଭଳି ତାଙ୍କର ଦୁଷ୍କର୍ମକୁ

ସମର୍ଥନ ଦେବେ ବୋଲି କିପରି ଭାବୁଛନ୍ତି ? ମୁଁ ପଚାରୁଛି କାହିଁକି ସେ ସୃଷ୍ଟିକଲେ ମଣିଷକୁ, ଯେତେବେଳେ ତାହା ନକରିବା ପାଇଁ ତାଙ୍କ ପାଖେ ଅମାପ ଶକ୍ତି ଥିଲା ? ଏହି ସମସ୍ତର ଯଥାର୍ଥତା କ'ଣ ? ପରଲୋକରେ ନିର୍ଦ୍ଦୋଷ ଦୁଃଖୀଙ୍କୁ ପୁରସ୍କାର ଓ ଦୁଷ୍କର୍ମକାରୀଙ୍କୁ ଦଣ୍ଡ କଥା କହୁଛନ୍ତି ? ହେଉ ହେଲା । ଗ୍ଲାଡ଼ିଏଟର୍ ସଂସ୍କାର ଖେଳଗୁଡ଼ିକରେ ଅର୍ଦ୍ଧକ୍ଷୁଧିତ, କ୍ରୋଧାନ୍ଧ ସିଂହଗୁଡ଼ିକ ଆଡ଼କୁ ଜିଅନ୍ତା ମଣିଷ ଫୋପାଡ଼ି ଦିଆଯାଉଥିଲା । ଏହି ସଂସ୍କାର ସମର୍ଥକ ଓ ସଙ୍ଗଠକମାନଙ୍କ କାର୍ଯ୍ୟକଳାପ କେତେ ଦୂର ଯଥାର୍ଥ ? ତେଣୁକରି ମୁଁ ପଚାରୁଛି, ସଚେତନ ପରମ ସତ୍ତା କାହିଁକି ଏହି ସଂସାରକୁ ଓ ତହିଁରେ ମଣିଷକୁ ସୃଷ୍ଟି କଲେ ? ଆନନ୍ଦ ପାଇଁ ? ତାହାହେଲେ ସର୍ବଶକ୍ତିମାନ ଈଶ୍ୱର ଓ ନେରୋ ମଧରେ ପ୍ରଭେଦ କେଉଁଠି ?

ଇସ୍‌ଲାମ୍ ଓ ଖ୍ରୀଷ୍ଟ ଧର୍ମାବଲମ୍ବୀଗଣ : ଆହୁରି ଯୁକ୍ତିତର୍କ ପାଇଁ ହିନ୍ଦୁ ଦର୍ଶନ ତ ରହିବ । ମୁଁ ଆପଣମାନଙ୍କୁ ପଚାରୁଛି ଉପରୋକ୍ତ ପ୍ରଶ୍ନ ପାଇଁ ଆପଣଙ୍କ ଉତ୍ତର କ'ଣ ? ଆପଣମାନେ ତ ପୂର୍ବଜନ୍ମରେ ବିଶ୍ୱାସ କରନ୍ତିନି । ଆପଣମାନେ ତ ହିନ୍ଦୁଙ୍କ ଭଳି ସ୍ପଷ୍ଟତଃ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ଦୁଃଖୀଙ୍କ ପାଇଁ ପୂର୍ବଜନ୍ମର ପାପକଥା କହି ପାରିବେନି ? ମୁଁ ଆପଣମାନଙ୍କୁ ପଚାରୁଛି କାହିଁକି ସେହି ସର୍ବଶକ୍ତିମାନ ଶବ୍ଦ ଜରିଆରେ ଏହି ସଂସାରକୁ ସୃଷ୍ଟି କରିବା ପାଇଁ ଛଅ ଦିନ ପରିଶ୍ରମ କଲେ ଓ ପ୍ରତ୍ୟେକ ଦିନର ପରିଶ୍ରମ ଶେଷରେ ସନ୍ତୁଷ୍ଟି ପ୍ରକାଶ କରି କହିଲେ- 'ସବୁ ଠିକ୍ ଅଛି !' ଆଜି ତାଙ୍କୁ ଡାକନ୍ତୁ । ଅତୀତର ଇତିହାସ ଦେଖାନ୍ତୁ । ବର୍ତ୍ତମାନର ଅବସ୍ଥାକୁ ଅଧ୍ୟୟନ କରିବା ପାଇଁ ତାଙ୍କୁ କୁହନ୍ତୁ । ଦେଖିବା ସେ ସାହସ କରିବେ ପରା କହିବାକୁ, 'ସବୁ ଠିକ୍ ଅଛି !'

ହଁ, ହିନ୍ଦୁଗଣ, ଆପଣମାନେ କହନ୍ତି ଯେ ବର୍ତ୍ତମାନ ଯେଉଁମାନେ ଦୁଃଖକଷ୍ଟ ଭୋଗୁଛନ୍ତି ସେମାନେ ପୂର୍ବଜନ୍ମରେ ପାପୀ ଶ୍ରେଣୀର ଲୋକ ଥିଲେ । ଠିକ୍ କଥା । ଆଉ ଆଜି ଯେଉଁମାନେ ଅତ୍ୟାଚାରୀ ପୂର୍ବଜନ୍ମରେ ମହାତ୍ମା ଥିଲେ । ତେଣୁ ତାଙ୍କରି ହାତରେ ରହିଛି ଶାସନଭାର । ମୁଁ ଏହା ମାନି ନେଉଛି ଯେ ଆପଣମାନଙ୍କ ପୂର୍ବଜମାନେ ଅତି ଚତୁର ଥିଲେ । ସେମାନେ ଏପରି ବଳିଷ୍ଠ ତତ୍ତ୍ୱସବୁ ନିରୂପଣ କରିବା ପାଇଁ ପ୍ରୟାସ କରିଥିଲେ ଯାହାରି ପ୍ରୟୋଗରେ ବିବେକ ଓ ଅବିଶ୍ୱାସର ସମସ୍ତ ପ୍ରଚେଷ୍ଟାକୁ ଦାବି ଦେଇ ହେବ । କିନ୍ତୁ ଆସନ୍ତୁ ବିଶ୍ଳେଷଣ କରି ଦେଖିବା ଏହି ଯୁକ୍ତିର ଦମ୍ କେଉଁ ଯାଏ ।

ଅତି ବିଖ୍ୟାତ ନ୍ୟାୟବିତ୍‌ମାନଙ୍କ ଦୃଷ୍ଟିରେ କେବଳ ତିନୋଟି ଅବା ଚାରିଟି ଲକ୍ଷ୍ୟ ଦୃଷ୍ଟିରୁ ଦଣ୍ଡ ଦେବା ଯଥାର୍ଥ ଏବଂ ସେହି ଲକ୍ଷ୍ୟ ହାସଲ ପାଇଁ ହିଁ ଦୁଷ୍କର୍ମୀମାନଙ୍କୁ ଦଣ୍ଡ ଦିଆଯାଇଥାଏ । ସେଗୁଡ଼ିକ ହେଲା: ପ୍ରତିଦାନମୂଳକ (ଯେସାକୁ ତେସା ନ୍ୟାୟ :

ଜଣେ ଆଖି ଫୋଡ଼ି ଦେଲା ତ ତା ଆଖି ଫୋଡ଼ି ଦିଅ, ଦାନ୍ତ ଭାଙ୍ଗି ଦେଲାତ ଦାନ୍ତ ଭାଙ୍ଗି ଦିଅ), ସଂସ୍କାରମୂଳକ (ଦୋଷୀକୁ ଭଲ ବାଟକୁ ଆଣିବା ପାଇଁ ଚେଷ୍ଟା) ଏବଂ ନିବାରଣମୂଳକ (ବିରି ବାଡ଼ିଆ ଦେଖି କୋଳଥ ଚମକିଲା ଭଳି ଦୋଷୀକୁ ଏପରି ଦଣ୍ଡ ଦିଆଯିବ ଯାହା ଅନ୍ୟ କେହି ସେହି ଦୋଷ କରିବା ପାଇଁ ଭୟ କରିବେ: ଅନ୍ୟଙ୍କୁ ଦୁଷ୍କର୍ମକୁ ବିରତ କରିବା ଚେଷ୍ଟା) । ପ୍ରତିଦାନମୂଳକ ତତ୍ତ୍ୱ ବର୍ତ୍ତମାନ ସମସ୍ତ ପ୍ରଗତିଶୀଳ ଚିନ୍ତକଙ୍କ ଦ୍ୱାରା ନିନ୍ଦିତ ହେଉଛି । ନିବାରଣମୂଳକ ତତ୍ତ୍ୱ ସେହି ଏକା ଦଶା ଭୋଗିବାକୁ ଯାଉଛି । ସଂସ୍କାରମୂଳକ ତତ୍ତ୍ୱ ହେଉଛି ଏକମାତ୍ର ତତ୍ତ୍ୱ ଯାହା ଅତ୍ୟନ୍ତ ଆବଶ୍ୟକ ଓ ମାନବୀୟ ପ୍ରଗତି ପାଇଁ ଅପରିହାର୍ଯ୍ୟ । ଏହାର ଲକ୍ଷ୍ୟ ହେଲା ଦୋଷୀକୁ ଜଣେ ସୁଦକ୍ଷ ତଥା ଶାନ୍ତିପ୍ରିୟ ନାଗରିକ ହିସାବରେ ସମାଜ ମଧ୍ୟକୁ ଫେରାଇ ଆଣିବା । ଅଥଚ ଆମେ ମଣିଷକୁ ପାପୀ ମନେକଲେ ମଧ୍ୟ ତା ପାଇଁ ଈଶ୍ୱରଦତ୍ତ ଦଣ୍ଡର ସ୍ୱରୂପ କ'ଣ ? ଆପଣମାନେ କହନ୍ତି ଯେ ସେ ସେମାନଙ୍କୁ ଗାଈ, ବିରାଡ଼ି, ବୃକ୍ଷ, ଜଡ଼ିବୁଟି ଗଛ ଅବା ପଶୁ ହିସାବରେ ପୁଣି ଜନ୍ମ ହେବା ପାଇଁ ପଠାନ୍ତି । ସେତିକରେ ସରିନି । ଏହି ଦଣ୍ଡର ସଂଖ୍ୟା ୮୪ ଲକ୍ଷ ବୋଲି ଆପଣମାନେ ଗଣତି କରନ୍ତି । ମୁଁ ଆପଣମାନଙ୍କୁ ପଚାରୁଛି ଲୋକଙ୍କ ଉପରେ ଏହାର ସଂସ୍କାରମୂଳକ ପ୍ରଭାବ କ'ଣ ? ଆପଣମାନେ ଏପରି କେତୋଟି ଲୋକଙ୍କୁ ଭେଟିଛନ୍ତି, ଯେଉଁମାନେ କୌଣସି ପାପ କରିଥିଲେ ବୋଲି ଗଲା ଜନ୍ମରେ ଗଧ ରୂପେ ଜନ୍ମିଥିଲେ ବୋଲି ଆପଣଙ୍କୁ କହିଛନ୍ତି ? କେହି ନୁହେଁ । ପୁରାଣର କଥା କହନ୍ତୁନି । ଆପଣଙ୍କ ପୌରାଣିକ କାହାଣୀଗୁଡ଼ିକ ଚର୍ଚ୍ଚା କରିବା ପାଇଁ ମୋ ପାଖେ ସୁବିଧା ସୁଯୋଗ ନାହିଁ । ପୁଣି ଆପଣମାନେ ଜାଣନ୍ତି କି ଏହି ସଂସାରରେ ସବୁଠାରୁ ବଳି ପାପ ହେଲା ଗରିବ ହେବା ? ଗରିବୀ ହେଉଛି ଏକ ପାପ, ଏଇ ଏକ ଦଣ୍ଡ । ମୁଁ ପଚାରୁଛି ଜଣେ ଅପରାଧବିଜ୍ଞାନୀ, ଜଣେ ଆଇନ ବିଶେଷଜ୍ଞ ଅବା ଜଣେ ବିଧାୟକଙ୍କୁ ଆପଣ କିପରି ଗ୍ରହଣ କରିବେ ଯଦି ସେ ଏପରି ଏକ ଦଣ୍ଡ ବିଧାନର ପ୍ରସ୍ତାବ ଦେବେ ଯାହା ଅନିବାର୍ଯ୍ୟ ଭାବେ ଆହୁରି ଅଧିକ ପାପ କରିବା ପାଇଁ ମଣିଷକୁ ବାଧ୍ୟ କରିବ ? ଆପଣଙ୍କ ଈଶ୍ୱର କ'ଣ ଏହି ବିଷୟରେ ଭାବିନଥିଲେ ନା ସେ ମଧ୍ୟ ସେହି ବିଷୟ ଶିଖୁଛନ୍ତି ଅଭିଜ୍ଞତାରୁ, ତାହା ପୁଣି ମଣିଷ ସମାଜ ପାଇଁ ଅକଥନୀୟ ଦୁଃଖଯନ୍ତ୍ରଣାର ବିନିମୟରେ ? ଗରିବ ତଥା ଅପାଠୁଆ ମୋଚି ଅବା ଝାଡୁଦାର ପରିବାରରେ ଜନ୍ମ ହୋଇଥିବା ଜଣେ ମଣିଷର ଭବିଷ୍ୟତ କ'ଣ ହେବ ବୋଲି ଆପଣ ବିଚାରୁଛନ୍ତି ? ସେ ଗରିବ, ତେଣୁ ସେ ପାଠ ପଢ଼ିପାରିବନି, ଶିକ୍ଷିତ ହୋଇ ପାରିବନି । ଉଚ୍ଚ ଜାତିରେ ଜନ୍ମ ହୋଇଥିବା ଯୋଗୁଁ ନିଜନିଜକୁ ଶ୍ରେଷ୍ଠଭାବି ସେଇ ଏକା ମଣିଷ

ଜାତିରୁ କେତେକ ତାକୁ ଘୃଣା କରନ୍ତି, ତାକୁ ସେମାନଙ୍କ ଠାରୁ ଦୂରେଇ ରଖନ୍ତି । ତାର ଅଜ୍ଞତା, ତାର ଦାରିଦ୍ର୍ୟ ଓ ତା ପ୍ରତି କରାଯାଉଥିବା ବ୍ୟବହାର ତାର ହୃଦୟକୁ କଠିନ କରିଦେବ ସମାଜ ପ୍ରତି । ଧରନ୍ତୁ, ସେ ଯଦି କିଛି ପାପ କରେ, ତେବେ ତାର ପରିଣତି ଭୋଗିବ କିଏ ? ଈଶ୍ୱର ? ସେ ନିଜେ ? ନା ସମାଜର ପଣ୍ଡିତମାନେ ? ଉଦ୍ଧତ ଓ ସ୍ୱାର୍ଥପର ବ୍ରାହ୍ମଣମାନେ ଜାଣିଶୁଣି ଯେଉଁମାନଙ୍କୁ ଅଜ୍ଞ କରି ରଖିଲେ ଓ ଆପଣଙ୍କର ଜ୍ଞାନଭଣ୍ଡାର ରୂପୀ ପବିତ୍ର ଗ୍ରନ୍ଥ, ବେଦର କେତେକ ମନ୍ତ୍ର ଶୁଣି ଦେଲେ ବୋଲି କାନରେ ତରଳା ସିସା ଢଳା ହେଲେ ଯେଉଁମାନଙ୍କୁ ସହିବାକୁ ପଡୁଥିଲା, ସେମାନଙ୍କର ଦଣ୍ଡ ସମ୍ପର୍କରେ ଆପଣଙ୍କର ବିଚାର କ'ଣ ? ସେମାନେ ଯଦି କୌଣସି ଅପରାଧ କରିଥାନ୍ତେ ତାହା ପାଇଁ ଦାୟୀ ହୁଅନ୍ତା କିଏ ଓ ତାର ପରିଣତି ଭୋଗନ୍ତା କିଏ ? ମୋର ପ୍ରିୟ ବନ୍ଧୁଗଣ, ଏହି ତତ୍ତ୍ୱଗୁଡ଼ିକ ହେଲା ସୁବିଧାଭୋଗୀ ଲୋକଙ୍କ ମନଗଢ଼ା କଥା । ଏହି ତତ୍ତ୍ୱଗୁଡ଼ିକ ସାହାଯ୍ୟରେ ସେମାନେ ସେମାନଙ୍କର ବଳପୂର୍ବକ କ୍ଷମତା ଦଖଲ, ସେମାନଙ୍କର ଧନସମ୍ପତ୍ତି, ସେମାନଙ୍କର ଶ୍ରେଷ୍ଠତ୍ୱର ଯଥାର୍ଥତା ପ୍ରତିପାଦନ କରନ୍ତି । ହଁ, କୌଣସି ଗୋଟିଏ ସ୍ଥାନରେ ସମ୍ଭବତଃ ସିନକ୍ଲେଆର୍ ଆପଟନ୍ ଲେଖିଥିଲେ ଯେ ଜଣେ ଲୋକକୁ ଅମରତ୍ୱରେ ବିଶ୍ୱାସ କରିବା ପାଇଁ କେବଳ ମଣେଇ ଦିଅ ଏବଂ ତାପରେ ତାହାର ସମସ୍ତ ଧନସମ୍ପଦ ଲୁଟି ନିଅ । ଏପରିକି ସାମାନ୍ୟତମ କୁଣ୍ଠାବୋଧ ନଥାଇ ସେ ଆପଣଙ୍କୁ ସେହି କାମରେ ହିଁ ସାହାଯ୍ୟ କରିବ । ଧର୍ମ ପ୍ରଚାରକ ଓ କ୍ଷମତାଧାରୀଙ୍କ ମିଳନ ହିଁ କାରାଗାର, ଫାସିଖୁଣ୍ଟ, ଚାବୁକ ଓ ଏହି ତତ୍ତ୍ୱସମୂହକୁ ସୃଷ୍ଟି କରିଛି ।

ମୁଁ ପଚାରୁଛି ଜଣେ ମଣିଷ କୌଣସି ଦୋଷ ବା ଅପରାଧ କଲାବେଳେ ଆପଣଙ୍କ ସର୍ବଶକ୍ତିମାନ ଈଶ୍ୱର କାହିଁକି ତାକୁ ଅଟକଉ ନାହାନ୍ତି ? ସେ ତ ଅତି ସହଜରେ ସେକଥା କରି ପାରନ୍ତେ । ଯୁଦ୍ଧଖୋର୍ ଅଧିପତିମାନଙ୍କୁ ହତ୍ୟା ଅବା ଯୁଦ୍ଧର ଉନ୍ମାଦକୁ ତ ମାରି ମହାଯୁଦ୍ଧର ସର୍ବବିଧ୍ୱଂସୀ ବିପଦ ମଣିଷ ମୁଣ୍ଡରେ ପଡ଼ିବା ପୂର୍ବରୁ ତାକୁ ଏଡ଼େଇ ଦେଇ ପାରିଥାନ୍ତେ, ତାହା କଲେନି କାହିଁକି ? ଭାରତକୁ ସ୍ୱାଧୀନ କରିବା ଅଭିପ୍ରାୟରେ ବ୍ରିଟିଶ୍ ଜନଗଣଙ୍କ ମନରେ ଏକ ନିର୍ଦ୍ଦିଷ୍ଟ ଭାବନା କାହିଁକି ସୃଷ୍ଟି କରୁନାହାନ୍ତି ? ସମସ୍ତ ପୁଞ୍ଜିପତିଙ୍କ ହୃଦୟରେ ପରହିତ ଭାବନା କାହିଁକି ସଞ୍ଚାରିତ କରୁନାହାନ୍ତି ଯାହା ଫଳରେ ସେମାନେ ଉତ୍ପାଦନର ସାଧନକୁ ବ୍ୟକ୍ତିଗତ ମାଲିକାନାରେ ରଖିବା ଅଧିକାରକୁ ତ୍ୟାଗ କରନ୍ତେ ଏବଂ ତାରି ଫଳରେ ସମଗ୍ର ଶ୍ରମିକ ସମାଜ- ନା, ସମଗ୍ର ମାନବ ସମାଜ- ପୁଞ୍ଜିବାଦର ଦାସତ୍ୱରୁ ମୁକ୍ତି ପାଆନ୍ତା ? ଆପଣ ସମାଜବାଦୀ ତତ୍ତ୍ୱର କାର୍ଯ୍ୟକ୍ଷମତା ସମ୍ପର୍କରେ ବିଚାର କରିବାକୁ ଚାହାନ୍ତି, ଛାଡ଼ନ୍ତୁ, ତାକୁ ଲାଗୁ କରିବା ଦାୟିତ୍ୱ ମୁଁ ଆପଣଙ୍କ ସର୍ବଶକ୍ତିମାନଙ୍କ

ପାଇଁ ଛାଡ଼ି ଦେଲି । ସାଧାରଣ ହିତ ଦୃଷ୍ଟିରୁ ଲୋକେ ସମାଜବାଦର ମୂଲ୍ୟ ବୁଝନ୍ତି । କିନ୍ତୁ ଏହା କାର୍ଯ୍ୟକ୍ଷମ ନୁହେଁ କହି ଏହାର ବିରୋଧ କରନ୍ତି । ଯଦି ସମାଜବାଦ ଭଲ ଅଥଚ କାର୍ଯ୍ୟକ୍ଷମ ନୁହେଁ ତେବେ ସର୍ବଶକ୍ତିମାନ ହସ୍ତକ୍ଷେପ କରନ୍ତୁ- ସମସ୍ତ କଥାକୁ ସୁସଙ୍ଗତ ଭାବେ ସଜାଡ଼ି ଦେବାକୁ । ବର୍ତ୍ତମାନ ଆଉ ଘୂରେଇ ବୁଲେଇ ଏପଟସେପଟ ଯୁକ୍ତି କରନ୍ତୁନି, ସେଥିରେ କିଛି ଲାଭ ନାହିଁ । ମୁଁ ଆପଣଙ୍କୁ କହିଦିଏ, ବ୍ରିଟିଶ ଶାସନ ଏଠି ଚାଲୁଛି ଈଶ୍ୱରଙ୍କ ଇଚ୍ଛା ଯୋଗୁଁ ନୁହେଁ, ସେମାନଙ୍କ ପାଖେ ଥିବା ଶକ୍ତି ଯୋଗୁଁ ଏବଂ ସେମାନଙ୍କୁ ବିରୋଧ କରିବା ପାଇଁ ଆମେ ସାହସ ନକରିବା ଯୋଗୁଁ । ଈଶ୍ୱରଙ୍କ ସାହାଯ୍ୟରେ ସେମାନେ ଆମ୍ଭମାନଙ୍କୁ ସେମାନଙ୍କର ଶାସନାଧୀନ କରି ରଖି ନାହାନ୍ତି, ରଖିଛନ୍ତି ସେମାନଙ୍କର ତୋପ ଓ ବନ୍ଧୁକ, ବୋମା ଓ ଗୁଳି, ପୁଲିସ୍ ଓ ମିଲିଟାରି ବଳ ସାହାଯ୍ୟରେ । ତା ସହିତ ଯୋଡ଼ନ୍ତୁ ଆମର ଉଦାସୀନତା । ଏହି ସବୁର ବଳରେ ସେମାନେ ସଫଳତାର ସହିତ କରି ଚାଲିଛନ୍ତି ଅତ୍ୟନ୍ତ ବୀଭତ୍ସ ଅପରାଧ ସମାଜ ବିରୋଧରେ । କରି ଚାଲିଛନ୍ତି ଗୋଟିଏ ଜାତି ଦ୍ୱାରା ଅନ୍ୟ ଏକ ଜାତିକୁ ନିର୍ଲ୍ଲଜ ଶୋଷଣ । ଈଶ୍ୱର କେଉଁଠି ? କ'ଣ ସେ କରୁଛନ୍ତି ? ମଣିଷ ଜାତିର ଏହି ଦୁର୍ଗତିର ଉପଭୋଗ କରୁଛନ୍ତି ? ତେବେ ତ ସେ ଜଣେ ନେରୋ, ଏକ ଚେଙ୍ଗିଜ୍ ଖାଁ ! ତାଙ୍କର ପତନ ହେଉ !!

ଏହି ସଂସାରର ଆଦି ଉତ୍ପତ୍ତି ତଥା ମଣିଷର ଆଦି ଉତ୍ପତ୍ତି ସମ୍ପର୍କରେ ମୋର ମତ ଚାହୁଁଛନ୍ତି ତ ? ଠିକ୍, ସେଇ କଥା ହିଁ କହୁଛି । ଏହି ବିଷୟ ଉପରେ ଚାର୍ଲସ୍ ଡାରଉ୍ୱିନ୍ ଆଲୋକପାତ୍ କରିଛନ୍ତି । ତାଙ୍କରି ଲେଖା ଅଧ୍ୟୟନ କରନ୍ତୁ । ସୋହନ ସ୍ୱାମୀଙ୍କ କାଣ୍ଡଜ୍ଞାନ ପଢ଼ନ୍ତୁ । ଆପଣଙ୍କ ପ୍ରଶ୍ନର କିଛିଟା ଉତ୍ତର ସେଥିରୁ ମିଳିବ । ଏହା ପ୍ରକୃତିର ଏକ ନିଜସ୍ୱ ବିଚିତ୍ରତା । ବିଭିନ୍ନ ବସ୍ତୁର ଆକସ୍ମିକ ସମ୍ମିଶ୍ରଣରୁ ସୃଷ୍ଟ ନିହାରିକାରୁ ଜାତ ହୋଇଛି ଆମର ଏହି ପୃଥିବୀ । କେବେ ? ଇତିହାସ ଦେଖନ୍ତୁ । ସେହି ପ୍ରକ୍ରିୟା ହିଁ ପ୍ରାଣୀମାନଙ୍କୁ ଜାତ କଲା ଓ ପରିଶେଷରେ ମଣିଷକୁ । ଡାରଉ୍ୱିନଙ୍କ ଜାତିଉପଜାତିର ପ୍ରାରମ୍ଭ ପଢ଼ନ୍ତୁ । ପରବର୍ତ୍ତୀ କାଳର ସମସ୍ତ ପ୍ରଗତି ସମ୍ଭବ ହୋଇଛି ପ୍ରକୃତି ସହ ମଣିଷର ଅହରହ ସଂଘର୍ଷ ତଥା ତାକୁ ଅଧିକରୁ ଅଧିକ ବଶୀଭୂତ କରିବା ପ୍ରୟାସ ଯୋଗୁଁ । ଏହା ହେଲା ସେହି ବିଚିତ୍ରତାର ସଂକ୍ଷିପ୍ତତମ ବିବରଣୀ ।

ଆପଣଙ୍କ ଅନ୍ୟ ଯୁକ୍ତି ହୁଏତ ହେଇପାରେ ଜନ୍ମରୁ ଅନ୍ଧ, ଜନ୍ମରୁ ଛୋଟପିଲାଙ୍କୁ ନେଇ । ପୂର୍ବଜନ୍ମର କର୍ମ ଯୋଗୁଁ ଯଦି ନୁହେଁ ତେବେ ଜନ୍ମରୁ ଅନ୍ଧ, ଛୋଟା ହେଲେ କାହିଁକି ? ପ୍ରାଣୀବିଜ୍ଞାନୀମାନେ ଏହି ସମସ୍ୟାର ଉତ୍ତର ଦେଇ କହିଛନ୍ତି ଯେ ଏହା କେବଳ ଏକ ପ୍ରାଣୀବିଜ୍ଞାନୀୟ ଘଟଣା । ସେମାନଙ୍କ କହିବା ଅନୁସାରେ ପିତାମାତାଙ୍କ କାମ ହିଁ

ଛୁଆଟିକୁ ଜନ୍ମପୂର୍ବରୁ ବିକଳାଙ୍ଗ କରିଥାଏ । ଏକ କଥା ପିତାମାତାମାନେ ଜାଣିଥାନ୍ତୁ ବା ନଥାନ୍ତୁ ସମ୍ପୂର୍ଣ୍ଣ ଦାୟିତ୍ୱ ସେମାନଙ୍କ କାନ୍ଧରେ ।

ଅବଶ୍ୟ ଆପଣ ଅନ୍ୟ ଏକ ପ୍ରଶ୍ନ ପଚାରି ପାରନ୍ତି- ତତ୍ତ୍ୱ ଦୃଷ୍ଟିରୁ ଟିକିଏ ପିଲାଳିଆ । ଯଦି ଈଶ୍ୱର ନାହାନ୍ତି, ତେବେ ଲୋକେ ତାଙ୍କୁ ବିଶ୍ୱାସ କରିବା ଆରମ୍ଭ କଲେ କିପରି ? ସେଥିପାଇଁ ମୋର ଉତ୍ତର ସ୍ପଷ୍ଟ ଓ ସଂକ୍ଷିପ୍ତ । ଭୂତପ୍ରେତରେ ବିଶ୍ୱାସ କଲେ ଯେମିତି ସେମିତି । କେବଳ ତଫାତ୍ ଏତିକି ଯେ ଈଶ୍ୱର ବିଶ୍ୱାସ ପ୍ରାୟ ସାର୍ବଜନୀନ ଓ ତାଙ୍କୁ ନେଇ ଗଢ଼ି ଉଠିଥିବା ଦର୍ଶନ ବିକଶିତ । ଅନ୍ୟାନ୍ୟ ଚରମପନ୍ଥୀଙ୍କ ଭଳି ମୁଁ କହିବିନି ଯେ ଜଣେ ଚରମ ସତ୍ତାଙ୍କ ଅସ୍ତିତ୍ୱ ସମ୍ପର୍କିତ ଭାବନାଟି ଶୋଷଣକାରୀଙ୍କ ଉର୍ବର ମସ୍ତିଷ୍କରୁ ଜାତ । ମୁଁ କହିବିନି ଯେ ଈଶ୍ୱର ବିଶ୍ୱାସ ପ୍ରଚାର କରି ସାଧାରଣ ମଣିଷକୁ ପଦଦଳିତ କରି ରଖିବା ତଥା ନିଜର କ୍ଷମତା ଓ ସୁଖସୁବିଧା ଈଶ୍ୱର ଦତ୍ତ ବୋଲି ଦାବି କରି ଲୋକଙ୍କୁ ଭୁଆଁ ବୁଲାଇବା ଉଦ୍ଦେଶ୍ୟରେ ସେମାନଙ୍କରକ ଏହା ଏକ ଚତୁର କୌଶଳ । ଅବଶ୍ୟ ଅତ୍ୟାବଶ୍ୟକ ବିଷୟକୁ ନେଇ ସେମାନଙ୍କ ସହ ମୋର କୌଣସି ମତଭେଦ ନାହିଁ- ସମସ୍ତ ଧର୍ମବିଶ୍ୱାସ, ଧର୍ମ, ମତ ଓ ଏହି ଜାତୀୟ ଅନ୍ୟ ଅନୁଷ୍ଠାନଗୁଡ଼ିକ ପର୍ଯ୍ୟାୟକ୍ରମେ ସ୍ୱେଚ୍ଛାଚାରୀ ଓ ଶୋଷଣକାରୀ ଅନୁଷ୍ଠାନର, ମଣିଷର ତଥା ଶ୍ରେଣୀର ସମର୍ଥକ ହୋଇଗଲେ । ପ୍ରତ୍ୟେକ ଧର୍ମର ଦୃଷ୍ଟିରେ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ ସର୍ବଦା ଏକ ଅପରାଧ ବୋଲି ଧରା ଯାଇଥାଏ । ଈଶ୍ୱରଙ୍କର ଆବିର୍ଭାବ ନେଇ ମୋର ନିଜର ଧାରଣା ହେଲା ମଣିଷର ଶକ୍ତି ଅସୀମ । ସେ ଅସମର୍ଥ, ଦୁର୍ବଳ । ତାର ଅଭାବ ଅସଂଖ୍ୟ । ଏହି ପରିପ୍ରେକ୍ଷୀରେ ସମସ୍ତ କଠୋର ପରିସ୍ଥିତିକୁ ସାହସର ସହ ସାମନା କରିବାରେ, ସମସ୍ତ ବିପଦର ବୀରତ୍ୱପୂର୍ଣ୍ଣ ମୁକାବିଲା କରିବାରେ, ଉତ୍ସାହ ଉଦ୍ଦେଶ୍ୟରେ, ସୁଖ ଓ ଧନସମ୍ପଦର ପ୍ରଭାବରେ ମତୁଆଲା, ଉଚ୍ଛୃଙ୍ଖଳ ମଣିଷକୁ ରୋକିବା ପାଇଁ ଓ ନିୟନ୍ତ୍ରଣ କରିବା ପାଇଁ ଈଶ୍ୱରଙ୍କ କାଳ୍ପନିକ ଅସ୍ତିତ୍ୱ ସ୍ଥାପନା କରାଗଲା । ଦୁଇଟି ଦିଗରୁ ତାଙ୍କ କଳ୍ପନା କରାଗଲା । ଗୋଟିଏ ତାଙ୍କର ବ୍ୟକ୍ତିଗତ ନିୟମସମୂହ, ଅନ୍ୟଟି ତାଙ୍କର ପିତୃତୁଲ୍ୟ ବଦାନ୍ୟତା । ଏହି ଦୁଇଦିଗରୁ ଈଶ୍ୱରଙ୍କର ସୂକ୍ଷ୍ମାତିସୂକ୍ଷ୍ମ ବର୍ଣ୍ଣନା କରାଗଲା । ମଣିଷଟିଏ ଯେପରି ସମାଜ ପାଇଁ ବିପଦ ନହୁଏ, ତାକୁ ଦୃଷ୍ଟିରେ ରଖି ତାଙ୍କୁ ନିବାରକଙ୍କ ଭୂମିକା ଦେଇ ତାଙ୍କର କ୍ରୋଧର ତଥା ବ୍ୟକ୍ତିଗତ ନିୟମ ସମ୍ପର୍କରେ ଆଲୋଚନା ହେଲା । ପିତୃତୁଲ୍ୟ ବଦାନ୍ୟତାର ଆଲୋଚନା ବେଳେ ତାଙ୍କୁ ପିତା, ମାତା, ଭଉଣୀ, ଭାଇ, ସଖା ତଥା ସାହାଯ୍ୟକାରୀ ଏହି ସମସ୍ତ ଭୂମିକାର ଅଧିକାରୀ କରାଗଲା । ଯେପରି ଜଣେ ମଣିଷ ସମସ୍ତଙ୍କ ଠାରୁ ଦଗାପାଇ, ସମସ୍ତଙ୍କ ଦ୍ୱାରା ବିଶ୍ୱାସଘାତର ଶିକାର ହୋଇ ଦୁଃଖଯନ୍ତ୍ରଣାରେ ଉବୁଟୁବୁ ହେବା ବେଳେ ତାକୁ ସାନ୍ତ୍ୱନା ଦେବ ଈଶ୍ୱରଙ୍କ

ଧାରଣା ତାର ଜଣେ ସଦା ସାହାଯ୍ୟକାରୀ ଚିରନ୍ତନ ବନ୍ଧୁ ହିସାବରେ । ସର୍ବଶକ୍ତିମାନ୍ ଯାହା ଚାହିଁବେ ତାହା କରି ପାରିବେ, ତାଙ୍କୁ ମଧ୍ୟ ଦୁଃଖଯନ୍ତ୍ରଣାରୁ ଉଦ୍ଧାର କରି ପାରିବେ । ବାସ୍ତବରେ ଆଦିମ ଯୁଗରେ ସେପରି ଧାରଣା ସମାଜର କାମରେ ଆସୁଥିଲା । ଦୁଃଖଯନ୍ତ୍ରଣାରେ ଉବୁଟୁବୁ ହେଉଥିବା ମଣିଷ ପାଇଁ ଈଶ୍ୱରଙ୍କ ଧାରଣା ସାହାଯ୍ୟକାରୀ ହୋଇଥାଏ ।

ଅତୀତରେ ଧର୍ମର ସଂକୀର୍ଣ୍ଣତା ଓ ମୂର୍ତ୍ତିପୂଜାର ଯେପରି ବିରୋଧ ସମାଜ କରିଥିଲା, ଆଜି ଖୋଦ୍ ଧର୍ମବିଶ୍ୱାସର ମଧ୍ୟ ଠିକ୍ ସେପରି ବିରୋଧ କରିବା ନିହାତି ଜରୁରୀ । ଯେତେବେଳେ ଜଣେ ମଣିଷ ବାସ୍ତବବାଦୀ ହୋଇ ନିଜ ଗୋଡ଼ରେ ଠିଆ ହେବା ପାଇଁ ପ୍ରୟାସ କରୁଛି, ସେତେବେଳେ ଯେ ଧର୍ମବିଶ୍ୱାସକୁ ଫୋପାଡ଼ି ଦେବାକୁ ବାଧ୍ୟ ଏବଂ ପରିସ୍ଥିତି ତାକୁ ଯେଉଁ ଧରଣର ଦୁଃଖଯନ୍ତ୍ରଣା ମଧ୍ୟକୁ ଠେଲି ଦେଉ ନା କାହିଁକି ବୀରତ୍ୱର ସହ ତାହାର ସାମନା କରିବାକୁ ହେବ । ସଠିକ୍ ଭାବେ ଏହା ହିଁ ମୋର ବର୍ତ୍ତମାନ ଅବସ୍ଥା । ମୋର ଅହଂକାର ମୋତେ ନାସ୍ତିକ କରିନି, ବନ୍ଧୁଗଣ ! ନାସ୍ତିକ କରିଛି ମୋର ଚିନ୍ତନ ପଦ୍ଧତି । ମୋ କ୍ଷେତ୍ରରେ ଈଶ୍ୱର ବିଶ୍ୱାସ ଓ ଦୈନିକ ପ୍ରାର୍ଥନା, ଯାହାକୁ ମୁଁ ନିହାତି ସ୍ୱାର୍ଥପର ଓ ହୀନ କାର୍ଯ୍ୟ ବୋଲି ବିଚାର କରେ- ମୋର ସହାୟକ ପ୍ରମାଣିତ ହେବ କି ମୋର ସ୍ଥିତିକୁ ଆହୁରି ରସାତଳ ଆଡ଼କୁ ଟାଣି ନେବ ମୁଁ ଜାଣେନା । ନାସ୍ତିକମାନେ ସମସ୍ତ ଦୁଃଖକଷ୍ଟକୁ ଦୃଢ଼ତାର ସହିତ ସାମନା କରିଥିବା କଥା ମୁଁ ପଢ଼ିଛି । ତେଣୁ ମୁଁ ମଧ୍ୟ ଜଣେ ମଣିଷ ଭଳି ମଥା ଉନ୍ନତ କରି ଶେଷ ପର୍ଯ୍ୟନ୍ତ- ଏପରି କି ଫାଶିଖୁଣ୍ଟ ପର୍ଯ୍ୟନ୍ତ- ଦୃଢ଼ତାର ସହିତ ଠିଆ ହୋଇ ରହିବା ପାଇଁ ପ୍ରୟାସ କରୁଛି ।

ଦେଖାଯାଉ ମୋର ଗତି କେଉଁଆଡ଼େ । ଜଣେ ବନ୍ଧୁ ମୋତେ ପ୍ରାର୍ଥନା କରିବା ପାଇଁ ଅନୁରୋଧ କଲେ । ଯେତେବେଳେ ମୁଁ ମୋ ନାସ୍ତିକବାଦ କଥା ତାଙ୍କୁ କହିଲି, ସେ କହିଲେ, 'ତୁମ ଅନ୍ତକାଳରେ ତୁମେ ବିଶ୍ୱାସ କରିବା ଆରମ୍ଭ କରିବ ।' ମୁଁ କହିଲି, ନା, ପ୍ରିୟ ମହାଶୟ, ତାହା ହେବନି । ତାହା ମୋ ପକ୍ଷରେ ହେବ ଏକ ହୀନକାର୍ଯ୍ୟ ଓ ତାକୁ ମୁଁ ମୋର ନୈତିକ ଅଧଃପତନ ବୋଲି ଭାବିବି । ସ୍ୱାର୍ଥପର ଉଦ୍ଦେଶ୍ୟ ଥାଇ ମୁଁ ପ୍ରାର୍ଥନା କରିବାକୁ ଯାଉନି । ପାଠକ ତଥା ବନ୍ଧୁଗଣ, "ଏହା କ'ଣ ଅହଂକାର ?" ଯଦି ହଁ, ତେବେ ବି ମୁଁ ତା ସପକ୍ଷରେ ।



# ଆଦିବାସୀର ସାମାଜିକ ଜୀବନରେ ସଂଘର୍ଷର ବୀଜ

(ଗୋପୀନାଥ ମହାନ୍ତିଙ୍କ ବିଭିନ୍ନ ଲେଖାରୁ ସଂଗୃହୀତ ତଥା
ବିଜୟ ଉପାଧ୍ୟାୟଙ୍କ 'ଅନ୍ଧାରି ମୂଳକ' ଗ୍ରନ୍ଥରୁ ଆନୀତ)

ସାହୁକାର ଘରର ବେଶି ଶୋଭା ବଢ଼େଇ ଦିଏ ଦି' ପାଖର ଦୁଇ ପଲ୍ଲୀ ।

ବିଧାତାର ଚିତ୍ରର ବିନ୍ୟାସ ପାଇଁ ଦୌଲତ ଖାନାର ଦୁଇ ପାଖେ ଦୁଇଟା ଫାଙ୍କା ମଶାଣି । ସେମାନେ ମଧ୍ୟ ବୁନିୟାଦ୍; ଏଇ ଦୁଇ ପାଖର ଲୋକେ । ଯୁଗେଯୁଗେ ତାଙ୍କର ବାପା ଗୋସାପେ କାମ ଧନ୍ଦା କରି ଖାଇ ଚଳିଛନ୍ତି । ଜମିଜମା ସବୁ ସାହୁକାର କ୍ରମେ ନେଇଯାଇଛି । ସେମାନେ ସଂକୁଚିତ ହୋଇ ଯାଇଛନ୍ତି, ଘର ସାମ୍ନାରେ ସାହୁକାରର ବଡ଼ କୋଠି । କାମ ଧନ୍ଦା ପରେ ମଦ ଟୋପାକ ଲାଗେ ସୁଆଦ, ଦିନୁଦିନ ଦିନୁଦିନ ଯହୁଁଯାଏ, କେବେ ଦିନେ ସାହୁକାର କହେ, ହେ ତୋ ଉପରେ ତିନିକୋଡ଼ି ଟଙ୍କା ହେଲା, ଟଙ୍କା ଦେବୁ କି ଭୂମି ଦେବୁ ? ଏବେ ମଦ ଦୋକାନ ନାହିଁ, କିନ୍ତୁ ଭୂମି ସବୁ ସରିଛି । (ପରଜା ପୃ. ୧୦୩-୩)

କନ୍ଧ ପରଜା ରଇତ ଆସି ହାତଯୋଡ଼ି ମାଗୁଛି ସାହୁକାର, ପୁଟିଏ ଧାନ କରଜ ଦେ । ସାହୁକାର କହୁଛି ନେ । ଗଲାବେଳେ ସାହୁକାର ପଚାରିଛି, ପୁଟିଏ ନେଲୁକିରେ ? ରଇତ କହିଛି ନେଲି । ସାହୁକାର କହିଛି ଯା ଗୁମାସ୍ତାକୁ କହି ଆ । ରଇତ ଫେରିଆସି କହିଛି କହିଲି । ସାହୁକାର ଏଇ କଥା କହିବାକୁ ତାକୁ ତିନି ଜାଗାକୁ ପଠାଇଛି ।

ତହିଁ ଆରବର୍ଷ

ପୁଟିଏ ମୂଳ, ଆଉ ଅଧ ପୁଟିଏ ସୁଧ ବୋଝଧରି ରଇତ ଆସି କହିଛି ନେ ସାହୁକାର । ସାହୁକାର ଡୋଳା ଦି'ଟା କପାଳକୁ ଉଠେଇ ଦେଇ ପଚାରିଛି, କିରେ ଏ କ'ଣରେ ? ରଇତ କହିଛି, ପୁଟିଏ ମୂଳ ଅଧପୁଟିଏ ସୁଧ । ସାହୁକାର ଜେରା କରିଛି କିରେ ପୁଟିଏ ମୂଳ କଣରେ ? ମୋଠୁ ନେଲୁ ପୁଟିଏ, ଗୁମାସ୍ତାକୁ କହି କରି ନେଲୁ ପୁଟିଏ, ସାହୁକାରଣୀକୁ କହିକରି ନେଲୁ ପୁଟିଏ, ମୋର ଗୋତି ଦେଲା ପୁଟିଏ, ଗଣିଲୁ କେତେ ପୁଟି ହେଲା ? ଚାରିପୁଟି ସମୁଦାୟ ନା ? ସେଥିରେ ସୁଧ ଦୁଇପୁଟି, ଏମିତି ଛ'ପୁଟି ହେଲା । ଏ ଦେଢ଼ ପୁଟି ତ କଳନ୍ତରକୁ ବି ଅଣ୍ଟୁନାହିଁ । ରଇତ ଆବାକାବା

ହୋଇ ଏଣେତେଣେ ଅନେଇଛି, ଛେପ ଢୋକି କହିଦେଇଛି ହଇ, ହେଇଥିବ କାଇଁକି (ଅର୍ଥାତ୍ ପରା) ସାହୁକାର । ସେଇଦିନଠୁ ତ ରଇତ ଋଣୀ । (ପରଜା, ପୃ. ୧୦୩-୪)

ଦେଶିଆ ରଇତ ଧର୍ମକୁ ଡରେ, ସାହୁକାରକୁ ଡରେ । ଉଭୟ ଡର ଭିତରେ ପଡ଼ି ମୁଣ୍ଡ ତା'ର ଗୋଳମାଳ ଧରିଯାଏ । ତା'ର ହିସାବ ଦଉଡ଼ିରେ ଗଣ୍ଠି । ଗଣ୍ଠି ଗଣିଗଣି ତାର ଦିନଯାଏ, ସାହୁକାରର ହିସାବ ଏସବୁ ଦଉଡ଼ି ଗଣ୍ଠିକୁ ବିଶ୍ୱାସ ଯାଏନାହିଁ । ତା'ର ହିସାବ ଥାଏ ଖୁବ୍ ମୋଟାମୋଟି ପୋଥି ଭିତରେ, ଦେଖିଲେ ଆଖି ଖୋସି ହୋଇଯିବ । କେତେ ଅଙ୍କ, ଲେଖା, ମୁଣ୍ଡ, କଳାଶିରା, ନାଲିସିରା ମିଶି ତା'ର ରୂପ, ସେ ଦିନୁ ଦିନ ନିଜେ ନିଜର ବଂଶ ବଢ଼େଇଯାଏ କାଗଜ ଉପରେ, ଆଉ ପୋଷିବାର ଭାର ସବୁ ରଇତର ।

ବାପ ଭାଇ ଗୋତି ହୋଇ ସାହୁକାର ଘରକୁ ଚାଲିଗଲା ପରେ ସେ ପରିବାରର ଅବସ୍ଥା ସଂପର୍କରେ ଗୋପୀବାବୁ ଲେଖିଛନ୍ତି -

ପଡ଼ିଆ ଭୂଇଁ ଟାଙ୍ଗରା ହୋଇ ପଡ଼ିରହେ ଚାରିପାଖର ଗର୍ଭିଣୀ ଭୂଇଁ ମଝିରେ । ବାଟେବାଟେ ଝିଲି ବିଲି ଫମ୍ପା ହାଣ୍ଡିରେ ପାଣି ଅଜାଡ଼ିବାକୁ ଗାଁ ତୁଠକୁ ଗଡ଼ିଯାଆନ୍ତି । ଘରେ ଖାଦିନାହିଁ; ଆମ୍ବ କୋଇଲି ନୋହିଲେ ତେନ୍ତୁଳି ଶସ ଛେଚି ଛିଣ୍ଡାକନାରେ ବାନ୍ଧି ପାଣିଧାରରେ ବାନ୍ଧିଦେଇ ଆସନ୍ତି ଗୋଟାଏ ଖୁଣ୍ଟରେ । ସେହି ହେବ ଖାଦି । ଜଂଗଲରୁ କନ୍ଦା, ପତ୍ର, ଡାଳ । କେବେ କେଉଁଦିନ ମିଳିଲେ ବଣ ବିରୁଡ଼ି ଟେଙ୍କର ଫେଣା ସିଝେଇ ଝୋଳ । ମୂଷା, ଢେମଣା ସାପ, ଚଢ଼େଇର ଡିମ୍ବ, କାଇ ମହୁଫେଣାର ଡିମ୍ବ, ଏସବୁ ଅଣିରା ପିଲାଏ ପାଇବେ । ମାଇପି ଘରେ ଏ ଆନନ୍ଦ ସ୍ୱପ୍ନ । ଝରିପୋକର ଦିନ ଆସିନାହିଁ । ନହେଲେ ଜଳଖିଆଟା ଚଳନ୍ତା ।

ପେଟ ଭିତରେ କେତେ ପ୍ରକାରର କୋଳାହଳ ହୁଏ । କେତେ ଛଳଛଳ ଅଶୁଣା ଶବ୍ଦ । ମନ ଘାଉଳି ହୁଏ, ଦିନ କଟେ । (ପରଜା, ପୃ ୨୦୨-୩)

ଏଇ ମେଘ ଢୁଢୁ କଳା ଅନ୍ଧାର ଭିତରେ ପାହାଡ଼ମୁଣ୍ଡିଆ ଉପରେ ଗୋଟିଏ ଗୋଟିଏ ପୁଞ୍ଜିଏ ପୁଞ୍ଜିଏ କଳାକଳା ଲୋକ, ଯାହାଙ୍କର ସାମଞ୍ଜସ୍ୟ ରହିଛି କଳା ଅନ୍ଧାର ସହିତ, କଳା କାଦୁଅ ସହିତ, ଆଉ ବଣର ଗଛ ସହିତ । ଦୂରରୁ ଦେଖିଲେ ବାରିହୁଏନାହିଁ, ପଥର, କାଠ, ମାଟିକୁଦ, କି ମଣିଷ କି ମେଘ ଭିତରର କେଉଁ କିମ୍ଭୂତ ଛାଇ, ପାଣି ପବନର ଭଉଁରୀରେ କାଦୁଅରୁ ଉଠି ଏପାଖ ସେପାଖ ଦୋଳି ଖେଳୁଛି ଦି'ଦିନ ପାଇଁ ।

କୁଦ କୁଦ ଖାଲି ପାହାଡ଼, କୁଢ଼କୁଢ଼ ପଥର, ତା'ରି ଭିତରେ ଦୋଟି ଚାରୋଟି ପୋଡୁ ମାରୁ, ଭୂଇଁତଷ୍ଟୁ, କୋଡ଼କି ଧରୁ ମଣିଷ....

ଏମାନେ ନିଆଶ୍ରୀ ଲୋକ, ମେଘମାଡ଼ରେ କୋଡ଼କି ମାଡ଼ ମିଶେଇ ମାଟି ତିଆରି କରନ୍ତି ପାହାଡ଼ର ମୁଣ୍ଡିଆ ଉପରେ ।

ତଳେ ଭୂଇଁ ଲହଡ଼ି ଖେଳେ । ଶୁଣ୍ଢିଘର କ୍ଷେତରେ, କୁମୁଟିଘର ଜମିରେ, ମହାଜନ ବେଢ଼ାରେ, ତଲ୍ଲାତଲ୍ଲିବାନ୍ଧି ମୁଣ୍ଡରେ ଛତା ଛତୋଡ଼ି ଠେଁସି ଗାଁ ଗୁଡ଼ାର ଲୋକେ ନିଜାଣି ରୋପାଣି, ଜମି ସୁତରାସୁତୁରି କାମରେ ଲୋଟୁଥାନ୍ତି, ନହେଲେ କେଉଁ ଭାଗ୍ୟବାନ ଚାଷୀ ଆପଣାର କ୍ଷେତରେ ହାତର କାରସାଦି ଦେଖାଉଥାଏ । ଆଉ ଏ ଉପରର ଲୋକ କେଇଟା ଗୋଟାଏ ଗୋଟାଏ ଉଞ୍ଚ ଢେପ ଆବୋରି ଲାଗି ପଡ଼ିଥାନ୍ତି । ପାଣି ପବନ ବଜ୍ର ଘଡ଼ଘଡ଼ି ଭିତରେ, ଖେଆଲ ନାହିଁ କୁଆଡ଼କୁ ।

ପାଦରେ ବାଲି କାମୁଡ଼ି ଘା'କରେ, ପିଠିରେ ଯାଦୁ ହୁଏ । ଶେଥା ଯାଦୁ, ଦେହରେ ଅନର୍ଯ୍ୟାପ୍ ବର୍ଷାର ଶର କଣ୍ଟାପରି ଫୋଡ଼ି ହୋଇଯାଏ, ମୁଣ୍ଡର ଅଲରା ବାଳ ପବନ ଝିଙ୍କା ଓଟରା କରେ, ତଥାପି ସେମାନେ ହଟନ୍ତି ନାହିଁ । ତୁଣ୍ଡରେ ଖଣ୍ଡେଖଣ୍ଡେ ଧୁଙ୍ଗିଆ ପତ୍ର ଯାକି ଦେଇ ବଙ୍କା ଢେମଣା ପାଦ ଆଙ୍ଗୁଠିରେ ଢାଲ ଢାଲୁଅ ମାଟିକୁ ଝିଟିପିଟି ପରି ଚାପିଧରି କୋଡ଼କି ଉଠେଇ ପାହାର ଲଗାନ୍ତି, ହାତ ଥମେ ନାହିଁ ।

ବଣ ଉହାଡ଼ରୁ ବାଘ ରଡ଼ିଛାଡ଼େ । ଝାମ୍ପିନେଇ ଧରି ଚାଲିଯାଏ ବତିଶ ମାଳି ଭିତରର କେଉଁ ଖୋଲ ଭିତରକୁ, ନିତି ଏପରି ଘଟେ । କିନ୍ତୁ କୋଡ଼କି ମାରୁ ହଟେନାହିଁ । ××× ତଳର ତିଆରି ମାଟିରେ ତା'ର ଭାଗ ନାହିଁ ସତ, ଭାଗ ଅଛି ମୁଣ୍ଡିଆ ଚୂଳର କଙ୍କର ମଟାଳରେ । ସାଂଗ ତାର ଚିଲ ଆଉ ଶାଗୁଣା, ବାଜ ଆଉ ମୟୂର ମାରୁ (ମଜୁର୍‌ଶୁଲିଆ) ଆଉ ଯେତେ ଭୂତ, ପ୍ରେତ, ଆଉ ତୋଫାନ ବରଷା । (ପରଜା ପୃ ୨୬୦-୧)

ପର୍ବତ ଉପରେ କନ୍ଧର ଚାଷ, ତଳେ ସେ ଯେଉଁ କ୍ଷେତକୁ ସବୁଦିନିଆ କରି ଛାଡ଼ି ଦେଇ ଯାଇଛି ସେ ସବୁ ପରର । ଧୀରେଧୀରେ ସାହୁକାର ଆସୁଛନ୍ତି, କ୍ଷେତ ବଢ଼ାଉଛନ୍ତି, କନ୍ଧିଆ ଦେଶରେ ଚେର ମଡ଼ଉଛନ୍ତି । ଯେଉଁଠି ଆଖି ଦିରିସିଆ ଧାନ ଗହୀର କୋଶକୁ କୋଶ ଲମ୍ବିଯାଇଛି, ସେଠି ସାହୁକାର, ଶୁଣ୍ଢି, ବ୍ରାହ୍ମଣ, ତେଲେଙ୍ଗା । ସେମାନେ ବାହାର ସଭ୍ୟତାର ଉତୁରା ପେଜ ପରି ଫୋପାଡ଼ି ହୋଇ ବଣକୁ ଆସିଥିଲେ ଲୋଟା କମ୍ବଳ ଧରି । ବର୍ତ୍ତମାନ ସେମାନେ ମହାଜନ । ଶୁଣ୍ଢି ମଦ ବିକିବିକି ଜମି କଲେ । ବ୍ରାହ୍ମଣମାନେ କୁଆଡ଼େ ଭିକମଗା ଚାଉଳ ଏକାଠି ଜମେଇ ଛାଡ଼ି ଦେଇଯାଆନ୍ତି ଗାଁ ମୁଣ୍ଡିଆଳ ଘରେ, ସେହି ଚାଉଳକୁ ଦେଢ଼ୀ ଲଗାନ୍ତି, କ୍ରମେ ଅଧମର୍ଣ୍ଣ ଠାରୁ ଜମି ନିଅନ୍ତି । ତେଲେଙ୍ଗାମାନେ ସବୁ ଉପାୟ କରନ୍ତି । କିଏ ଦେଢ଼ୀ ମହାଜନୀ, କିଏ ବା ତୁଚ୍ଛାକୁ ନଫର ନଫର ହୋଇ କୌଶଳ ଲଗେଇ ଜମି ମାରନିଏ, କେତେ ଉପାୟରେ । ବନ୍ଧୁ

ହୋଇ ଆସି, ସଂଗାତ ମୈତ୍ର ବସି, ମଦ ପାଣି ଦେଇ ଧୀରେଧୀରେ ଚେକା ମାଡ଼ି ବସନ୍ତି । ଅଧିକାରୀଙ୍କ ଶରଣିଆ ଯେଉଁମାନେ, ତାଙ୍କର ତ ସାତଖୁଣ୍ ମାଫ୍ । କାଗଜ ଆଉ ବଟୁ ଚିହ୍ନ, ବଟୁ ଚିହ୍ନ ଆଉ କାଗଜ, ଜମି ହାସଲ । କିଏ ବନ୍ଧା ବୋଲି କହି ବିକ୍ରି ଲେଖେଇ ନେଇ ଛୁ, କିଏ ରସିଦ ବୋଲି ନା ଦାର - (ତ୍ୟାଗପତ୍ର) ଲେଖେଇ ନେଉଚି । ବନ୍ଦୋବସ୍ତ ନାହିଁ, ଖତିୟାନ୍ ନାହିଁ, ସ୍ୱତ୍ୱ ବିଷୟରେ ସଂପୂର୍ଣ୍ଣ ଧାରଣା ନାହିଁ, ଜୋର ଯାହାର ମୁଲକ ତା'ର, ପୋଷାକ ଯାହାର ଜୋର୍ ତାହାର । କାଗଜ ଉପରେ ବଟୁ ଚିହ୍ନ ମାରି ଦେଇ କନ୍ଧିଆ ଭାଇ ନୂଆ ଜମି ଖୋଜିବାକୁ ଚାଲିଯିବ ପର୍ବତ ଉପରକୁ । (ଅ.ସ.- ପୃ.୫୫)

"ଏ ପାଖେ ହାତୀ, ସେ ପାଖେ ହଜିଲା ପୂର୍ବପୁରୁଷଙ୍କ ଅଦେଖା ଆତ୍ମା, ଅନ୍ୟ ସ୍ଥାନରେ ପୋଲାଖିଆ ସାହୁକାର । ମଦ ଋଣ ଦେଇ, ଟଙ୍କା ଋଣ ଦେଇ, ସାମାନ୍ୟ ଧାନ କରଜ ଦେଇ କେତେ ଫିକର କରି ସେମାନେ କନ୍ଧ ସଉରା ତିଆରି କରିଥିବା କ୍ଷେତକୁ ନିଜର କରି ନେଇ ସାରିଛନ୍ତି, ଗାଁ ଯାକ ଅନ୍ୟ ଲୋକଙ୍କର ଗୋବେ ବୋଲି ଜମି ନାହିଁ ।

ଖାଲି ଆଦିବାସୀ ଅଞ୍ଚଳ ବୋଲି କାହିଁକି, ନାନା ଉପାୟରେ ପୃଥିବୀର ସର୍ବତ୍ର ଲାଗି ରହିଛି ସେହି ଶୋଷଣ । ଜଣେ ଭୂମିର ମାଲିକ ବୋଲାଇ ପରିଶ୍ରମ ନକରି ଫସଲର ବଡ଼ ଭାଗ ଖାଉଛି । ଆଉ ଜଣେ ଜଂଗଲ ଧରି ଜମିରେ ଦେହ ମେହନତ କରି ଫସଲ ଉପୁଜାଇ ବି ଫସଲର ଅଧିକାରୀ ହୋଇପାରୁ ନାହିଁ । ବଡ଼ ପୁରୁଣା ଏ କଥା, ଅଥଚ ନିତି ନୂଆ ।

ହେଇ ଦେଖାଯାଉ ମହନି ପାତ୍ର କଥା, ପୋଷାକରେ ଭଦ୍ରତାର ଛାପ, ବେକଠୁ ଆଣ୍ଠୁ ଯାକେ ଲମ୍ବା ହଳଦିଆ କୋର୍ଟରେ କେଉଁଠି ଗୋଟିଏ ବୋତାମ ବି ଖୋଲାନାହିଁ, ମାପିଚୁପି ଗଣିଗଣି କଥା, ଯେ ଓଠର ବାଙ୍କଟା ଯିବ କେତେ ଦୂର ଯାକେ । ବିଧବା ରୁକ୍ମିଣୀ ଦେବୀଙ୍କ ଆମ୍-ମୁକ୍ତାର ହୋଇ ମହନି ପାତ୍ରଙ୍କ ଜୀବନ ଆରମ୍ଭ । ତାଙ୍କ କଥା ଯେ ଯାହା କହନ୍ତୁ ସେ' ତ ଆଖିରେ ନ ଦେଖିବା କଥା, କିନ୍ତୁ ଆମ୍-ମୁକ୍ତାର ହେଲାପରେ ଯେ ଆପଣା ଗାଁରେ ମହନି ପାତ୍ର ଦି' ସାହାଲା କୋଠା ତିଆରି କଲେ, ତାଷ ଜମି ଏକା ଚକରେ ଶହେ ଏକର ଭେଇନେଲେ ଓ ଖାଉନ୍ଦଙ୍କ ବାଳୁତ ଦୁହିଁଙ୍କ ସ୍ୱାର୍ଥ ରଖୁଛି କହି ଆପେ କେତେ ଗାଁର କନ୍ଧଙ୍କୁ ଚିତାକାଟି ନାନା କୌଶଳରେ କନ୍ଧଙ୍କ ଜମି ନେଇଯାଇ କନ୍ଧକୁ ଖପରାରେ ଖୋଇଦେଲେ, ଏ ତ ଆଖିରେ ଦେଖିବା କଥା । ଧମକେଇବା, ଡରେଇବା, ଠକିବା, ଜାଲ୍ କରିବା, ମିଛ କହିବା, ପିଟିସନ୍ ପକେଇବା, ମକଦ୍ଦମା ଲଗେଇବା, ମଦ ଲାଞ୍ଚ ଦେଇ ଗୁଣ୍ଡା ଲଗେଇ ପିଟେଇବା, ଘର ହୁରେଇବା ସବୁ ଦୁଷ୍କାମିରେ

ଥାଇ କେଉଁଥିରେ ନିଜେ ଚିହ୍ନା ନ ପଡ଼ିବା, ଏ' ତ ତାଙ୍କର ନିତିଦିନର କାର୍ଯ୍ୟ । ଦଳ ଗଢ଼ିଲେ ବଳ ବଢ଼େ - ଏଇ ନୀତିରେ ମହନି ଗୋଟିଏ ଦଳର ନେତା । ହାତରେ ଖଣ୍ଡେ ଖବରକାଗଜ ବି ଅଛି - 'ନିଜ ସମ୍ବାଦ ଦାତା' ଯାହା କହିଲେ ତାହା ଛାପିଦ୍ଦେଇ ପାରିବେ, ନ ଥାଉ ସେ ଖବରକାଗଜର ବେଶି କାଟ୍‌ତି । ଗୋଟିଏ ପ୍ରଶ୍ନକୁ ଦି'ଟଙ୍କା ହିସାବରେ ଦେଇଦେଲେ ମନଇଚ୍ଛା ପ୍ରଶ୍ନ ପଚାରିବାକୁ ଲୋକ ଅଛନ୍ତି, ହେଉପଛେ ସେ ପ୍ରଶ୍ନ ଯେତେ ଅମୂଳକ, ପଚାରି ଦେଲେ ହିଁ ହେଲା । ତେଣିକି ଲୋକେ କୁହାକୁହି ହେଉଥାନ୍ତୁ ସତ ମିଛ ବିଷୟରେ । ଭଦ୍ରଲୋକଙ୍କୁ ଭାଣ୍ଡିଆ କରିବାକୁ ଯାହା କିଛି ଗୋଟିଏ ଅପବାଦ ସୃଷ୍ଟି କରିଦେଲେ ହିଁ ହେଲା । ସେହି ହିଂସାର ଅବତାର ପିନ୍ଧେ ଧୋବଲା ପଇତା, ଚୌକିରେ ବସି ମୁଣ୍ଡ ଟୁଙ୍ଗାରେ ମାମଲତ ଭାଂଗେ, ଦେଶର ପ୍ରତି ବଡ଼ ବିଷୟରେ ବି ବିବୃତି ଦିଏ । - (ଶିବଭାଇ- ପୃ. ୪୫-୪୬)

"ସେହିପରି କେତେ ଶୁଣ୍ଡି ମହାଜନ, କେତେ କୁମୁଟି, ବେପାରୀ, କେତେ ଥିଲାବାଲା । ଗରିବଙ୍କ ପାଇଁ ଆଖିରୁ ଲୁହ ଗଡ଼ାଇ ବକ୍ତୃତା ଦିଅନ୍ତି ଗୋବର୍ଦ୍ଧନ ପାଢ଼ୀ । ସେହି ପୁଣି କରାନ୍ତି ଯେତେ ବେଠି ବେଗାରି । କୋଠିଆକୁ ମୂଲ ଦେଲାବେଳକୁ ମାସକୁ ଛ'ଟଙ୍କା ସାତ ଟଙ୍କା । ଟଙ୍କା କରଜ ଦେଲେ ସୁଧ ଟଙ୍କାକେ ଟଙ୍କାଏ । ସେମାନେ ଉପରେ ଉପରେ କନ୍ଧ ସଉରାଙ୍କ ହାତରେ ବଣ ହଣାଇ ଜମି ତିଆରି କରାଇ ନିଅନ୍ତି । କହନ୍ତି - 'ଯେ ଆମ ବଣ, ତୁମେ ସଫାକର ଖାଅ, ଯାଉ ଦି ବର୍ଷ; ଯାହାକିଛି ସାମାନ୍ୟ ଖଜଣା କରିଦେବା । ତୁମେ ଜମି ତିଆରି କର, ଏଠି ଘରଦୁଆର କର । ଜମି ସଫା ହୋଇ ଠିକଣା ହୋଇସାରିବା ପରେ ଦିଅନ୍ତି ସେମାନଙ୍କୁ ତଡ଼ି, ଜମି ମାଡ଼ି ବସନ୍ତି । ଅଣେ ବଣେ କଣେ ଶିରାଏ ଶିରାଏ ବସା ବାନ୍ଧିଛନ୍ତି ଛାରପୋକ ଦଳ, ଡିମ୍ବଠୁ ବଡ଼ଯାକେ, ସେହି ଯେଉଁମାନେ ରାତିକା ରାତି ଟଙ୍କାକୁ ପାଞ୍ଚଟଙ୍କା କରିବାକୁ ଇଚ୍ଛା କରନ୍ତି, କିଏ କିରୋସିନି ତେଲ ଚାରି ପଇସାରେ ବିକିଏ ପଳାଏ କମ୍ ଦିଏ । କିଏ ଲୁଗାଖଣ୍ଡେ ବିକିଲେ ଟଙ୍କାକେ ସାତଣା ଅଧିକା ହାଙ୍କେ । କିଏ ଟଙ୍କାଟିଏ କରଜ ଦେଲେ କହେ ସୁଧ ବାବଦକୁ ବର୍ଷକୁ ନେବେ ତିନିସେର ଛ' ସେର କି ବାରସେର ସୋରିଷ । ସେତକ 'ଫାଇଦା' । କିଏ ଠିକବାପାଇଁ ସାନମାଣରେ ବିକେ, ବଡ଼ମାଣରେ କିଣେ । 'ଚିନ୍ନାମା' ଅର୍ଥାତ୍ 'ସାନଝିଅ', ବୋଲି ହାଙ୍କିଲେ ଚାକର ସାନମାଣ ଆଣି ପହଞ୍ଚାଏ । 'ପେଦ୍ଦାମା' ଅର୍ଥାତ୍ 'ବଡ଼ଝିଅ' ବୋଲି ହାଙ୍କିଲେ ସେ ଆଣେ ବଡ଼ମାଣ । ଯହିଁରେ ତିନିସେର କହି ଚାରିସେର ମାପି ନେଇହୁଏ । କେଉଁଠି ଗୁଣୁପୁରରେ ବେପାରି ଲାଞ୍ଜିଆ ସଓରା ସଂଗେ ମିତ ବସେ, କାରଣ ମିତ ମାଗଣାରେ ଭାର ଥୋର ବୋହି ଲାଗିଥିବ ମିତ ଘରକୁ,

ହରଡ଼, ମୁଗ, ସୋରିଷ, ସୁଆଁ, ଯେତେ ଯାହାକରେ ସବୁ, ତା ବଦଳରେ ରାତିରେ ମୁଠିଏ ଭାତ; ପୁଣି ମିତ ଘରେ ମାଂସ ଖାଇବା ମନା । ଆଉ କେଉଁଠି ବିଷମ କଟକରେ, ମୁନିଗୁଡ଼ାରେ ବେପାରି ଅବିକଳ ସେଇଆ କରେ ଡଙ୍ଗ୍ରିଆ କନ୍ଧକୁ । କିଏ ଜମି ବନ୍ଧା ରଖୁଛି କହି ବିକ୍ରି ଲେଖେଇ ନିଏ, ଦସ୍ତଖତ କରେଇ ନିଏ । କିଏ ଭାଗଚାଷୀଠୁ ଭାଗଧାନ ରସିଦ ନେଉଛି କହି ମିଥ୍ୟାରେ ଖାଲି କାଗଜରେ ଟିପ ନେଇ ନେଇ କାଗଜରେ ତମସୁକ ଭର୍ତ୍ତି କରିଦେଇ ମକଦ୍ଦମା ଦାଏର୍ କରେ । କିଏ ଭାଗଚାଷୀକୁ ଜମିରୁ ଜବରଦସ୍ତ ଉଚ୍ଛେଦ କରେ.... ଏଣେ ସଭାରେ ବୋଲାଏ ନେତା । କିଏ ହାତରେ ନ ମାରି ଭାତରେ ମାରେ, ଭାଗ ଦେବାରେ ଠକେ । ଚାଷର ସବୁ ଖର୍ଚ୍ଚ ସୁଧ ସହିତ ତା ଭାଗରୁ ବଡ଼ମାଣରେ ମାପିମାପି କାଟିନେଇ ସାନମାଣରେ ତା' ଭାଗଦିଏ । କିଏ ଭାଗ ପରିବର୍ତ୍ତେ 'ରାଭ' ବା 'ସଞ୍ଜା' ଦିଏ । ପାଞ୍ଚ ମହଣ ପାଚିବା ଜମିକୁ ଦଶ ମହଣ ପାଚେ ବୋଲି ମିଛରେ କହି ପାଞ୍ଚ ମହଣ ପାଇବ ବୋଲି କଥା କରି କାଗଜ ଲେଖାଇ ନିଏ । ଶେଷରେ ତାକୁ ଭସ୍ମ କରେ । କିଏ ମୂଲିଆଠୁ ଓଳିକର କହି କଟିକାଟି ଦିନକର ଶ୍ରମ ଅସୁଲ କରି ତାକୁ ଦିଏ ଚାଳିଶ ତୋଳା ଚାଉଳ ହେଲା ପରି ଧାନ । କିଏ ନାଲି ଆଖି ଦେଖାଇ ଅବା ଗୋଗାଛାବାଡ଼ିଆ କରି ଡରେଇ ହରେଇ ଜବରଦସ୍ତ ପରର ଚାଷ ଜମି ଦଖଲ କରେ । ମଣିଷକୁ ଛେଳି କରେ, ବନ୍ଧୁକ ଧରି ବୁଲେ । କିଏ ଏହିସବୁ ଦୁରାତ୍ମାମାନଙ୍କ ସଂଗେ ସଲା ହୋଇ ତୋଳା ଉଠାଏ, କାଗଜ ବଦଳାଏ, ଦୁଇ ପକ୍ଷରୁ ପଇସା ଖାଏ, ପାଖେ ଅଭୟ ଦେବାପାଇଁ ପାଖେ ଭୟ ଦେବାପାଇଁ ଏବଂ ବଣୁଆ ମାଳ ଭିତରେ ବୁଢ଼ିଆଣୀ ଜାଲପରି ସଡ଼କ ଛକିରେ ଧୋବଲା କୋଠା ଠିଆ ହୁଅନ୍ତି ଜକାଜକି ହୋଇ । ସେଠି ବୁଢ଼ିଆଣୀମାନେ ଧୋବଲୁଗା ପିନ୍ଧନ୍ତି, ଗଣ୍ୟମାନ୍ୟ ବୋଲାନ୍ତି । କିଛି ଦାନ ପୁଣ୍ୟ ବି କରନ୍ତି । କାଦୁଅ ନ ଚକଟିଲେ ଯେପରି ଧାନ ହୁଏନାହିଁ, ସେହିପରି ମନ୍ଥନ ଦୋହନ ଶୋଷଣ ନକଲେ ଫଳରେ ଘାଣ୍ଟି ନହେଲେ ପିଟିହୁଏନାହିଁ ରାତିକା ରାତି କୋଠା । ସେମାନେ ଶୋଷଣକାର ସମାଜ ଗଢ଼ନ୍ତି, ପୁଣି ପରସ୍ପରକୁ ବି ଶୋଷନ୍ତି । ତେଣୁକରି ସେହି ଧୋବଧୋଉଳିଆ ସହରରେ ବେଉସା ଚଳାନ୍ତି । ଠକକୁ ଠକିବାକୁ ଆହୁରି ବଡ଼ ଠକ, ଗୁଣ୍ଡାକୁ ଆୟତ୍ତ କରିବାକୁ ଆହୁରି ବଡ଼ଗୁଣ୍ଡା, ଆଉ ଚୋର, ଡକାୟତ, ବେଶ୍ୟା । ଆଉ ସେଠି ଶୋଷଣକାରୀମାନେ ହିଁ ସହରର ମୁଣ୍ଡିଆଳ ସେମାନଙ୍କ ସୁଦୃଶ୍ୟ ହର୍ମ୍ୟ ସାଂଗକୁ ସୁଦୃଶ୍ୟ ପୋଷାକ, ତାଙ୍କ ପିଲାଏ ଉଚ୍ଚଶିକ୍ଷା ପାଆନ୍ତି ସ୍କୁଲ କଲେଜରେ, ସେମାନେ ଲେଖାପଢ଼ା ଜାଣିବା ଲୋକ । ତେଣୁ ତାଙ୍କ ମତର ଶକ୍ତି ଅଛି, ତାଙ୍କର ଭାଷଣ ଓ ବିବୃତିରେ ଓଜନ ଅଛି । ତାଙ୍କ ମତ କାଏମ୍ କରିବାକୁ ଓ ତାଙ୍କ ପାଇଁ ସୁବିଧା ଅସୁଲ

କରିବାକୁ ତାଙ୍କର ପୋଷା ଗୁଣ୍ଡା ଓ ଦଲାଲ ଥାଆନ୍ତି, ହାନିଲାଭକୁ ଥାଏ ଟଙ୍କା, ଆଇନ୍ ସଂଗେ ଲଢ଼ିବାକୁ ଥାଆନ୍ତି ଓକିଲ । ଅଥଚ ତାଙ୍କର ବାହାର-ଭଡ଼ଙ୍ଗ ପଛଆଡ଼େ ସବୁବେଳେ ଭୟ ଓ ଦୁଶ୍ଚିନ୍ତା । ଗୋଡ଼ରୁ ମୁଣ୍ଡଯାକେ ଅଳଙ୍କାର ଲଦି ହୋଇ ଗୁଣୁପୁରରେ ବ୍ୟବସାୟୀ ସ୍ତ୍ରୀ ପିଲା ରାତିରେ ଘର ଦୁଆର ମୁହଁରେ ପିଣ୍ଡା ଉପରେ ଝାଡ଼ା ବସନ୍ତି । ସେଥିପାଇଁ ରାସ୍ତା କରେକରେ ଦୁଆର ମୁହଁ ପିଣ୍ଡାରେ କରିନିଆ ଯାଇଥାଏ ଗୋଟିଏ ଲେଖାଏଁ ଗୋଲକଣା, ଆବର ପାଇଁ ଅଧାକାନ୍ଥ, ତଳେ ରାସ୍ତା କରର ନର୍ଦ୍ଦମା । ବହୁ ପୁରୁଣା ରୀତି ଏ । ସେହି ପ୍ରକାଣ୍ଡ କୋଠାମାନଙ୍କ ଆଗରେ ଜେଲ୍‌ଖାନାର ଲୁହାବାଡ଼ ପରି ଲୁହାବାଡ଼, ବନ୍ଧଥିଲେ ଦିଶେ ପିଞ୍ଜରା ପରି । (ଶିବଭାଇ. ପୃ-୪୬-୯)

'ପାଇକ କୁମୁଟି ଡଙ୍ଗ୍ରିଆ ସଂଗେ ମଇତ୍ର ବସେ । ଡଙ୍ଗ୍ରିଆ ଭାର ଭାର ଜିନିଷ ତା' ଘରେ ପୂରାଏ; ଏରେ ଡଙ୍ଗ୍ରିଆ ଡଙ୍ଗ୍ରିଆ ବିରୋଧ ଲାଗିଲେ ହଣାକଟା ହୋଇ ଲହୁଲୁହାଣ, ବେକଟା ଛିଣ୍ଡେଇ ନେବା ତା ପକ୍ଷରେ ବଡ଼ କଥା ନୁହେଁ । (ଶିବଭାଇ ପୃ-୧୨୮)

୨. ସାହୁକାର ଓ ଗୋତି

ସାହୁକାର ଓ ରଇତର ଏହି ସଂପର୍କ ଭିତରୁ ଯେଉଁ ଭୂମିହୀନ ଆଦିବାସୀମାନେ ଉଭବ ହୁଅନ୍ତି, ସେମାନଙ୍କ ଭିତରୁ ବେଶ୍ ଥୋକେ ହୁଅନ୍ତି ସାହୁକାରର ଗୋତି । କୋରାପୁଟ୍‌ରେ ଉତ୍ପାଦନର ଇତିହାସ ହେଉଛି ଏହି ଗୋତିମାନଙ୍କ ଶୋଷଣର ଇତିହାସ । ସାହୁକାରର ସମସ୍ତ ମୁନାଫା ହେଉଛି ଏଇ ଗୋତିମାନଙ୍କ ହାଡ଼, ମାଂସ, ସ୍ୱେଦ ଓ ଅଶ୍ରୁ । ବିଲାତର ପୁଞ୍ଜି ସଂପର୍କରେ ମାର୍କ୍ସ ଲେଖିଥିଲେ ଯେ ତାହା ହେଉଛି କ୍ରୀତଦାସମାନଙ୍କର ହାଡ଼, ମାଂସ ଓ ଅଶ୍ରୁ । ଗୋପୀବାବୁଙ୍କ ଭାଷାରେ -

"ଅନ୍ଧାରି ବଣ, ତହିଁକି ବାଟ ନାହିଁ । ଚାରିପାଖରୁ ଧୀରେଧୀରେ ସାହୁକାର ଆସୁଛନ୍ତି । ଧୀରେଧୀରେ ତାଙ୍କର ବେପାର ବଢୁଛି । ତାଙ୍କର ସହର କମୁଛି । ଗାଁ ବସୁଛି, ଦେଶିଆର ଧାନ ଦେଶିଆକୁ କରଜ ଲଗେଇ ସେମାନେ ସୁଧ ଖାଇବେ, ଦେଶିଆ ତାଙ୍କର ଗୋତି ହେବ । ତାର ପୁରୁଣା କ୍ଷେତ ତଷିବ କିନ୍ତୁ ତାଙ୍କର ଚାକର ହୋଇ । ତେଣୁ ଫସଲ ଉପୁଜେଇବା ତାର କାମ, ଫସଲର ମାଲିକ ସାହୁକାର, ଫସଲ ପାଚିବା ଆଗରୁ କିଛିକିଛି ଟଙ୍କା ପକେଇ ଦେଇ ଫସଲ ପାଚିଲେ ସେମାନେ ଦଶଗୁଣ ଶସ୍ତାରେ କିଣି ନେଇଯିବେ । ତାକୁ କହନ୍ତି 'ଗଡ଼ମ', ଫୁ ଆଉ ତାଳି-ଦେଶିଆ ଖତମ । ବଣ ଭିତରେ ଉଡ଼ିଉଡ଼ି ଚାଲିଛି ସାହୁକାରତନ୍ତ୍ରର ଗୁଣ୍ଡୁରି ଜାଲ, ତାହାରି ନାଁ ସଭ୍ୟତା ।

ସେହି ଜାଲରେ କନ୍ଧିଆ ଭାଇ ବି ଧରାପଡ଼େ । ଟିକିଏ ଛଟପଟ ହୁଏ, ତା'ପରେ ତାର କାମ ଶେଷ । ଠକେଇରେ ତ ପଡ଼େ, ପଇସା ସରେ, ଗୋତି ହୋଇ ଆପଣା ଧିଆତି ଉପରେ ଆପଣା ପୁଅ ନାତିଙ୍କ ଧିଆତି ବି ବାନ୍ଧିଦିଏ ଖଟି ମରିବାକୁ, କିନ୍ତୁ ଏତିକିରେ ଯଦି ନିସ୍ତାର ମିଳୁଥାନ୍ତା ।' (ଅ.ସ. ପୃ/ ୬୨-୬୩)

ଗୋତି ବିଷୟରେ ଗୋପୀବାବୁ ଆହୁରି କହିଛନ୍ତି -

ପଇସା ଗଣି ଦେବାକୁ ସାହୁକାର ଅଛି ସତ, ଟଙ୍କା ପକେଇ ଦେଇ ମୁଣ୍ଡ କିଣିନେବ ଛ' ସାତ ବରଷ ପାଇଁ, ତାପରେ ମୁଣ୍ଡ ବିକାକିଣା ଗୋଲାମ । ସେଇ ବିଲ କାମ ହେବ, ସେଇ ଲଙ୍ଗଳ ପାଇଟି ହେବ, ସେଇ ମାଣ୍ଡିଆ ବୁଣା ଅଳସି ବୁଣା ହେବ, କିନ୍ତୁ ଆପଣାର କ୍ଷେତରେ ନୁହେଁ, ପରର କ୍ଷେତରେ, ଆପଣା ପାଇଁ ନୁହେଁ, ପରପାଇଁ । ଯେଉଁଆଡ଼େ ଗଲେ ମାର୍କାମରା ସାହୁକାର ଘର ଗୋଲାମ ଗୋତି । (ପରଜା, ପୃ-୨୮)

'ଆଜି ସେମାନେ ଯିବେ ଗୋତି । ଖରା ନାହିଁ, କାକର ନାହିଁ, ଦେହ ପା'ର ଭଲମନ୍ଦ ନାହିଁ, ପରର ଜୁଆଳି ବେକରେ ପକାଇ ସେମାନେ ବୁଲିବେ, କାହିଁ ପିଠି ଲାଗି ଯାଇଥିବ - ମୁହଁ ଶୁଖାଇ କେବେକେବେ ରାତିକୁ ଆସି ଡାକିବେ 'ବାପା' ! (ପରଜା, ପୃ-୩୦)

'ସାହୁକାରର ଖାତାରେ ଅଣିକିଆ ଟିକିଲି ମରାହୋଇ 'ଗୋଜା' ଅର୍ଥାତ୍ ଦଲିଲ୍ ଲେଖାହେଲା - ଲିଖିତଂ ଇତ୍ୟାଦି ଇତ୍ୟାଦି... । ତଳେ ଲେଖା ହୋଇଥିବା ସାକ୍ଷୀମାନଙ୍କ ଆଗରେ ସାହୁକାର ରାମ ବିଶୋଇ ଶୁକ୍ରୁଜାନି ଓ ଟିକ୍ରାଜାନି ଏମାନଙ୍କୁ ମୋଟେ ଶହେଟଙ୍କା ଉଧାର ଦେଲା । ଦୁହେଁ ଆଜିଦିନ ଠାରୁ ତା'ର 'ଗୋତି' ହେଲେ ଓ ସେମାନେ 'ଗୋତି' ପାଇଟି କରିବାକୁ ବାଧ ରହିଲେ । ପ୍ରତିବର୍ଷ ଜଣକ ପିଛା ପାଞ୍ଚଟଙ୍କା କରି ଶୁଝି ଯାଉଥିବ ଓ ପ୍ରତି ସାଲରେ ସାହୁକାର ଠାରୁ ପ୍ରତି ଗୋତି ଖାଦ୍ୟ ସ୍ୱରୂପ ପାଞ୍ଚପୁଟି ମାଣ୍ଡିଆ ପାଉଥିବେ ଓ ଶୀତଦିନେ ଏକ ଟଙ୍କାର ଖଣ୍ଡେ କମ୍ବଳ ପାଉଥିବେ । ଦରକାର ବେଳେ କର୍ମରେ ଆସିବ । ଇତି - (ପରଜା, ପୃ ୩୫)

'ବାପ ପୁଅ ସକାଳୁ ଯାଆନ୍ତି, ସଞ୍ଜରେ ଫେରନ୍ତି । ଦିନଯାକ ସାହୁକାର ଘରର ପାଇଟି । କାହିଁ କନାପାଇ ଗାଁ, କାହିଁ କୁଟୁଗାଁ, କାହିଁ ପିପଳାପଦର, ଯେଉଁଠିକି ସାହୁକାର ପଠେଇଲା ସେଇଠିକି, ସଞ୍ଜରେ ଫେରନ୍ତି - କାନ୍ଧରେ ଝୁଲା ହୋଇଥାଏ ଫମ୍ପାଫମ୍ପା ଲାଉ ତୁମ୍ବା, ଖଣ୍ଡେ ଲେଖାଏଁ ଟାଙ୍ଗିଆ, ତଲ୍ଲା ଆଉ ତଲ୍ଲି । କାମକରି କରି ହାତ ପାପୁଲି ସିଝି ଯାଇଥାଏ, ଗୋଡ଼ର ପେଣ୍ଡା ଛିଡ଼ି ପଡୁଥାଏ ସତେକି । ପାଟି ଅଠା ଅଠା କରି, ତୁଣ୍ଡ ନାହିଁ ମୁଣ୍ଡନାହିଁ, ଘନ ଜଂଗଲ ଭିତରେ ଥରିଥାରି ଗଡ଼ି ପଡ଼ନ୍ତି । ଜଂଗଲ ସାଇଁସାଇଁ

କରେ, ବନସ୍ତ କନ୍ଦିଏ କନ୍ଦିଏ ଖୁନ୍ଦିହୋଇ ଯାଇଥାଏ ଅନ୍ଧାର, ଡେଉ ଡେଉକା ପାହାଡ଼ ମଝିରେ ଠାସୁକୁ ମାରି ଠଉରା ମଣିଷ ଚଲାବାଟ । xxx ।

ଦିନପରେ ଦିନ ଗଡ଼ିଯାଏ 'ଗୋତି' ପକ୍ଷରେ ସବୁଦିନ ସମାନ । ଆଜି ଯାହା, କାଲିକି ବି ତାହା । କେବଳ ଖଟଣି, ସାହୁକାର ନିକିତି ଧରି ବସି କାମ ଓଜନ କରିନିଏ । ଦିନେ ଡେରିରେ ଆସିଲେ କସିକରି ଗାଳିଦିଏ ଆଉ ଦିଏ ହାଡ଼ଭଂଗା ପରିଶ୍ରମ । (ପରଜା, ପୃ-୪୩)

ଗୋତି ଦିନ ଗଣେ, ସାହୁକାର ଗଣେ ସୁଧ । ଗୋତିର ଦିନ ଗଣା ସରିଯାଏ, ସବୁ ଭୁଲି ଶେଷରେ ସେ ଭାବେ ଖାଲି କାମ ହିଁ ତାର ସାର, କାମ ପାଇଁ ତାର ଜନ୍ମ । ସାହୁକାର ଭୁଲେନାହିଁ, ଋଣର ଶିକୁଳି ବଢ଼ିବଢ଼ି ଚାଲେ । xxx ।

ରାମ ବିଶୋଇ ଅନୁସନ୍ଧାନ କରିଚାଲେ ନୂଆ ଗୋତି, ନୂଆ ଜମି, ତାର ରାଜ୍ୟ ବଢ଼େ, ଛିଣ୍ଡେନାହିଁ । ବାଘ ଶିକାର ଖୋଜିବୁଲେ, ଚିଲ ଚଢ଼େଇ ଖୋଜିବୁଲେ, ମଣିଷ ଖୋଜିଖୋଜି ବୁଲେ ବଣ ଜଂଗଲ ଭିତରେ କନ୍ଦମୂଳ ଆଉ ଶାଗପତର । ସାହୁକାର ରାମ ବିଶୋଇ ଖୋଜେ ମଣିଷ । (ପରଜା, ପୃ / ୪୬-୪୭)

ସେ ଟଙ୍କାକୁ ଗଉଣିରେ ମାପେ, ଧାନକୁ ମାପେ ଶଗଡ଼ରେ, ଏଇ ତାର ଗାଁ ବଢୁଛି, ସଂପତ୍ତି ବଢୁଛି, ନାଁ ବଢୁଛି, ଆଉ ଅଳସୁଆ ମୁଣ୍ଡରେ ବଢ଼ି ଉଠୁଛି ନାନା ପ୍ରକାର ଯୌନ ବିକାର । କେତେ ସ୍ତ୍ରୀ ଲୋକ ସେ ଭୋଗ କରିଛି ତାର ସୁମାରି ନାହିଁ । xxx ନୂଆ ମୁହଁଟି ଦେଖିଲେ ସେ ଚିହିଁକି ଉଠେ; xx ଦେହର ମୁଳରେ ତାର ଯୌବନ ପ୍ରବୃତ୍ତିର ତଉଲ । ବସିବସି ସେ ଖରା ପୁଏଁ ଆଉ ପିଙ୍କା ଟାଣେ, ଆଉ କାମ କରାଳି ଟୋକୀଙ୍କୁ ଅନେଇ ରହେ ପାଣିଆ ପାଣିଆ ଆଖିରେ, ଓଠ ଭିଜିଯାଏ । ରାମ ବିଶୋଇ ହସେନାହିଁ, ଖାଲି ଗାରଡ଼ ପରି ଚାହେଁ, ଖାସୁରୁ ଖାସୁରୁ କରି ଦେହ କୁଣ୍ଡାଇ ହୁଏ, ଏଠୁ ସେଠିକି ସେଠୁ ଏଠିକି ଚାହେଁ । ବସି ବସି ନିଶ ସାଉଁଳେ । (ପରଜା, ପୃ/୬୩)

ଦି ଭାଇଙ୍କର ରହିବା ବଖୁରି ଗୋତିଶାଳରେ । ଛପର ସଢ଼ି ଯାଇଛି । କାନ୍ଥର ଉପରୁ ତଳକୁ ଚୂନ ପାଣି ପରି ବୋହି ଆସିଛି ଧାରଧାର ସାପଘୁଅ, ଓଳି ସନ୍ଧିରେ ଲାଖିଯାଇ ଖଣ୍ଡଖଣ୍ଡ ସାପକାତି ପବନ ଦେଲେ ଚିରାକନା ପରି ଫଡ଼୍‌ଫଡ଼୍ ହୋଇ ପଦାକୁ ଉଡ଼ି ପଳାଏ । ଥରେଥରେ ଉପରୁ ନଥିକରି ମେଞ୍ଚାଏ ଖସେ । ଘର ଭିତରେ କଙ୍କଡ଼ାବିଛା ଛୁଆ ସାଲୁବାଲୁ ହୁଅନ୍ତି । ତଳଟା ଛତୁ ଫୁଟିଲା ପରି ବିରିବିରି । ହୁଙ୍କା ହୋଇଛି ସେଇଠି । (ପରଜା, ପୃ-୨୯)



# ମାର୍କସ୍-ଏଙ୍ଗେଲସ୍, ଲେନିନ୍ ଓ ମାଓଙ୍କ ଦୃଷ୍ଟିରେ କଳା-ସାହିତ୍ୟ

ଆଶୁତୋଷ ପରିଡ଼ା

କଳା ଓ ସାହିତ୍ୟ ମାନବ ସଭ୍ୟତାର ଏକ ଅବିଚ୍ଛନ୍ନ ଅଂଗ ଭାବରେ ନିଜର ଗୁରୁତ୍ୱ ପ୍ରତିପାଦନ କରିଆସିଛନ୍ତି ଓ ଇତିହାସର ପ୍ରବାହ ଭିତରେ ନିଜକୁ ବିକଶିତ କରି ମଣିଷର ଚିନ୍ତାଚେତନାକୁ ପ୍ରଭାବିତ କରିଛନ୍ତି । ମାନବିକ ମୁକ୍ତି ପାଇଁ କଳା-ସାହିତ୍ୟର କ'ଣ ତାତ୍ପର୍ଯ୍ୟ ଓ ପ୍ରାସଂଗିକତା ରହିଛି, ଏହି ପ୍ରଶ୍ନଟି ସବୁବେଳେ ଅନେକ ବିତର୍କ ସୃଷ୍ଟି କରିଛି । ଭାବବାଦୀ, ଯାନ୍ତ୍ରିକ ବସ୍ତୁବାଦୀ ତଥା ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ଦୃଷ୍ଟିକୋଣରୁ କଳା-ସାହିତ୍ୟର ବିଶ୍ଳେଷଣ ଭିନ୍ନଭିନ୍ନ ଭାବରେ କରାଯାଇଛି । ମାର୍କସ୍-ଏଙ୍ଗେଲସ୍, ଲେନିନ୍ ଓ ମାଓ-ସେ-ତୁଙ୍ଗ୍ ଦ୍ୱନ୍ଦ୍ୱାତ୍ମମ ବସ୍ତୁବାଦକୁ ମୁଖ୍ୟତଃ ଅର୍ଥନୀତି ଓ ରାଜନୀତି କ୍ଷେତ୍ରରେ ପ୍ରୟୋଗ କରିଥିଲେ, ଯାହାର ପ୍ରଭାବ ମଣିଷ ସମାଜ ପାଇଁ ସୁଦୂରପ୍ରସାରୀ ହୋଇ ରହିଛି । ଗଭୀର ଅନ୍ତର୍ଦୃଷ୍ଟି ନେଇ ସାମାଜିକ ବିବର୍ତ୍ତନର ଅନୁଶୀଳନ ଓ ବ୍ୟାଖ୍ୟା କରିବା ଭିତରେ ସେମାନେ କଳା-ସାହିତ୍ୟ ସଂପର୍କରେ ମଧ୍ୟ ନିଜର ଦୃଷ୍ଟିଭଂଗୀ ବ୍ୟକ୍ତ କରିଛନ୍ତି । କଳା-ସାହିତ୍ୟକୁ ସେମାନେ କିଭଳି ଭାବରେ ଦେଖିଛନ୍ତି, ତାର ସମ୍ୟକ ଆଲୋଚନା ଏଠାରେ କରାଯାଉଛି ।

**କାର୍ଲ ମାର୍କସ୍ ଓ ଫ୍ରେଡେରିକ୍ ଏଙ୍ଗେଲସ୍ :**

ମାର୍କସ୍ ଓ ଏଙ୍ଗେଲସ୍ ଥିଲେ ବୈଜ୍ଞାନିକ ସାମ୍ୟବାଦର ପ୍ରତିଷ୍ଠାତା । ସେମାନଙ୍କ ପ୍ରବର୍ତ୍ତିତ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ଓ ଐତିହାସିକ ବସ୍ତୁବାଦର ଧାରଣା ମଣିଷସମାଜର ବିବର୍ତ୍ତନକୁ ନୂଆ ଭାବରେ ଦେଖିବା ସହିତ ପୃଥିବୀର ସର୍ବହରା ଶ୍ରେଣୀ ପାଇଁ ମୁକ୍ତିର ପଥ ଉନ୍ମୋଚନ କରିଥିଲା । କଳା-ସାହିତ୍ୟକୁ ସେମାନେ ସାମାଜିକ ଚେତନାର ଏକ ବିଶେଷ ରୂପ ଭାବେ ଗ୍ରହଣ କରିଥିଲେ ଓ ସେ କ୍ଷେତ୍ରରେ ଘଟୁଥିବା ସବୁ ପରିବର୍ତ୍ତନର କାରଣ ଭାବରେ ମଣିଷର ସାମାଜିକ ସ୍ଥିତିକୁ ଚିହ୍ନିତ କରିଥିଲେ । ମଣିଷର ସାମାଜିକ ସ୍ଥିତି ହିଁ ତାର ଚେତନାକୁ ନିର୍ଣ୍ଣୟ କରେ- ଏହା ମାର୍କସ୍‌ବାଦର ଏକ ମୂଳ ଅବଧାରଣା । ତେଣୁ କଳା-ସାହିତ୍ୟର

ଗତିପ୍ରକୃତିକୁ ବୁଝିବାକୁ ହେଲେ, ତାର ଉତ୍ସ ସ୍ୱରୂପ ମଣିଷର ସାମାଜିକ ସ୍ଥିତିକୁ ବୁଝିବାକୁ ହେବ ।

ମାର୍କସ୍ ଓ ଏଙ୍ଗେଲସ୍‌ଙ୍କର ବିଶ୍ୱସାହିତ୍ୟ ସଂପର୍କରେ ଗଭୀର ଅଧ୍ୟୟନ ଥିଲା ଓ ବିଭିନ୍ନ କାଳଜୟୀ ସାହିତ୍ୟକୃତି ଭିତରୁ ମାନବିକ ଚେତନାର ଉତ୍ତରଣକୁ ହୃଦୟଙ୍ଗମ କରିବା ଦିଗରେ ସେମାନେ ସର୍ବଦା ଚେଷ୍ଟିତ ଥିଲେ । ତେଣୁ ନିଜର ବିଭିନ୍ନ ରଚନା ଭିତରେ କଳା-ସାହିତ୍ୟ ପ୍ରତି ସେମାନଙ୍କ ଦୃଷ୍ଟିକୋଣ ପ୍ରକଟିତ ହୋଇଥିଲା, ଯାହାକି ପରବର୍ତ୍ତୀ ସମୟରେ 'ମାର୍କସ୍‌ବାଦୀ ନନ୍ଦନ ତତ୍ତ୍ୱ'ର ବିକାଶ ଓ ପ୍ରୟୋଗ ପାଇଁ ସହାୟକ ହୋଇଥିଲା ।

ସେମାନେ ମଣିଷର ସୌନ୍ଦର୍ଯ୍ୟବୋଧର ଏକ ବସ୍ତୁନିଷ୍ଠ ବ୍ୟାଖ୍ୟା ପ୍ରଦାନ କରି ମଣିଷର ଶ୍ରମ ଭିତରୁ ହିଁ ଏକ ଐତିହାସିକ ପ୍ରକ୍ରିୟାରେ ତାର ସୌନ୍ଦର୍ଯ୍ୟବୋଧର ଉତ୍ପତ୍ତି ହୋଇଛି ବୋଲି ମତପୋଷଣ କରିଥିଲେ । ଏହାର କାରଣ, ମଣିଷର ଶ୍ରମ ଓ ତାର ଅବବୋଧ ଅଂଗାଂଗୀ ଭାବରେ ଜଡ଼ିତ ହୋଇ ବିକଶିତ ହୋଇଥାନ୍ତି । ମାର୍କସ୍ ଓ ଏଙ୍ଗେଲସ୍‌ଙ୍କ ମତରେ କଳା-ସାହିତ୍ୟରେ ଆତ୍ମିକ ଓ ଆଂଗିକ କୌଣସି ସମାଜର ବିକାଶର ସ୍ତର ଉପରେ ନିର୍ଭରଶୀଳ । ତେଣୁ ଗୋଟିଏ ଯୁଗର କଳା-ସାହିତ୍ୟ ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ଯୁଗର କଳା-ସାହିତ୍ୟଠାରୁ ଭିନ୍ନ ହେବାକୁ ବାଧ୍ୟ । ପୁରାତନ ଯୁଗରେ ଯେଉଁ ମହାକାବ୍ୟ ସୃଷ୍ଟି ହୋଇଥିଲା, ପରବର୍ତ୍ତୀ ସମୟର ଯାନ୍ତ୍ରିକ ସଭ୍ୟତା ଭିତରେ ସେପରି ମହାକାବ୍ୟ ଆଉ ସୃଷ୍ଟି ହେବା ସମ୍ଭବ ନୁହେଁ । ଏହି ପରିପ୍ରେକ୍ଷୀରେ ମାର୍କସ୍ ଗ୍ରୀସୀୟ ମହାକାବ୍ୟ ଓ କଳାର ଉଦାହରଣ ଦେଇ ଯାହା କହିଛନ୍ତି ତାହା କଳା-ସାହିତ୍ୟ ପାଇଁ ଖୁବ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ମାର୍କସ୍‌ଙ୍କ ଭାଷାରେ – "ଗ୍ରୀକ୍ କଳା ଓ ମହାକାବ୍ୟ ଯେଉଁ ପ୍ରକାରର ସାମାଜିକ ବିକାଶ ସହିତ ସଂଯୁକ୍ତ ଥିଲା, ତାହା ବୁଝିବା ଆମ ପାଇଁ କଷ୍ଟକର ନୁହେଁ । ବୁଝିବା କଷ୍ଟକର, କିପରି ଏବେ ସୁଦ୍ଧା ସେମାନେ ଆମକୁ ନାନ୍ଦନିକ ଆନନ୍ଦ ଦେଇଥାନ୍ତି ଓ ଆମ ପାଇଁ ଏକ ଅପହଂଚ ଉଚ୍ଚତାରେ ରହିଥାନ୍ତି ।

ଜଣେ ବୟସ୍କ ବ୍ୟକ୍ତି ଆଉ ଥରେ ଶିଶୁ ହୋଇ ପାରିବନି । କିନ୍ତୁ ଶିଶୁର ସରଳତା କ'ଣ ସେଇ ବୟସ୍କକୁ ଆନନ୍ଦ ଦେଇ ନଥାଏ ଓ ସେ ନିଜେ କ'ଣ ଶୈଶବର ସେଇ ନିଷ୍କପଟତାକୁ ଏକ ଉଚ୍ଚର ସୋପାନରେ ପୁନର୍ଜୀବିତ କରିବାକୁ ଚାହିଁ ନଥାଏ ? ପ୍ରତ୍ୟେକ ଯୁଗର ଶିଶୁଟିଏ କ'ଣ ସେହି ଯୁଗର ଚରିତ୍ରରେ ଥିବା ସ୍ୱାଭାବିକ ନିଷ୍କପଟତାର ପ୍ରତିନିଧିତ୍ୱ କରେନାହିଁ ? ତେଣୁ ନିଜର ସୁନ୍ଦରତମ ରୂପରେ ଉଭା ହୋଇଥିବା ମାନବ ଜାତିର ଐତିହାସିକ ଶୈଶବ କ'ଣ ଏକ ଚିରନ୍ତନ ସମ୍ମୋହନ ସୃଷ୍ଟି କରିବ ନାହିଁ ? ରୁକ୍ଷ ପ୍ରକୃତିର

ଶିଶୁ ଅଛନ୍ତି । ଜନ୍ମରୁ ବୁଦ୍ଧିମାନ ଶିଶୁ ବି ଅଛନ୍ତି । ଅନେକ ପୁରାତନ ମାନବ ଗୋଷ୍ଠୀ ଏହି ଶ୍ରେଣୀର ଅନ୍ତର୍ଭୁକ୍ତ । ଗ୍ରୀସୀୟମାନେ ସାଧାରଣ (ନର୍ମାଲ) ଶିଶୁ ଥିଲେ । ସେମାନଙ୍କ କଳା ଆମ ପାଇଁ ଯେଉଁ ସମ୍ମୋହନ ଆଣି ଦେଉଛି, ତାହା ଏହି କଳାକୁ ସୃଷ୍ଟି କରିଥିବା ସମାଜର ଅପରିପକ୍ୱ ଅବସ୍ଥାର ବିରୋଧ କରୁନାହିଁ । ଅନ୍ୟପକ୍ଷରେ ଏହି ସମ୍ମୋହନ ଏପରି ଏକ ଅବସ୍ଥାର ହିଁ ଫଳଶ୍ରୁତି । ଏହା ଏପରି ଏକ ସତ୍ୟ ସହିତ ଅବିଚ୍ଛିନ୍ନ ଭାବେ ଜଡ଼ିତ, ଯେଉଁଥିରୁ ପ୍ରମାଣିତ ହେଉଛି ଯେ କେବଳ ଏକ ଅପରିପକ୍ୱ ସାମାଜିକ ଅବସ୍ଥା ହିଁ ଏହିଭଳି କଳା ସୃଷ୍ଟି କରିପାରେ, ଯାହାର ପୁନରାବୃତ୍ତି ଘଟେ ନାହିଁ ।" (କାର୍ଲ ମାର୍କସ୍, ଏ କଣ୍ଟ୍ରିବ୍ୟୁସନ ଟୁ କ୍ରିଟିକ୍ ଅଫ୍ ପଲିଟିକାଲ ଇକୋନେମି)

ଉକ୍ତ ଉଦାହରଣଟି ଅନେକ ଭାବରେ କଳାସୃଷ୍ଟିର ଆପାତଃ ସ୍ୱାତନ୍ତ୍ର୍ୟକୁ ପ୍ରତିପାଦନ କରେ । ଯଦିଓ କଳା-ସାହିତ୍ୟ ଏକ ଐତିହାସିକ ଧାରାରେ କୌଣସି ସାମାଜିକ ଗଠନ ସହିତ ସଂଯୁକ୍ତ, ଏହାର ଅର୍ଥ ନୁହେଁ, ସେପରି ଗଠନଟି ଲୋପ ପାଇବା ପରେ, ସେଥିରୁ ସଂଭୂତ କଳା ସାହିତ୍ୟର ଗୁରୁତ୍ୱ ହ୍ରାସ ପାଇବ ।

ପୁଂଜିବାଦୀ ସମାଜରେ କଳା-ସାହିତ୍ୟ ସଂପର୍କରେ ମାର୍କସ୍ ଓ ଏଙ୍ଗେଲସ୍‌ଙ୍କ ସ୍ୱାଭାବିକ ମତ ହେଉଛି-ଏପରି ସମାଜରେ ଥିବା ଉତ୍ପାଦନ ସଂପର୍କିତ ମୌଳିକ ବିରୋଧାଭାସ କଳା-ସାହିତ୍ୟକୁ ପ୍ରଭାବିତ କରନ୍ତି । ଏହି ପରିପ୍ରେକ୍ଷୀରେ ମାର୍କସ୍‌ଙ୍କ ଉକ୍ତି ହେଉଛି- "ପୁଂଜିବାଦୀ ଉତ୍ପାଦନ ବ୍ୟବସ୍ଥା କେତେକ ଅପାର୍ଥିବ (ସ୍ପିରିଚୁଆଲ୍) ଉତ୍ପାଦନ ପାଇଁ ପ୍ରତିକୂଳ, ଯାହାର ଉଦାହରଣ କଳା ଓ କବିତା" (କାର୍ଲ ମାକର୍ସ, ଥିଓରି ଅଫ୍ ସରପ୍ଲସ୍ ଭାଲ୍ୟୁ) । ପୁଂଜିବାଦୀ ଶୋଷଣ ନିଶ୍ଚିତ ଭାବେ ଶିଳ୍ପୀ, ସାହିତ୍ୟିକର ମାନବିକ ସ୍ୱପ୍ନ ଓ ଆବେଗ ପ୍ରତି ଅନୁକୂଳ ନୁହେଁ । ଜଣେ ଶିଳ୍ପୀ ବା ସାହିତ୍ୟିକ ଯେତେ ଅଧିକ ସଚେତନ ହେବ, ପୁଂଜିବାଦୀ ବ୍ୟବସ୍ଥାର ନିଷ୍ଠୁର ରୂପ ତାକୁ ସେତିକି ନଗ୍ନ ଭାବରେ ଦୃଶ୍ୟମାନ ହେବ । ମାର୍କସ୍‌ଙ୍କ ଉକ୍ତିର ଅର୍ଥ ନୁହେଁ, ପୁଂଜିବାଦୀ ସମାଜରେ କଳା-ସାହିତ୍ୟ ସୃଷ୍ଟି ହୋଇପାରିବ ନାହିଁ । ସୃଷ୍ଟି ହେବ, କିନ୍ତୁ ତା' ଭିତରେ ବି ପୁଂଜିବାଦର ଅନ୍ତର୍ନିହିତ ବିରୋଧାଭାସ ପ୍ରକଟିତ ହେବ । ଏପରିକି ବୁର୍ଜୁୟା ସାହିତ୍ୟରେ ମଧ୍ୟ ପୁଂଜିବାଦର ସମାଲୋଚନା ବିଭିନ୍ନ ରୂପ ନେଇ ଆତ୍ମପ୍ରକାଶ କରିବ । ମାର୍କସ୍ ଓ ଏଙ୍ଗେଲସ୍ ଏହି ପରିପ୍ରେକ୍ଷୀରେ ସେକ୍‌ସପିୟର, ଗେଟେ, ବାଲ୍‌ଜାକ୍‌ଙ୍କ ଭଳି ମହାନ୍ ଲେଖକଙ୍କ ଉଦାହରଣ ଦେଇଛନ୍ତି । ଏଇ ଲେଖକମାନେ ନିଜ ସମୟ ଓ ଶ୍ରେଣୀ ଅବସ୍ଥାନଠାରୁ ଊର୍ଦ୍ଧ୍ୱକୁ ଉଠି, ନିଜ ନିଜର ସାହିତ୍ୟ ଭିତରେ ପୁଂଜିବାଦୀ ବ୍ୟବସ୍ଥାକୁ ଭର୍ତ୍ସନା କରିବାକୁ ପାଶ୍ଚାଦ୍‌ପଦ ହୋଇନାହାନ୍ତି ।

ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ଦୃଷ୍ଟିକୋଣରୁ ବିଚାର କଲେ ଏକଥା ସ୍ପଷ୍ଟ ହୁଏ ଯେ କଳା ଓ ସାହିତ୍ୟ ସାମାଜିକ ବାସ୍ତବତାକୁ ପ୍ରତିଫଳିତ କରିବା ସହିତ ମଣିଷର ଚେତନାକୁ ତଥା ସମାଜକୁ ମଧ୍ୟ ପ୍ରଭାବିତ କରନ୍ତି । ଏଥିପାଇଁ ମାର୍କସ୍ ଓ ଏଙ୍ଗେଲସ୍ ବିଶ୍ୱ ସାହିତ୍ୟରେ ଆସିଥିବା ବାସ୍ତବବାଦୀ ଧାରାକୁ ସ୍ୱାଗତ କରିଥିଲେ । ବାସ୍ତବବାଦର ସଂଜ୍ଞା ନିରୂପଣ କରିବାକୁ ଯାଇ ଏଙ୍ଗେଲସ୍ କହିଥିଲେ- "ମୋ ଧାରଣାରେ ବାସ୍ତବବାଦ ହେଉଛି ସତ୍ୟ ଉନ୍ମୋଚନ ସହିତ ପ୍ରତୀକୀ (ଟିପିକାଲ) ପୃଷ୍ଠଭୂମିରେ ପ୍ରତୀକୀ ଚରିତ୍ରମାନଙ୍କର ସତ୍ୟନିଷ୍ଠ ଚିତ୍ରଣ ।"

ମାର୍କସ୍ ଓ ଏଙ୍ଗେଲସ୍‌ଙ୍କ ଦୃଷ୍ଟିରେ ସାହିତ୍ୟ କେବଳ ବାସ୍ତବତାର ଅନୁକରଣ ନୁହେଁ, ଏହା ବାସ୍ତବତାର ଅନ୍ତସ୍ଥଳକୁ ଉନ୍ମୋଚନ କରିବାର ଏକ କଳାତ୍ମକ ପ୍ରକ୍ରିୟା, ଯାହା ଭିତରେ କୌଣସି ଯୁଗର ପ୍ରତୀକୀ (ଟିପିକାଲ) ବିଭାବ ସବୁ ରୂପ ଗ୍ରହଣ କରନ୍ତି । ଏହି କାରଣରୁ ସେମାନେ ସେକ୍‌ସପିୟର, ସର୍ଭାଣ୍ଟେସ୍, ଗେଟେ, ପୁଷ୍କିନଙ୍କ ଭଳି ବାସ୍ତବବାଦୀ ସାହିତ୍ୟକାରଙ୍କ କୃତିସବୁକୁ ଉଚ୍ଚ ସ୍ଥାନ ଦେଇଛନ୍ତି । ବ୍ରିଟିଶ୍ ବାସ୍ତବବାଦୀ ଲେଖକ ଡିକେନସ୍, ଥାକେରେ ପ୍ରଭୃତିଙ୍କ ସଂପର୍କରେ ମାର୍କସ୍ କହିଥିଲେ- ସେମାନେ ସାବଲୀଳ ବର୍ଣ୍ଣନାପୂର୍ଣ୍ଣ ନିଜ ଲେଖାର ପୃଷ୍ଠାମାନଙ୍କରେ ଯେତିକି ରାଜନୈତିକ ଓ ସାମାଜିକ ସତ୍ୟ ପୃଥିବୀକୁ ଦେଇଛନ୍ତି, ତାହା ସମସ୍ତ ପେସାଦାର ରାଜନୀତିଜ୍ଞ, ପ୍ରଚାରକ (ପବ୍ଲିସିଷ୍ଟ) ଓ ନୀତିବାଦୀଙ୍କ ସୁଖନିସୃତ ସତ୍ୟଠାରୁ ଅଧିକ ।" (କାର୍ଲ ମାର୍କସ୍, ଦି ଇଂଲିଶ୍ ମିଡଲ୍ କ୍ଲାସ)

ମାର୍କସ୍‌ବାଦୀ ଦର୍ଶନ ଅନୁଯାୟୀ ଯେ କୌଣସି ସମାଜବ୍ୟବସ୍ଥା ଅନେକ ଜଟିଳ ଓ ଗତିଶୀଳ ବିଭାବମାନଙ୍କ ସମାହାର ଏବଂ ସେମାନେ ପରସ୍ପରକୁ ପ୍ରଭାବିତ କରୁଥାନ୍ତି, ଯଦିଓ ଅର୍ଥନୈତିକ ବିଭାବଟି ନିର୍ଣ୍ଣାୟକ ଭୂମିକା ନେଇଥାଏ । ମାର୍କସ୍ ଓ ଏଙ୍ଗେଲସ୍ କଳା-ସାହିତ୍ୟକୁ ଆର୍ଥନୀତିକ ବ୍ୟବସ୍ଥାର ଏକ ଗୌଣ ଉତ୍ପାଦ ଭାବରେ କେବେ ଗ୍ରହଣ କରିନାହାନ୍ତି । ଅନ୍ୟପକ୍ଷରେ, ସେମାନେ କଳା-ସାହିତ୍ୟକୁ ଏକ ବିଶେଷ ସାମାଜିକ ଚେତନା ଭାବରେ ମାନ୍ୟତା ଦେଇଛନ୍ତି ଓ ସମାଜ ଉପରେ ଏହାର ପ୍ରଭାବ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରିଛନ୍ତି ।

**ଭ୍ଲାଡ଼ିମିର୍ ଇଲିଚ୍ ଲେନିନ୍ :**

ଲେନିନ୍ ଥିଲେ ଋଷ୍ ବିପ୍ଳବର ମହାନାୟକ । ମାର୍କସ୍ ଓ ଏଙ୍ଗେଲସ୍‌ଙ୍କ ବୈଜ୍ଞାନିକ ସାମ୍ୟବାଦର ଧାରଣାକୁ ସେ ଆହୁରି ଆଗେଇ ନେଇଥିଲେ ଓ ବାସ୍ତବ କ୍ଷେତ୍ରରେ ତାର

ପ୍ରୟୋଗ କରି ସଫଳ ହୋଇଥିଲେ । ସାମାଜିକ କ୍ଷେତ୍ରରେ ଦ୍ୱନ୍ଦ୍ୱର ପ୍ରାସଂଗିକତାକୁ ସେ ଗଭୀର ଭାବେ ଅନୁଧାନ କରିଥିଲେ ଓ କଳା-ସାହିତ୍ୟ ପ୍ରତି ତାଙ୍କର ଦ୍ୱନ୍ଦ୍ୱାତ୍ମକ ଆଭିମୁଖ୍ୟ ବିଭିନ୍ନ ଭାବରେ ପ୍ରକଟିତ ହୋଇଥିଲା ।

ଲେନିନ୍ ସର୍ବଦା କଳା-ସାହିତ୍ୟକୁ ଜନଗଣଙ୍କ ନିକଟତମ କରାଇବା ସପକ୍ଷରେ ଥିଲେ । ସେ ବିଶ୍ୱାସ କରୁଥିଲେ ଯେ କଳା-ସାହିତ୍ୟ ଜନସାଧାରଣଙ୍କ ସହିତ ଅନ୍ତରଂଗ ଭାବେ ସଂଯୁକ୍ତ ହୋଇପାରିଲେ, ତାହା ଉଚ୍ଚତର ସୋପାନରେ ପହଂଚି ପାରିବ ଓ ସାଧାରଣ ମଣିଷଙ୍କ ନାନ୍ଦନିକ ଉପଲବ୍ଧିକୁ ଉଦ୍‌ବୁଦ୍ଧ କରିପାରିବ । ସେ କ୍ଷୋଭ ପ୍ରକାଶ କରିଥିଲେ ଯେ ଋଷ ଜନସଂଖ୍ୟାର ନବେ ଶତଂଶ ନିରକ୍ଷରତା ଯୋଗୁ ଦେଶର ସାହିତ୍ୟ ସମ୍ଭାରର ସ୍ୱାଦ ଚାଖିବାରୁ ବଂଚିତ ହୋଇଛନ୍ତି । ତେଣୁ ସେ ସମାଜବାଦୀ ନିର୍ମାଣ ସହିତ ଏକ ସାଂସ୍କୃତିକ ବିପ୍ଳବର ପ୍ରସ୍ତାବ ଦେଇଥିଲେ ।

ଋଷ ବିପ୍ଳବ ପୂର୍ବରୁ ୧୯୧୦ ମସିହାରେ ମହାନ୍ ଲେଖକ ଲିଓ ଟଲଷ୍ଟୟଙ୍କ ସଂପର୍କରେ ଲେନିନ୍‌ଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ- "ଯେତେବେଳେ ଜନସାଧାରଣ ଜମିମାଲିକ ଓ ପୁଂଜିପତିଙ୍କ ଶୃଙ୍ଖଳରୁ ମୁକ୍ତ ହୋଇ ନିଜ ପାଇଁ ଏକ ମାନବିକ ଅବସ୍ଥା ଆଣିପାରିବେ, ସେତେବେଳେ ସେମାନେ ଟଲଷ୍ଟୟଙ୍କ ସାହିତ୍ୟକୃତିକୁ ଯଥାର୍ଥ ଭାବେ ଉପଲବ୍ଧି କରିବେ । ସାଂପ୍ରତିକ ବ୍ୟବସ୍ଥା ଦ୍ୱାରା ନିପୀଡ଼ିତ ଅଗଣିତ ଜନଗଣଙ୍କ ମନୋଭାବକୁ ସେ (ଟଲଷ୍ଟୟ) ଅତି ଶକ୍ତିଶାଳୀ ଭାବେ ବ୍ୟକ୍ତ କରିବାରେ ସଫଳ ହୋଇଛନ୍ତି; ସେମାନଙ୍କ ଅବସ୍ଥାକୁ ରୂପାୟିତ କରିବା ସହିତ, ସେମାନଙ୍କ ସ୍ୱତଃସ୍ଫୁର୍ତ୍ତ ପ୍ରତିବାଦ ଓ କ୍ରୋଧକୁ ପ୍ରକଟ କରିଛନ୍ତି । (ଲେନିନ୍, ରଚନାବଳୀ, ଖଣ୍ଡ ୧୬, ପୃ. ୩୨୩)

ମାର୍କସ୍‌ବାଦୀ ନନ୍ଦନତତ୍ତ୍ୱର ପ୍ରତିଷ୍ଠା ଦିଗରେ ଲେନିନ୍‌ଙ୍କ ମୁଖ୍ୟ ଅବଦାନ ହେଉଛି, ପ୍ରତିଫଳନ ତତ୍ତ୍ୱର ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ବିଶ୍ଲେଷଣ । ପ୍ରତିଫଳନର ଧାରଣା ବେଶ୍ ପୁରାତନ ଓ ଗ୍ରୀକ୍ ଦାର୍ଶନିକମାନେ ଏହାକୁ ବ୍ୟବହାର କରି ବିଶ୍ୱବ୍ରହ୍ମାଣ୍ଡକୁ ଜାଣିବାକୁ ଚେଷ୍ଟା କରିଥିଲେ । କିନ୍ତୁ କେବଳ ମାର୍କସୀୟ ଦର୍ଶନ ଏହାକୁ ଏକ ପ୍ରକୃତ ବୈଜ୍ଞାନିକ ରୂପ ଦେଲା ଓ ସମସ୍ତ ପ୍ରକାର ମାନବିକ ଅବଧାରଣାର ମୂଳସୂତ୍ର ଭାବେ ପ୍ରତିଫଳନ ତତ୍ତ୍ୱର ପ୍ରୟୋଗ ହେଲା ।

କଳାର ସୃଷ୍ଟି ପ୍ରକ୍ରିୟାରେ ସର୍ବଦା ଏକ ଅବଧାରଣା କାର୍ଯ୍ୟ କରିଥାଏ । ଲେନିନ୍‌ଙ୍କ ଭାଷାରେ- "ଅବଧାରଣା (କଗ୍ନିସନ୍) ହେଉଛି ବସ୍ତୁ ସହ ଚିନ୍ତାର ଚିରନ୍ତନ ଅସୀମ ନୈକଟ୍ୟ । ମଣିଷର ଚିନ୍ତାରେ ପ୍ରକୃତିର ପ୍ରତିଫଳନକୁ ନିର୍ଜୀବ ଭାବରେ, ଅମୂର୍ତ୍ତ ଭାବରେ, ଗତିହୀନ ବା ଦ୍ୱନ୍ଦ୍ୱହୀନ ଭାବେ ନବୁଝି, ଗତିର ଚିରନ୍ତନ ପ୍ରକ୍ରିୟା ଏବଂ ଦ୍ୱନ୍ଦ୍ୱର ଉତ୍‌ଥାନ

ଓ ସମାଧାନ ରୂପରେ ବୁଝିବା ଆବଶ୍ୟକ ।" (ଲେନିନ୍, ରଚନାବଳୀ ଖଣ୍ଡ ୩୮, ପୃ.:୧୯୫)

କଳା-ସାହିତ୍ୟରେ ବାସ୍ତବତାର ପ୍ରତିଫଳନ ମଧ୍ୟ ଏପରି ଏକ ଦ୍ୱନ୍ଦ୍ୱାତ୍ମକ ରୀତିରେ ସଂଘଟିତ ହୁଏ । ସେଠି ମଣିଷ ପ୍ରତିଫଳନର ଏକ ନିସ୍ପୃହ ମାଧ୍ୟମ ନୁହେଁ । ତାର ସୃଜନଶୀଳତା ସବୁବେଳେ ଗତିଶୀଳ । ବାସ୍ତବତାର କଳାତ୍ମକ ପ୍ରତିଫଳନ ଭିତରେ ବସ୍ତୁଜଗତ ଓ ମାନବିକ ଚେତନା ଏକ ନିର୍ଦ୍ଦିଷ୍ଟ ଆଦାନପ୍ରଦାନ ଦେଇ ଅଭିବ୍ୟକ୍ତ ହୁଅନ୍ତି । ଏହି ପରିପ୍ରେକ୍ଷୀରେ ଲେନିନ୍‌ଙ୍କ ଆଉ ଏକ ମନ୍ତବ୍ୟ ତାତ୍ପର୍ଯ୍ୟପୂର୍ଣ- "ମାନବିକ ଚେତନା କେବଳ ବସ୍ତୁନିଷ୍ଠ ଜଗତ (ଅବ୍‌ଜେକ୍ଟିଭ୍ ୱାର୍ଲଡ଼)କୁ ପ୍ରତିଫଳିତ କରେ ନାହିଁ, ଏହାକୁ ସୃଷ୍ଟି କରେ ମଧ୍ୟ ।" (ଲେନିନ୍, ରଚନାବଳୀ, ଖଣ୍ଡ ୩୮, ପୃ.:୨୧୨)

ମଣିଷର ସୃଜନଶୀଳତାର ମର୍ମ ବୁଝିବା ପାଇଁ ଲେନିନ୍‌ଙ୍କ ଏହି ଉକ୍ତିଟି ଖୁବ୍ ଗୁରୁତ୍ୱପୂର୍ଣ୍ଣ । ନିଜର ସୃଜନଶୀଳତା ଭିତରେ ମଣିଷ ନୂଆ କିଛି ସୃଷ୍ଟି କରେ । ତାହା ହୋଇପାରେ କୌଣସି ସ୍ଥାପତ୍ୟ, ଚିତ୍ର, ଭାସ୍କର୍ଯ୍ୟ ବା ସାହିତ୍ୟକୃତି । ଏମାନେ ପ୍ରତ୍ୟେକ ଏକଏକ ନୂଆ ବସ୍ତୁନିଷ୍ଠ ଜଗତ (ଅବ୍‌ଜେକ୍ଟିଭ ୱାର୍ଲଡ଼), ଯାହା ଏକ ରୂପାନ୍ତରଣ ପ୍ରକ୍ରିୟାରେ ସୃଷ୍ଟି ହୁଏ । ତେଣୁ ଶିଳ୍ପୀ-ସାହିତ୍ୟିକର ଚେତନାରେ ବାସ୍ତବତା କେବଳ ଏକ ନିଛକ ବସ୍ତୁଜଗତ ଭାବରେ ପ୍ରତିଭାତ ହୁଏ ନାହିଁ, ସେଠି ପ୍ରକୃତି ସହିତ, ବାସ୍ତବତା ସହିତ ମଣିଷର ଜଟିଳ ଅନ୍ତଃକ୍ରିୟା (ଇଣ୍ଟରଆକ୍‌ସନ) ଭିତରେ ବାସ୍ତବତା ରୂପାନ୍ତରିତ ହୁଏ, ପୁନର୍ଗଠିତ ହୁଏ ଓ ଏକ କଳାତ୍ମକ ବାସ୍ତବତାର ସର୍ଜନା ହୁଏ ।

ମଣିଷ କାହିଁକି କିଛି ସୃଜନଶୀଳତା ପ୍ରତି ଆକର୍ଷିତ ହୁଏ ତାର କାରଣ ବିଶ୍ଳେଷଣ କରିବାକୁ ଯାଇ ଲେନିନ୍ ମତ ଦେଇଛନ୍ତି ଯେ ମଣିଷ ନିଜ ବ୍ୟକ୍ତିନିଷ୍ଠତା (ସବ୍‌ଜେକ୍ଟିଭ୍) ଭିତରେ ସବୁବେଳେ ଏକ ଅନ୍ୟତମତା (ଅଦରନେସ୍) ବା ବସ୍ତୁନିଷ୍ଠତା (ଅବଜେକ୍ଟିଭ୍)ର ଅପେକ୍ଷା ରଖେ, ଯାହା ହେଉଛି ମଣିଷଠାରୁ ସ୍ୱାଧୀନ ପ୍ରକୃତି । ମଣିଷ ଭିତରେ ଏପରି କିଛି ପ୍ରବଣତା ଅଛି, ଯାହା ତାକୁ ନିଜକୁ ଉପଲବ୍ଧି କରିବାକୁ, ବସ୍ତୁନିଷ୍ଠ ଜଗତ ଭିତରେ ନିଜ ମାଧ୍ୟମରେ ନିଜକୁ ବସ୍ତୁନିଷ୍ଠ କରିବାକୁ ଓ ଏହି ଆତ୍ମ ଉପଲବ୍ଧି ଭିତରେ ପରିପୂର୍ଣ୍ଣ ହେବାକୁ ଆଗେଇ ନିଏ ।

ଲେନିନ୍‌ଙ୍କ ଏହି ତାତ୍ତ୍ୱିକ ବିଶ୍ଳେଷଣ କଳା-ସାହିତ୍ୟ ପାଇଁ ଏକ ବୈପ୍ଳବିକ ମାର୍ଗ ଉନ୍ମୁକ୍ତ କରି ରଖେ । କଳା-ସାହିତ୍ୟ ମାଧ୍ୟମରେ ନିଜକୁ ଓ ସମାଜକୁ ବୁଝିବା ଓ ସେଇ ବୁଝିବା ଭିତରେ ନିଜକୁ ତଥା ସମାଜକୁ ବିବର୍ତ୍ତିତ କରିବାର ପ୍ରେରଣା ମଣିଷ ପାଇଁ ଅବ୍ୟାହତ ରହେ ।

**ମାଓ ସେ-ତୁଙ୍ଗ୍ :**

ଚୀନ ବିପ୍ଳବ ଓ ପରବର୍ତ୍ତୀ ସମୟର ଅପ୍ରତିଦ୍ୱନ୍ଦ୍ୱୀ ନେତା ମାଓ ସେ-ତୁଙ୍ଗ୍ ଯୁବା ବୟସରୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇଥିଲେ ଓ ଅନେକ କବିତା ରଚନା କରିଥିଲେ । ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ଧାରଣାକୁ ସେ ତାଙ୍କ ଗଣସଂଗ୍ରାମରେ ନୂଆ ରୂପରେ ପ୍ରୟୋଗ କରିବା ସହିତ, କଳା-ସାହିତ୍ୟ କ୍ଷେତ୍ରରେ ତାର ପ୍ରୟୋଗ କିପରି ହେବା ଆବଶ୍ୟକ, ତା ଉପରେ ନିଜର ମତବ୍ୟକ୍ତ କରିଛନ୍ତି । ୧୯୪୨ ମସିହା ମେ ମାସରେ ୟେନାନ୍ କଳା ଓ ସାହିତ୍ୟ ମଂଚ (ୟେନାନ୍ ଫୋରମ୍ ଅନ୍ ଆର୍ଟ ଆଣ୍ଡ ଲିଟେରେଚର) ଠାରେ ତାଙ୍କ ପ୍ରଦତ୍ତ ଅଭିଭାଷଣରୁ କଳା-ସାହିତ୍ୟ ପ୍ରତି ତାଙ୍କର ଦୃଷ୍ଟିଭଂଗୀ ଖୁବ୍ ସ୍ୱଷ୍ଟ ଭାବରେ ଜଣାପଡ଼େ ।

ଶିଳ୍ପୀ ଓ ସାହିତ୍ୟିକମାନଙ୍କ ପାଇଁ ମାଓ ତିନୋଟି ମୂଳ ସମସ୍ୟାର କଥା କହିଛନ୍ତି ଯଥା ଦିଗ (ଷ୍ଟାଣ୍ଡ ପଏଣ୍ଟ), ମନୋବୃତ୍ତି (ଆଟିଚ୍ୟୁଡ) ଓ ଦର୍ଶକ / ଗ୍ରହୀତା (ଅଡିୟେନ୍ସ) । ଅର୍ଥାତ୍ କଳା-ସାହିତ୍ୟର ଗତି କେଉଁଆଡ଼କୁ ହେବ, ଶିଳ୍ପୀ ସାହିତ୍ୟିକ ଏଥିପାଇଁ କେଉଁ ମନୋବୃତ୍ତି ବା ଆଭିମୁଖ୍ୟ ଗ୍ରହଣ କରିବ ଓ କେଉଁମାନଙ୍କ ପାଇଁ ମୁଖ୍ୟତଃ କଳା-ସାହିତ୍ୟ ସୃଷ୍ଟି ହେବ । ମାଓଙ୍କ ମତରେ, ଯେହେତୁ ସୃଷ୍ଟି ହେବାକୁ ଥିବା କଳା-ସାହିତ୍ୟର ପୃଷ୍ଠଭୂମି ହେଉଛି ଗଣବିପ୍ଳବ ଓ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମ, କଳା-ସାହିତ୍ୟର ଦିଗ, ଆଭିମୁଖ୍ୟ ଓ ଗ୍ରହୀତା ହେଉଛନ୍ତି ସର୍ବହରା ଓ ବ୍ୟାପକ ଜନସାଧାରଣ । ସେଇମାନଙ୍କ ଶିକ୍ଷା ଓ ଦୀକ୍ଷାକୁ ଆଗରେ ରଖି କଳା-ସାହିତ୍ୟ ନିଜର ଗତି ଓ ପ୍ରକୃତି ସ୍ଥିର କରିବ । ସେମାନେ ହେଉଛନ୍ତି ଚୀନ ଜନସଂଖ୍ୟାର ନବେ ଶତାଂଶ, ମୁଖ୍ୟତଃ ଶ୍ରମିକ, କୃଷକ, ସୈନିକ ଓ ସହରୀ ପେଟି ବୁର୍ଜୁୟା । ନୂତନ କଳା-ସାହିତ୍ୟ କିପରି ଭାବରେ କାର୍ଯ୍ୟକାରୀ ହେବ, ତା' ଉପରେ ମନ୍ତବ୍ୟ ଦେବାକୁ ଯାଇ ମାଓ ଦୁଇଟି ବିଭାବ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ଯଥା: କଳା-ସାହିତ୍ୟକୁ ଲୋକପ୍ରିୟ କରାଇବା ଓ ଉନ୍ନତ କରାଇବା । ଏପରି କରିବା ପାଇଁ, ମାଓଙ୍କ ମତରେ ସାମନ୍ତବାଦୀ ବା ପୁଂଜିବାଦୀ ଶିଳ୍ପସାହିତ୍ୟରୁ ନୁହେଁ, ବୃହତ୍ତର ଜନଗଣଙ୍କ ଠାରୁ ଶିଳ୍ପୀ-ସାହିତ୍ୟିକମାନେ ଅନେକ କିଛି ଶିକ୍ଷା କରିବାର ଆବଶ୍ୟକତା ରହିଛି ।

କଳା-ସାହିତ୍ୟର ଉତ୍ସ ଉପରେ ମାଓଙ୍କ ମନ୍ତବ୍ୟ ବେଶ୍ ପ୍ରାଂଜଳ- "ଯେ କୌଣସି ପ୍ରକାରର କଳା-ସାହିତ୍ୟର ଉତ୍ସ କେଉଁଠି ? ଆଦର୍ଶଗତ ଭାବେ ଗୋଟିଏ କଳା ବା ସାହିତ୍ୟକୃତି ଜାତ ହୁଏ ମଣିଷ ମସ୍ତିଷ୍କରୁ, ଯେଉଁଠି କୌଣସି ସମାଜର ଜୀବନଧାରା ପ୍ରତିଫଳିତ ହୋଇଥାଏ । ବିପ୍ଳବୀ କଳା ଓ ସାହିତ୍ୟ, ବିପ୍ଳବୀ ଶିଳ୍ପୀ ଓ ସାହିତ୍ୟିକଙ୍କର ମସ୍ତିଷ୍କରୁ ସୃଷ୍ଟି ହୋଇ ଜନଗଣଙ୍କ ଜୀବନକୁ ପ୍ରତିଫଳିତ କରନ୍ତି । ଜନସାଧାରଣଙ୍କ ଜୀବନ ହିଁ କଳା-ସାହିତ୍ୟ ପାଇଁ ଉପାଦାନର ଖଣି ସଦୃଶ, ଯେଉଁଠି ବିଭିନ୍ନ ଉପାଦାନ ସେମାନଙ୍କ

ପ୍ରାକୃତିକ ଅବସ୍ଥାରେ, କଂଚା ଅବସ୍ଥାରେ କିନ୍ତୁ ସବୁଠାରୁ ଜୀବନ୍ତ, ବିଭବଶାଳୀ ଓ ମୌଳିକ ଅବସ୍ଥାରେ ବିଦ୍ୟମାନ । ଏହି ଭାବରେ ସେମାନେ ସମସ୍ତ କଳା ଓ ସାହିତ୍ୟକୁ ଆଡୁଆଳ କରି ରଖିପାରନ୍ତି ଓ ସେଥିପାଇଁ ଏକ ଅନନ୍ୟ ଓ ଅସରନ୍ତି ଉତ୍ସ ହୋଇପାରନ୍ତି । ଏହାହିଁ ଏକମାତ୍ର ଉତ୍ସ, କାରଣ ଏହା ବ୍ୟତୀତ ଆଉ କୌଣସି ଉତ୍ସ ଥାଇପାରେନା ।" (ମାଓ ସେ-ତୁଙ୍ଗ୍, ୟେନାନ୍ ଅଭିଭାଷଣ)

ଏହି ପରିପ୍ରେକ୍ଷୀରେ ମାଓ ପୁଣି କହିଛନ୍ତି ପୁରାତନ କାଳର ବା ବିଦେଶର ଶିଳ୍ପ ଓ ସାହିତ୍ୟକକୃତିକୁ ଉତ୍ସ ଭାବରେ ନିଆଯାଇ ପାରିବ ନାହିଁ । ସେମାନେସବୁ ଏକ ପ୍ରବାହ, ଚୀନର ପୁରାତନ ଯୁଗର ବା ବିଦେଶର ଶିଳ୍ପୀ-ସାହିତ୍ୟିକମାନଙ୍କ ଦ୍ୱାରା ସେ କାଳର, ସେସବୁ ସ୍ଥାନର ମଣିଷଙ୍କ ଜୀବନକୁ ଉପାଦାନ ଭାବେ ଗ୍ରହଣ କରି ସୃଷ୍ଟି ହୋଇଛନ୍ତି । ସାଂପ୍ରତିକ ସମୟର ଶିଳ୍ପୀ ସାହିତ୍ୟିକମାନେ ସେସବୁକୁ ଉତ୍ତରାଧିକାର ସୂତ୍ରରେ ଗ୍ରହଣ କରି, ସେଥିରୁ ଯାହା ଜନସାଧାରଣଙ୍କ ହିତରେ ଆସିବ, ତାକୁ ଆତ୍ମସ୍ଥ କରିବେ ଓ ନିଜର ସୃଷ୍ଟି ପାଇଁ ସେଥିରୁ ଶିକ୍ଷା ଲାଭ କରିବେ । ମାଓ ଆହୁରି ମଧ୍ୟ କହିଛନ୍ତି ଯେ ବିପ୍ଳବୀ ଶିଳ୍ପୀ ସାହିତ୍ୟିକମାନେ ଯଦି ଜନଗଣଙ୍କ ଜୀବନର ବୈଚିତ୍ର୍ୟକୁ, ପ୍ରତ୍ୟେକ ଶ୍ରେଣୀର ମଣିଷ ଚରିତ୍ରକୁ ଅନୁଧ୍ୟାନ ଓ ବିଶ୍ଳେଷଣ କରି ନପାରିବେ, ତେବେ ସମସ୍ତ ଶ୍ରମ ସତ୍ତ୍ୱେ ସେମାନେ "ଫମ୍ପା ମସ୍ତିଷ୍କଧାରୀ ଶିଳ୍ପୀ ସାହିତ୍ୟିକ" ହୋଇ ରହିଯିବେ ।

କଳା ଓ ଜୀବନ ଉପରେ ମାଓ ସେ-ତୁଙ୍ଗଙ୍କ ବିଚାର ଲକ୍ଷ୍ୟଣୀୟ- "ଯଦିଓ ମଣିଷର ସାମାଜିକ ଜୀବନ କଳା ଓ ସାହିତ୍ୟର ଏକମାତ୍ର ଉତ୍ସ, ଏହା ଅତୁଳନୀୟ ଭାବରେ କଳା-ସାହିତ୍ୟଠାରୁ ଅଧିକ ପ୍ରାଂଜଳ ଓ ବିଭବଶାଳୀ । ତେବେ ଲୋକମାନେ ପ୍ରଥମଟିରେ (ସାମାଜିକ ଜୀବନ) ସନ୍ତୁଷ୍ଟ ନହୋଇ ଦ୍ୱିତୀୟଟିକୁ (କଳା ସାହିତ୍ୟ) ଚାହାନ୍ତି କାହିଁକି ? କାରଣ ଦୁଇଟିଯାକ ସୁନ୍ଦର ହେଲେ ବି, କଳା-ସାହିତ୍ୟରେ ପ୍ରତିଫଳିତ ଜୀବନ ଏକ ଉଚ୍ଚତର ସୋପାନରେ ଥାଏ; ଅଧିକ ଶକ୍ତିଶାଳୀ, କେନ୍ଦ୍ରୀଭୂତ, ପ୍ରତୀକାତ୍ମକ ଓ ଆଦର୍ଶର ନିକଟତମ ହୋଇ ପ୍ରକୃତ ଦୈନନ୍ଦିନ ଜୀବନଠାରୁ ଅଧିକ ସାର୍ବଜନୀନ ହୋଇପାରେ ଓ ହେବା ଉଚିତ ।" (ତତ୍ରୈବ)

କଳା-ସାହିତ୍ୟକୁ ଲୋକପ୍ରିୟ କରାଇବା ଓ ଉନ୍ନତ କରାଇବା ଭିତରେ ଥିବା ଆପାତ ସମାଧାନ ମଧ୍ୟ ମାଓ କରିଛନ୍ତି ତାଙ୍କ ୟେନାନ୍ ଅଭିଭାଷଣରେ । ବ୍ୟାପକ ଜନଗଣଙ୍କ ମଧ୍ୟରେ ଏପରି ଲୋକ ଅଛନ୍ତି ଯେଉଁମାନେ ମୁକ୍ତି ପାଇଁ ପ୍ରତ୍ୟକ୍ଷ ସଂଗ୍ରାମରେ ଅବତୀର୍ଣ୍ଣ ଓ ସେମାନଙ୍କ ଭିତରୁ ଅନେକଙ୍କ ସାଂସ୍କୃତିକ ଚେତନାର ସ୍ତର ଏତେ ଉନ୍ନତ ନୁହେଁ । ତେଣୁ ସେମାନଙ୍କ ପାଇଁ ଲୋକପ୍ରିୟ କଳାସାହିତ୍ୟ ନିଶ୍ଚୟ ଅଧିକ

ଉପଯୋଗୀ । କିନ୍ତୁ ସାଧାରଣଙ୍କ ଭିତରେ ଯେଉଁ ଅଂଶଟି ଅଧିକ ଶିକ୍ଷିତ, ଅଧିକ ସଂସ୍କୃତି ସଚେତନ, ସେମାନେ ଉନ୍ନତ କଳା-ସାହିତ୍ୟକୁ ଅଧିକ ଆଦର କରିବେ । ଯେତେବେଳେ ତଳେ ଥିବା ଜନଗଣଙ୍କ ସାଂସ୍କୃତିକ ଚେତନାର ସ୍ତର ଉପରକୁ ଉଠିବ, ସେମାନେ ବି ଉନ୍ନତ କଳା-ସାହିତ୍ୟ ଖୋଜିବେ । ତେଣୁ ଲୋକପ୍ରିୟ କରାଇବା ଓ ଉନ୍ନତ କରାଇବା, ଏହି ଦୁଇ ଦିଗକୁ ଭିନ୍ନ କରି ହେବନାହିଁ । ଉଭୟେ ଜନଗଣଙ୍କ ପାଇଁ ଅଭିପ୍ରେତ । ମାଓଙ୍କ ଭାଷାରେ- "ଉନ୍ନତିକରଣ ପବନରେ ଘଟେନାହିଁ ବା ବନ୍ଦ କୋଠରି ଭିତରେ ହୁଏନାହିଁ; ଏହା ଜନସାଧାରଣଙ୍କ ପାଇଁ ଲୋକପ୍ରିୟ କରାଇବା ମାଧ୍ୟମରେ ହୋଇଥାଏ । ଏହା (ଉନ୍ନତିକରଣ) ଲୋକପ୍ରିୟତା ଦ୍ୱାରା ନିର୍ଣ୍ଣିତ ହୋଇଥାଏ ଓ ତାକୁ ଦିଗ୍‌ଦର୍ଶନ ଦିଏ ।" (ତତ୍ରୈବ)

କଳା-ସାହିତ୍ୟ କ୍ଷେତ୍ରରେ ସମାଲୋଚନାକୁ ମାଓ ସେ-ତୁଙ୍ଗ ଗୁରୁତ୍ୱ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ସେ ଦୁଇଟି ମାନଦଣ୍ଡର କଥା ଉଠାଇଛନ୍ତି । ଗୋଟିଏ ହେଉଛି ରାଜନୀତିକ ଓ ଅନ୍ୟଟି ହେଉଛି କଳାତ୍ମକ । ମାଓଙ୍କ ମତରେ ରାଜନୀତି, କଳା-ସାହିତ୍ୟ ସହିତ ସମାନ ନୁହେଁ କିଂବା ଏକ ସାଧାରଣ ବିଶ୍ୱ ଦୃଷ୍ଟିଭଂଗୀ, କଳାସୃଷ୍ଟିର ପ୍ରକ୍ରିୟା ଓ ସମାଲୋଚନା ସହିତ ସମାନ ନୁହେଁ । ତାଙ୍କ ଭାଷାରେ- "ଆମେ ବିଶ୍ୱାସ କରୁ ଯେ କୌଣସି ଅମୂର୍ତ୍ତ ଓ ସଂପୂର୍ଣ୍ଣ ଅପରିବର୍ତ୍ତନୀୟ ରାଜନୀତିକ ମାନଦଣ୍ଡ (କ୍ରାଇଟେରିଅନ୍) ନାହିଁ କିଂବା ସେହିପରି ଅମୂର୍ତ୍ତ ଓ ସଂପୂର୍ଣ୍ଣ ଅପରିବର୍ତ୍ତନୀୟ କଳାତ୍ମକ ମାନଦଣ୍ଡ ବି ନାହିଁ । କାରଣ, ଶ୍ରେଣୀବିଭକ୍ତ ସମାଜରେ ସବୁ ଶ୍ରେଣୀମାନେ ରାଜନୀତିକ ମାନଦଣ୍ଡକୁ ଅଗ୍ରାଧିକାର ଦିଅନ୍ତି । କଳାତ୍ମକ ମାନଦଣ୍ଡ ଦ୍ୱିତୀୟରେ ଆସେ ।" (ତତ୍ରୈବ)

ମାଓ ସେ-ତୁଙ୍ଗଙ୍କ ମତରେ କୌଣସି କଳା-ସାହିତ୍ୟ ପ୍ରଗତିଶୀଳ କି ନୁହେଁ, ତାହା କେବଳ ଜନଗଣଙ୍କ ପ୍ରତି ତାହାର ଦୃଷ୍ଟିକୋଣ ଭିତ୍ତିରେ ତଥା ଇତିହାସ ଭିତ୍ତିରେ ବିଚାର କରାଯାଇପାରେ । କିଛି କଳା ବା ସାହିତ୍ୟକୃତି ରାଜନୀତି ଦୃଷ୍ଟିରୁ ପ୍ରତିକ୍ରିୟାଶୀଳ ହୋଇପାରେ କିନ୍ତୁ କଳାତ୍ମକତା ଦୃଷ୍ଟିରୁ ଉତ୍ତମ ହୋଇପାରେ । ଏପରି କୃତି ଯେତେ ଅଧିକ କଳାତ୍ମକ ହେବ, ମାଓଙ୍କ ମତରେ, ଜନସାଧାରଣଙ୍କ ପାଇଁ ତାହା ସେତେ ବେଶି ମାରାତ୍ମକ । ମାଓଙ୍କ ଭାଷାରେ- "ପ୍ରତିକ୍ରିୟାଶୀଳ ରାଜନୀତିକ ବିଷୟବସ୍ତୁ ଓ କଳାତ୍ମକ ଆଂଗିକ ଭିତରେ ଥିବା ବିରୋଧ, ଏକ ପତନଶୀଳ ଶୋଷକ ଶ୍ରେଣୀର କଳା-ସାହିତ୍ୟ କ୍ଷେତ୍ରରେ ସ୍ୱାଭାବିକ । ଆମେ କିନ୍ତୁ ରାଜନୀତି ସହିତ କଳାର, ଆତ୍ମିକ ସହିତ ଆଂଗିକର ଓ ଏକ ବିପ୍ଳବୀ ରାଜନୀତିକ ଆତ୍ମିକ ସହିତ ସର୍ବୋତ୍କୃଷ୍ଟ କଳାତ୍ମକ ଆଂଗିକର ସମନ୍ୱୟ ଚାହୁଁ । ରାଜନୀତିକ ଭାବେ ଯେତେ ପ୍ରଗତିଶୀଳ ହେଲେ ବି, କଳାକୃତି ଭିତରେ ଯଦି

କଳାତ୍ମକ ଗୁଣ ନରହେ, ତେବେ ତାହା ଶକ୍ତିହୀନ ।" (ତତ୍ରୈବ) । ମାଓ ସେ-ତୁଙ୍ଗ୍ ତେଣୁ 'ପୋଷ୍ଟର ଓ ସ୍ଲୋଗାନ୍ ଷ୍ଟାଇଲ୍' କଳା-ସାହିତ୍ୟକୁ ପ୍ରତ୍ୟାଖ୍ୟାନ କରିଛନ୍ତି, କାରଣ ସେଥିରେ ଜନସାଧାରଣଙ୍କୁ ଉଦ୍‌ବୁଦ୍ଧ କରିବା ପାଇଁ କଳାତ୍ମକ ଶକ୍ତି ନଥାଏ । ସାହିତ୍ୟିକ ଓ ସଂସ୍କୃତିକର୍ମୀମାନଂକୁ 'ଫ୍ରମ୍ ଦ' ପିପୁଲ୍-ଟୁ ଦ' ପିପୁଲ୍'ର ବାର୍ତ୍ତା ଦେଇ ମାଓ ସେ-ତୁଙ୍ଗ ସେମାନେ ଜନସାଧାରଣଙ୍କୁ ନିଜର ଶିକ୍ଷକ ରୂପେ ଗ୍ରହଣ କରି ଜନସାଧାରଣଙ୍କର ଅଧିକ ନିକଟବର୍ତ୍ତୀ ହେବା ପାଇଁ ଆହ୍ୱାନ କରି ଯାଇଛନ୍ତି ।

*(ନିସାନ୍, ଜାନୁୟାରୀ-ମାର୍ଚ୍ଚ ୨୦୦୭ରେ ପ୍ରକାଶିତ)*



# ଉତ୍ତରଦାୟିତ୍ୱବୋଧ

**ଦେବରଞ୍ଜନ**

ଜୀବନ ଓ ସଂଘର୍ଷ ! ଏହା ଏମିତି ଭାବରେ ଜଡ଼ିତ ଯେମିତି ଦେହ ସହିତ ମନ । ସମସ୍ତଙ୍କ ଭଳି ମୁଁ ମଧ୍ୟ ସର୍ବଦା ମୋ ସହିତ, ପରିବାର ସହିତ, ଗୋଷ୍ଠୀ ଓ ସମାଜ ସହିତ ତଥା ଦେଶ ସହିତ ସଂଘର୍ଷ କରିଆସୁଛି । ଏଥିରୁ ଏତିକି ଜାଣିଲି ଜୀବନ ବଞ୍ଚିବାକୁ ହେଲେ ସଂଘର୍ଷ ଏକ ସ୍ୱାଭାବିକ ପରିଣାମ । କିନ୍ତୁ ଏହାକୁ ପାଥେୟ କରି ଯେ ଦିନେ ଲେଖିବାକୁ ହେବ ଅର୍ଥାତ୍ ସେହି ଲେଖାର ଯେ ଏକ ଆରମ୍ଭ ଓ ଶେଷ ରହିବ, ଏକଥା ମୁଁ କେବେ ଭାବିନଥିଲି ।

ମୋଟାମୋଟି କହିବାକୁ ଗଲେ ଜୀବନକୁ ଏକ ତୀର୍ଥଯାତ୍ରୀ ବା ଟୁରିଷ୍ଟ ଭାବରେ ଦେଖିବା ପାଇଁ ମୁଁ ଚିନ୍ତା କରିନାହିଁ । ଟୁରିଷ୍ଟଟିଏ ପୁରୀର ବେଳାଭୂମିର ମଜା ନେଲାବେଳେ କିନ୍ତୁ କେବେ ସେହି ଛୋଟଛୋଟ ଚାଳିଆ ବସ୍ତିରେ ରହୁଥିବା ଶହଶହ ମତ୍ସ୍ୟଜୀବୀଙ୍କ ଅନିଶ୍ଚିତତା ଓ ସର୍ବଦା ଭୋଟ ଆସିଲେ ଯେ ଲୋକମାନେ କାହିଁକି ନେତାଙ୍କ ବୃଥା ଆଶ୍ୱାସନାରେ ଭାସିଯାନ୍ତି ସେକଥା ଭାବିବାକୁ ଚେଷ୍ଟା କରିବ ନାହିଁ । ନୀଳାମ୍ବୁ ଚିଲିକାର ମଜା ନେଲାବେଳେ ଭୁବନେଶ୍ୱରର ନେତା ଓ ଚିଙ୍ଗୁଡ଼ି ମାଫିଆଙ୍କ ଇଂଗିତରେ ଫୁଟୁଥିବା ବୋମା ଦ୍ୱାରା ଜଳିପୋଡ଼ି ପାଉଁଶ ହୋଇ ଯାଉଥିବା ଚିଲିକାର ମତ୍ସ୍ୟଜୀବୀଙ୍କ ଗାଆଁ ଆଡ଼କୁ ନଜର ନଯିବା ସ୍ୱାଭାବିକ । କିନ୍ତୁ ଟିକେ ଗହୀର କରି ଦେଖିଲେ ଏସବୁ ଜଳଜଳ ଦେଖାଯାଏ । କାରଣ ସେହି ଶୋଷଣ ଓ ବିଷମତା ସେଠାରେ ଅଛି । ମୋ ଚାରିପଟର ଏସବୁ ଘଟଣା ମୋତେ ବହୁତ ପ୍ରଭାବିତ କରୁଛି ।

ଆଜି ଯେତେବେଳେ ମୋର ଦଳିତ ବନ୍ଧୁଜଣକ କହୁଛନ୍ତି ଯେ ବ୍ରାହ୍ମଣମାନେ ଅଧିକାଂଶ ଘରର ମାଲିକ ଓ ବନ୍ଧୁଙ୍କର ସରକାରୀ ଚାକିରି ଥାଇ ମଧ୍ୟ ଘରଭଡ଼ାଟେ ମିଳୁନାହିଁ, ସେତେବେଳେ ମୁଁ ଅନୁଭବ କରୁଛି ଯେ ମୋର ଜନ୍ମ ବ୍ରାହ୍ମଣ ପରିବାରରେ ହୋଇଥିବା ହେତୁ ମୋର ବାପାଙ୍କ ଏପରି ସରକାରୀ ଚାକିରିରେ ବାରମ୍ବାର ବଦଳି ସତ୍ତ୍ୱେ ଆମେମାନେ ସେଭଳି ଦୁର୍ଦ୍ଦଶା ଅନୁଭବ କରିନାହୁଁ । ମୁଁ ଭାବେ, କେତେ ସୁବିଧାରେ ଆମର ପିଲାବେଳଟା ଚାଲିଗଲା । ମୋ ପାଇଁ ଜାତିଗତ ପ୍ରତିକ୍ରିୟା ଏକ ମାନବୀୟ ଆଧାରରେ

ନିଷେ ରହିଛି । ମାତ୍ର ଏହା ଉଚ୍ଚ ଜାତି ପ୍ରତି କୌଣସି ଘୃଣା ଓ ବିଦ୍ୱେଷ ତିଆରି କଲାନାହିଁ । ପିଲାବେଳେ ମୋର କାମଥିଲା ମୋର ଜେଜେବାପା (ବାପାଙ୍କ ବାପା) ଖାଇବସିଲାବେଳେ ଦୁଆରମୁହଁରେ ଜଗିବା ଯେମିତି କେହି ଶୂଦ୍ରଲୋକ ଯେମିତିକ ଚଷା, ବାରିକ, ତେଲି ଓ ଗଉଡ଼ ଘର ଭିତରକୁ ପଶିବେ ନାହିଁ । ନହେଲେ ସେ ଖାଇବାରୁ ଉଠିଯାଉଥିଲେ । ଦେଖିବାକୁ ଗଲେ ଆମର ଗାଁରେ ଶୂଦ୍ର ଓ ବ୍ରାହ୍ମଣ ଲୋକେ ମିଶିକରି ଅଛନ୍ତି ଠିକ୍ ପଡ଼ିଶା ଘରପରି । ଅଥଚ ମୋ ଜେଜେଙ୍କ ଜାତିଗତ ବାଛବିଚାର ଆସିବା କେବଳ ନିଜର ଅହଂକାର ବ୍ୟତୀତ ଆଉ କିଛି ନୁହେଁ ।

କ୍ରମଶଃ ମୋ ନିଜକୁ ଏହି ଘୃଣ୍ୟ ପ୍ରଥା ଭିତରୁ ବାହାର କଲାବେଳେ ସ୍ୱାଭାବିକ ଭାବରେ ମୋର ମା' ସହିତ ପ୍ରତିଦିନ ସଂଘର୍ଷ ହେଉଛି । ଘରର ସୀମା ମଧ୍ୟରେ ଥିଲାବେଳେ ସେ ମୋତେ ଯେମିତି ଜିତି ଯାଉଛି । ତା'ର ବାର୍ଦ୍ଧକ୍ୟ ଓ ବାପାଙ୍କ ଅନୁପସ୍ଥିତି ହେତୁ ଆଉ ଅଧିକ ଯୁକ୍ତି କରିନପାରି ମୁଁ ବାଧ ହୋଇ ବେଳେବେଳେ ସାଲିସ କରିଦେଉଛି । ସେଥିପାଇଁ ମୁଁ ଦଳିତ ବନ୍ଧୁଙ୍କ ନିକଟରେ ବହୁତ ଲଜ୍ଜିତ ମଧ୍ୟ ମନେକରୁଛି । ଘରର ସୀମା ଡେଇଁଲେ ପୁଣି ମୋ ନିଜକୁ ମୁଁ ସ୍ୱାଧୀନ ମନେକରୁଛି । ମୁଁ ଜାଣିଜାଣି ମୋର ମା' ଓ ବାପାଙ୍କ ସମ୍ବନ୍ଧ ଗୁଡ଼ିକ ଠାରୁ ମୋ ନିଜକୁ ଦୂରେଇ ନେଇଛି । ସେଠାକୁ ଗଲେ ମୁଁ ଭୀଷଣ ଅଶ୍ୱସ୍ତି ଅନୁଭବ କରେ । ଏଇ ମୋ ଜୀବନ ଓ ସଂଘର୍ଷର ଏକ ସମାଧାନ ।

ସେହି ଦଳିତ ବନ୍ଧୁଜଣେ ଯେତେବେଳେ ଏକ ପ୍ରତିକ୍ରିୟାଶୀଳ ରାଜନୀତିର ଭାବନା ରଖେ ଓ ଉଚ୍ଚ ଜାତିର ପ୍ରତ୍ୟେକ ମଣିଷକୁ ଘୃଣାକରେ, ସେତେବେଳେ ମୋତେ ଲାଗେ ମୁଁ ଯଦି ଦଳିତ ହୋଇଥାନ୍ତି ତାହାହେଲେ ସ୍ୱାଭାବିକ ମୁଁ ମଧ୍ୟ କ୍ଷଣକ ପାଇଁ ସେହି ରାଜନୀତି ଆଡ଼କୁ ଢଳିଥାନ୍ତି । ଜଣେ ଦଳିତ ଯୁବକର ଶିକ୍ଷାଗତ ଯୋଗ୍ୟତା ଥାଇ ମଧ୍ୟ ସମାଜରେ ସମ୍ମାନ ସମ୍ମାନ ନମିଳିବା କଷ୍ଟଦାୟକ ଅଟେ । ସେଥିପାଇଁ ବ୍ରାହ୍ମଣ ଜାତିକୁ ଘୃଣା କରି ଦଳିତ ବନ୍ଧୁ ନିଜର ଜାତିର ଆଧାରରେ ଅନ୍ୟମାନଙ୍କୁ ଏକାଠି କରିବାର ବହୁ ଉଦାହରଣ ମୁଁ ଦେଖେ । କିନ୍ତୁ ଅନ୍ୟ ଜଣେ ଦଳିତ ବନ୍ଧୁ ଯେତେବେଳେ ପ୍ରତିକ୍ରିୟାଶୀଳ ରାଜନୀତିଠାରୁ ବରଂ ଦୂରେଇଯାଇ ଆଜିର ପୁଞ୍ଜିବାଦୀ ରାଷ୍ଟ୍ରର ଧନୀ-ଗରିବ, ଶୋଷକ-ଶୋଷିତ, ଶାସକ-ପ୍ରଜାର ସମ୍ବନ୍ଧ ଭିତରେ ନିଜର ରାଜନୀତିକୁ ଦେଖନ୍ତି ମୋତେ ତାହା ଖୁସିଦିଏ । କାରଣ ସେହି ବନ୍ଧୁଙ୍କ ପାଖରୁ ମୁଁ ଶିଖେ ପ୍ରତିକ୍ରିୟାଶୀଳ ରାଜନୀତିର ଭବିଷ୍ୟତ ଆଉ ଏକ ପ୍ରତିକ୍ରିୟାତ୍ମକ ସମ୍ବନ୍ଧ ଆଣିଥାଏ । ମୋ ନିଜକୁ ବହୁବାର ଜଣେ ଶିକ୍ଷିତ ଦଳିତ ଯୁବକର ସ୍ଥାନରେ ରଖି ଏକଥାକୁ ବାରମ୍ବାର ମୋ ନିଜକୁ ପଚାରିଛି । ହୁଏତ ମୁଁ ମଧ୍ୟ

ପ୍ରତିକ୍ରିୟାତ୍ମକ ରାଜନୀତି ଭିତରକୁ ଯାଇଥାନ୍ତି । ମାତ୍ର ତାହା କେବଳ ମୋତେ ମୋର ବ୍ୟକ୍ତିଗତ ମହତ୍ ଆକାଂକ୍ଷାକୁ ପୂରଣ କରିବା ଦିଗରେ ସାହାଯ୍ୟ କରିଥାନ୍ତା । ତାହାହିଁ ବର୍ତ୍ତମାନ ହେଉଛି । ତାହା କଦାପି ଆଜିର ସମୟରେ ସମଗ୍ର ଦଳିତ ସମାଜକୁ ସାମାଜିକ ଆଧାରରେ ନ୍ୟାୟ ଦେଇପାରିନାହିଁ । ସେହି ଦଳିତବର୍ଗ ଭିତରୁ ହୁଏତ କିଛିଲୋକ ସମାଜରେ ବଡ଼ ହୋଇଯାଇଛନ୍ତି । ମାତ୍ର କଦାପି ଦଳିତ ବର୍ଗର ସ୍ୱାଭିମାନକୁ ବଢ଼ାଇ ପାରିନାହାଁନ୍ତି । ଏପରିକି ସମ୍ବିଧାନରେ ବ୍ୟବସ୍ଥା ଥାଇ ମଧ୍ୟ ଓ ବିଭିନ୍ନ ଦଳିତ ଯୁବକ ଆଜିର ଉଚ୍ଚ ପୁଲିସ୍, ପ୍ରଶାସନ ଓ ରାଜନେତା ପଦବିରେ ଥାଇ ମଧ୍ୟ ଅତ୍ୟାଚାର ବିଷୟରେ ନ୍ୟାୟଗତ ବିଚାର ଦଳିତ ପରିବାରଟିକୁ ମିଳିପାରିନାହିଁ ।

ଅବଦୁଲ କାଲାମ ବିଜେପିର ସମର୍ଥନରେ ରାଷ୍ଟ୍ରପତି ହେଲେ ତ କନ୍ଧମାଳରେ ସଂଖ୍ୟାଲଘୁ ଉପରେ ଆକ୍ରମଣ ବିଜେପି (ବିଜେଡି ସହିତ)ର ଶାସନ ସମୟରେ ହେବାର ନଥିଲା । ଅଥବା କେ. ଆର. ନାରାୟଣନ୍ ଓ ପ୍ରତିଭା ସିଂ ପାଟିଲ୍ କଂଗ୍ରେସ ସମର୍ଥନରେ ରାଷ୍ଟ୍ରପତି ହେଲାପରେ ହୁଏତ ଖଇରଲାଂଜିରେ ଦଳିତଙ୍କୁ ଜାଳି ଦିଆଯାଇ ନଥାନ୍ତା, (ନାରାୟଣନ୍ ନିଜେ ଜଣେ ଦଳିତ ଥିଲେ) କି ପ୍ରତିଦିନ ପ୍ରତିଘଣ୍ଟାରେ ଏ ଦେଶରେ ଶତସହସ୍ର ଅଞ୍ଜନା ମିଶ୍ରମାନେ ସଦାସର୍ବଦା ଲାଞ୍ଛିତ, ଅତ୍ୟାଚାରିତ, ଧର୍ଷିତା ହେଉନଥାନ୍ତେ । ରାଷ୍ଟ୍ରର କ୍ଷମତା ଏମିତି ଏକ ଜଟିଳ ସମ୍ବନ୍ଧ, ଯାହା ନିଜେ ତିଷ୍ଠି ରହିବା ପାଇଁ ସମାଜର ସମସ୍ତ ବିଷମତା ସହିତ ସାଲିସ କରି ନିଜ ସପକ୍ଷରେ ବ୍ୟବହାର କରିବା ପାଇଁ ଉଦ୍ୟମ କରିଥାଏ, ଯାହାକୁ ଓବାମା-ରାଜନୀତି ମଧ୍ୟ କହିପାରିବା । ସେ ପାଇଁ ଗୁଜୁରାଟର ଦଂଗାରୁ ସଂଘ ପରିବାର ନିଜର ସମ୍ମାନ ବଞ୍ଚାଇବା ପାଇଁ କଲାମ ଗୋଟି ଚଳାଇଲା ଓ ସଂସଦରେ ମହିଳା ସଂରକ୍ଷଣ ବିଲ୍ ପାସ୍ କରିବାରେ ଅସମର୍ଥତା ହେତୁ ସୋନିଆ ଗାନ୍ଧି ନିଜର ସମ୍ମାନ ରଖିବା ପାଇଁ ରାଷ୍ଟ୍ରପତି ପଦରେ ମହିଳାଙ୍କୁ ଅବସ୍ଥାପିତ କରିବାର ନିଷ୍ପତ୍ତି ନେଲେ । ଏହାଦ୍ୱାରା ନା ବାକି ଦଳିତ ନା ସଂଖ୍ୟାଲଘୁ ନା ମହିଳାଙ୍କ କିଛି ଲାଭ ହେଲା । ସେହିପରି ଓଡ଼ିଶାରେ ଦଳିତଙ୍କର ସ୍ୱର ଅତି କ୍ଷୀଣ ଥିଲାବେଳେ ମୋହନ ଜେନାଙ୍କ ନେତୃତ୍ୱରେ କିଛି ସ୍ୱର ଉଠୁଥିଲା । ବଡ଼ ଚାଲାକିରେ ବିଜେଡି ବିଜେପି ଦଳ ତାଙ୍କୁ ସାଂସଦ ଟିକେଟ ଦେଇ ସେହି ସ୍ୱରକୁ ମଧ୍ୟ ବାଦ କରିଦେଲେ । ଏଥିରେ ମୋହନ ଜେନାଙ୍କ ମହତ୍ତ୍ୱ ଆକାଂକ୍ଷା କେବଳ ପୂରଣ ହେଲା ଓ ଅନ୍ୟ କିଛି ଯୁବକ କ୍ଷମତାର ଚାରିପାଖେ ଲସର ପସର ହେଲେ କାଳେ ହାତୀ ସୁନାକଳସୀ ତାଙ୍କ ଉପରେ ଢାଳିବ । ହେଲେ ଓବାମାଙ୍କ ପରେ ଏବେ ଆହୁରି କେତେ ବର୍ଷ ଲାଗିଯିବ ପୁଣି ଏକ କଳାଲୋକକୁ ଆମେରିକାର

ରାଷ୍ଟ୍ରପତି ହେବାପାଇଁ । କିନ୍ତୁ କ୍ଷମତାର ଲାଳସା ସହଜରେ ଯାଏନାହିଁ କି ଯିବନାହିଁ ମଧ୍ୟ ।

ଏହି ମହତ୍ତ୍ୱ ଆକାଂକ୍ଷା ହେତୁ ଦଳିତ ନେତୃବର୍ଗର ଅଧିକାଂଶ ଭାରତର ଆର୍ଥିକ ସଂସ୍କାରକୁ ବିରୋଧ କରିପାରୁନାହାନ୍ତି, ଯଦିଓ ସେମାନେ ଜାଣନ୍ତି ଯେ ଆଜିର ପୁଞ୍ଜିବାଦୀ ବ୍ୟବସ୍ଥା ନବ ବ୍ରାହ୍ମଣବାଦ ସୃଷ୍ଟି କରିବା ସହିତ ଏକ ନୂଆ ଦଳିତ ଶ୍ରେଣୀ ମଧ୍ୟ ତିଆରି କରୁଛି । ବିସ୍ଥାପିତ ଆଦିବାସୀ ଦଳିତ ଚାଷୀ, ବସ୍ତିର ଦିନ ମଜୁରିଆ, ଋଣ ଶୁଝି ପାରୁନଥିବା ଓ ଆତ୍ମହତ୍ୟା କରୁଥିବା ଚାଷୀ, ଖଣିର ଠିକା ଶ୍ରମିକ, ଛୋଟଛୋଟ ଦୋଷପାଇଁ ଜାମିନ ନପାଇ ଅନିର୍ଦ୍ଦିଷ୍ଟ କାଳ ପାଇଁ ଜେଲରେ କଏଦୀ ଜୀବନ ବିତାଉଥିବା ଗରିବ ମଣିଷ ଓ ଅଜଣା ପୁରୁଷର ଯୌନ କ୍ଷୁଧା ମେଣ୍ଟାଇ ନିଜର ଜୀବିକା ଖୋଜୁଥିବା ଓ ନିଜର ନ୍ୟାୟର ସିଂହଭାଗ ପୁଲିସ୍ ତଥା ଦଲାଲକୁ ବାଣ୍ଟୁଥିବା ମହିଳାମାନେ ତ ଏହି ନୂଆ ଦଳିତ ଶ୍ରେଣୀର ଅଟନ୍ତି । ଆର୍ଥିକ ସଂସ୍କାରର ବୋଝ ଏହିମାନେ ହିଁ ତ ମୁଣ୍ଡାଉଛନ୍ତି । ଯଦି ସେମାନେ କେଉଁଠି ପ୍ରତିବାଦ କରୁଛନ୍ତି ତେବେ ଯାଇ କଥା ବଜାରକୁ ଆସୁଛି । ନଚେତ୍ ତାହା ଯେମିତି ସ୍ୱାଭାବିକ ବୋଲି ଧରିନିଆଯାଉଛି । ମୋ ନିଜକୁ ବହୁବାର ଜଣେ ଦଳିତର ସ୍ଥାନରେ ରଖି ଚିନ୍ତାକରିଛି ଓ ଜାଣିଛି ଯେ ଏହି ନୂଆ ଦଳିତ ସାଥିଙ୍କ ସହିତ ମୋ ନିଜକୁ ମିଶାଇ ମୁଁ ସ୍ୱପ୍ନ ଦେଖିପାରିବି ।

ଆମେ ଏକ ସଂପୂର୍ଣ୍ଣ ବିଭାଜିତ ସମାଜ ମଧ୍ୟରେ ବଞ୍ଚୁ ଓ ଆମର ଶ୍ରେଣୀ ତଥା ବିଚାର ଅନୁସାରେ ଆମେ ସମାଜର ସେହି ନିର୍ଦ୍ଦିଷ୍ଟ ବର୍ଗ ସହିତ ଆପେଆପେ ଜଡ଼ିତ ହୋଇଯାଉ । ଆମେ ଜାଣତରେ ହେଉ ଅଥବା ଅଜାଣତରେ, ନିଜର ଆଗ୍ରହ ଓ ନିଜର ସ୍ୱାର୍ଥ ଅନୁସାରେ ସାଥି ତିଆରି କରିଥାଉ । ଏକଥା ମୁଁ ଚିଲିକାରେ ମତ୍ସ୍ୟଜୀବୀଙ୍କର ଟାଟା କମ୍ପାନୀ ବିରୋଧୀ ଆନ୍ଦୋଳନ ସହିତ (୧୯୯୦-୯୨ମସିହା) ମିଶିଲାବେଳେ ଅନୁଭବ କଲି । ପୁରୀରେ ଯେଉଁମାନଙ୍କୁ ମୁଁ ଦିନେ ପ୍ରଭାବଶାଳୀ ସମ୍ଭ୍ରାନ୍ତ ଓ ସମ୍ମାନନୀୟ ବ୍ୟକ୍ତି ବୋଲି ଭାବୁଥିଲି, ସେଥିରୁ ଅଧିକାଂଶ ଚିଲିକାର ମତ୍ସ୍ୟଜୀବୀଙ୍କ ପାଇଁ ଜଣେଜଣେ ଚିଙ୍ଗୁଡ଼ି ମାଫିଆ, ଦଲାଲ ତଥା ଶୋଷକ । ମତ୍ସ୍ୟଜୀବୀଙ୍କ କେଶ ପାଇଁ ତାରିଖ ଗଡ଼ାଇ 'ସମ୍ମାନଜନକ' ଓକିଲ ସେମାନଙ୍କ ଝାଳବୁହା ଧନ ଲୁଟିନିଏ । ବିପର୍ଯ୍ୟସ୍ତ ସ୍ୱାସ୍ଥ୍ୟ ବ୍ୟବସ୍ଥାର ଫାଇଦା ଡାକ୍ତର ନିଏ । ମୁଁ ପିଲାବେଳେ ଯେଉଁମାନଙ୍କୁ ଦେଖି ଓ.ଏ.ଏସ୍. ହେବାର ସ୍ୱପ୍ନ ଦେଖିଥିଲି ଚିଲିକାରେ ମୁଁ ତହସିଲଦାର ଭାବରେ ସେମାନଙ୍କ ଶଠତାକୁ ଜାଣିଲି । ଚିଲିକା ଆନ୍ଦୋଳନରେ ମୋର ସଂପୃକ୍ତି ମାନବୀୟ ଆଧାରରେ ଥିଲା । ମାତ୍ର ସମାଜକୁ ଚିହ୍ନିବା ଓ ସେଥିରେ ମୋ ପାଇଁ ସାଥ ଜୁଟାଇବାର ଜ୍ଞାନ ପ୍ରଥମ କରି ମୁଁ ଚିଲିକା ଆନ୍ଦୋଳନରୁ ପାଇଲି ।

କାହିଁକି ଏପରି ହୁଏ ? ଆମକୁ କାହିଁକି ପିଲାବେଳୁ ସମାଜରେ ଭିନ୍ନ, ସ୍ୱତନ୍ତ୍ର ନିଜପାଇଁ ନାଁ କରିବା ପାଇଁ ପିଲାବେଳୁ ପ୍ରବର୍ତ୍ତାଏ ? ସମାଜରେ ବଡ଼ ଅଫିସର ହେବା, ଧନୀ ହେବା, ଶିକ୍ଷିତ ନାମରେ ନିଜପାଇଁ ସମ୍ମାନ ଜୁଟାଇବା ପାଇଁ ରୀତିମତ ପିଲାବେଳୁ ଠେଲାଯାଏ । ଏହା ବିଶେଷକରି ସହରୀ ମଧ୍ୟବିତ୍ତଙ୍କ ଘରେ ଆଗରୁ ଦେଖାଯାଉଥିଲା । ଯାହା ଏବେ ପ୍ରାୟ ପ୍ରତିବର୍ଗକୁ ଛୁଇଁ ସାରିଲାଣି । ମୁଁ ବି ସେମିତି ଆଇ.ଏ.ଏସ୍., ଓ.ଏ.ଏସ୍. ଭଳି ବଡ଼ ଚାକିରି କରିବି ଓ ବାପା ମା'ଙ୍କ ନାମ ରଖିବି ବୋଲି ପିଲାବେଳୁ ଶପଥ ନେଇଥିଲି । ଅଥଚ ରାଜନୀତିକ ଚେତନା ପରେ ଯେତେବେଳେ ସେଭଳି ବର୍ଗରୁ ନିଜକୁ ମୁକ୍ତକଲି, ସେତେବେଳେ ପରିବାର ଭିତରେ ବହୁତ ବାଧାକୁ ସାମ୍ନା କରିବାକୁ ପଡ଼ିଛି । ମୋର ବହୁତ ସାଥି ଅଛନ୍ତି ଯେ କି ବିଭିନ୍ନ ସାମାଜିକ କାର୍ଯ୍ୟରେ ମଧ୍ୟ ଥିଲେ, କିନ୍ତୁ ପରେ ମା'ର ମାନସିକ ଚାପ ବା ଇମୋସନାଲ୍ ବ୍ଲାକ୍‌ମେଲିଂ, ବାପାଙ୍କ ସ୍ୱପ୍ନରୁ ମୁକୁଳି ନପାରି ଶେଷରେ ନିଜର ଶୋଷକ ବର୍ଗ ବା ଶୋଷକ ଶ୍ରେଣୀ ସହିତ ସାମିଲ ହୋଇଯାଇଛନ୍ତି । ବେଳେବେଳେ ପରିବାର ସଦସ୍ୟଙ୍କ ବାରମ୍ବାର ସେହି ଗୋଟେ କଥା ଘୋଷାଇବାରୁ ବଡ଼ ବିରକ୍ତି ଆସିଛି । ହେଲେ ପାରିବାରିକ ସମ୍ବନ୍ଧ ଗୁଡ଼ିକ ଏପରି ଯେ ଯାହାକୁ ଆମେ ବାନ୍ତି କରିପାରିବା ନାହିଁ କି ହଜମ ମଧ୍ୟ କରିପାରିବା ନାହିଁ । କେବଳ ନିଜ ବିଚାରରେ ଦୃଢ଼ ରହିବା, ଯାହାଦ୍ୱାରା ଅନ୍ୟ ସବୁ ଝଡ଼ ଆପେଆପେ ଶାନ୍ତ ହୋଇଯିବ । ଏହାହିଁ ଏକମାତ୍ର ରାସ୍ତା ଯାହାକୁ ବୁଝିବାପାଇଁ ମୋତେ ବେଶ୍ ସମୟ ଲାଗିଥିଲା । ଅନ୍ତତଃ ଆଜି ମୁଁ ମୋ ବିଚାରକୁ ନେଇ ମୁଁ ଦୃଢ଼ ଓ ମୁଁ ଚାହୁଁଥିବା ରାସ୍ତାରେ ମୁଁ ଚାଲିପାରିବି, ସେକଥା ବେଶ ଅନୁଭବ କରିସାରିଛି । ମୋର ଭୁଲ୍‌କୁ ମୁଁ ନିଜେ ସୁଧାରିଛି ଓ ଆହୁରି ନିଜକୁ ସାଧାରଣ କରିବାପାଇଁ ଚେଷ୍ଟା କରିବି, (ସ୍ୱତନ୍ତ୍ର ବା ବଡ଼, ହେବାପାଇଁ ଚେଷ୍ଟା ନ କରି), ସେ ପ୍ରୟାସ ଏବେବି ଚାଲିଛି ।

ବହୁ ସମୟରେ ମୋତେ ଅନୁଭବ ହୋଇଛି ଯେ ନିଜେ ଜଣେ ପୁରୁଷ ଭାବରେ ସତରେ କେତେ ସୁବିଧା ମୁଁ ପାଉଛି, ସେଥିପାଇଁ ଲାଗେ ଆମେ ସତରେ ଏକ ପୁରୁଷ ପ୍ରଧାନ ସମାଜରେ ଅଛେ । ଝିଅମାନଙ୍କୁ ସେମାନଙ୍କ ଋତୁସ୍ରାବ ସମୟରେ ଅଛୁଆଁ କରି ରଖିବାକୁ ଓ ସେମାନଙ୍କୁ ଅପରିଷ୍କାର ଭାବିବାକୁ (ଅଥଚ ପୁରୁଷଟିଏ ନିଜର ସେହି ହରମୋନ ଗୁଣ ହେତୁ ଦାଢ଼ି ନିଶ ବାହାରିଲେ ନିଜର ପୁରୁଷ ପଣିଆ ଅର୍ଥାତ୍ ନିଜର ଅଧିକାରକୁ ଦେଖାଇଥାଏ) ମୁଁ ବିରୋଧ କଲେ ଶୁଣେ 'ସେମାନଙ୍କୁ ବିଶ୍ରାମ ଦରକାର' । ସେଥିପାଇଁ ପୂର୍ବପୁରୁଷମାନେ ଏପରି କରିଛନ୍ତି । ହେଲେ ଯଦି ତାହା ସେହି ଉଦ୍ଦେଶ୍ୟରେ ମୂଳରୁ ଘୋଷଣା କରାଯାଇଥାନ୍ତା, ତେବେ ଆମେ ଏକ ମାନବୀୟ ସମାଜ ନିଶ୍ଚେ

ପାଇଥାନ୍ତେ । କିନ୍ତୁ ସେ ସମୟକୁ ନାରୀକୁ ଅପରିଷ୍କାର ଭାବିବା ଓ ବିଶ୍ରାମ କହି ଯୁକ୍ତି କରିବାକୁ ମୋତେ ଲାଗେ ଏହା ନିଶ୍ଚିତ ଭାବେ 'ନିର୍ଲଜ୍ଜଙ୍କ ନିଲଠା ଯୁକ୍ତି' । ବହୁ ସମୟରେ ଝିଅମାନେ ମଧ୍ୟ ଏହି ଅଛୁଆଁ ହେବାର ସପକ୍ଷରେ ଯୁକ୍ତି କରିଥାନ୍ତି । କାରଣ ଆମମାନଙ୍କ ପରିବାରରେ ପିଲାବେଳୁ ଗୋଟେ ଝିଅକୁ ସମସ୍ତେ କହିଥାନ୍ତି 'ତୁ ଝିଅଟେ, ତୁ ଏପରି କର, ତୁ ଏପରି କର ନାହିଁ' । ଶେଷରେ ଏପରି ଯୁକ୍ତି ତା ମୁଣ୍ଡରେ ବସା ବାନ୍ଧିବା ସ୍ୱାଭାବିକ ।

ମୋର ଜେଜେଙ୍କର ଏକ ଭଲଗୁଣ ଥିଲା ଯେ ସେ ମୋର ପିଉସୀ ନାନୀମାନଙ୍କୁ ପଢ଼ାଇବା ଓ ବାହାରକୁ ଛାଡ଼ିବାରେ କୁଣ୍ଠା କରୁନଥିଲେ । ଯାହାର ସୁଯୋଗ ନେଇ ମୋର ପିଉସୀ ନାନୀମାନେ କିଛିଟା 'ସ୍ୱାଧୀନ' ହେଲେ ଓ ମୋର ବାପା ମା'ଙ୍କ କ୍ଷେତ୍ରରେ ମଧ୍ୟ ସେଇଟି ଦେଖାଗଲା । ଆଗ୍ରହ ଅନୁସାରେ ମିଳୁଥିବା ସ୍ୱାଧୀନତାକୁ ବ୍ୟବହାର କରି ସେମାନେ ସ୍ୱାଧୀନ ହୋଇପାରିଲେ । ହେଲେ ମୋର ଚାରିପାଖରେ ବିଶେଷକରି ଜଗନ୍ନାଥ ମନ୍ଦିରର ସେବାୟତ ପୂଜାରୀ ଓ ପଢ଼ିଆରୀଙ୍କ ଘରର ମହିଳାମାନଙ୍କ ଦେହରେ ସୂର୍ଯ୍ୟକିରଣ ବାଜିବାପାଇଁ ବି ଘରର ବୟୋଜ୍ୟେଷ୍ଠା ମହିଳା ବା ଘରର ପୁରୁଷ ମୁରବିଙ୍କ ଅନୁମତି ଦରକାର ହୁଏ । ବୋଧହୁଏ ସେମାନେ ସୂର୍ଯ୍ୟଙ୍କୁ ଈର୍ଷା କରନ୍ତି । ସେଥିପାଇଁ ନାରୀମାନଙ୍କୁ ବି ଘରେ ରଖିଥାନ୍ତି । ନାରୀ ଶିକ୍ଷାର ପ୍ରଭାବ ହେତୁ ସେମାନେ ଏବେଏବେ ଓଢ଼ଣା ଭିତରୁ ମୁହଁ ବାହାର କରି ଦୁନିଆକୁ ଦେଖିବାପାଇଁ ଚେଷ୍ଟା କରୁଛନ୍ତି ।

ମାତ୍ର ଆଜିର କିଛି ଶାସକବର୍ଗ ଯେତେବେଳେ ନାରୀକୁ ପୁଣି ପୂରା ପୋଷାକ ପିନ୍ଧାଇବା ଓ ରାତିରେ ନବୁଲିବା ପାଇଁ ପରାମର୍ଶ ଦେଉଛନ୍ତି (ଯେମିତିକି ଆନ୍ଧ୍ରପ୍ରଦେଶରେ ପୁଲିସ ଡି.ଜି. ଓ ଦିଲ୍ଲୀର ମୁଖ୍ୟମନ୍ତ୍ରୀ ନିକଟରେ କହିଲେ) ମୋତେ ଲାଗୁଛି ଏମାନେ ନିଜେ ଶାସକର ଦାୟିତ୍ୱବୋଧରୁ ମୁକୁଳିଯିବାପାଇଁ ଚେଷ୍ଟା କରୁଛନ୍ତି । ଗାନ୍ଧିଜୀ ଯଦି ଜଣେ ନାରୀ ମୁକ୍ତଭାବରେ ରାତିରେ ବୁଲିପାରିବା ସହିତ ଦେଶର ସ୍ୱାଧୀନତାକୁ ତୁଳନା କଲେ ତେବେ ଷାଠିଏ ବର୍ଷ ପରେ ଆମେ ଯେ ନାରୀକୁ ନିଜେ 'କିଛିଟା' ଅନୁଶାସନ ମଧ୍ୟରେ ରହିବାକୁ ହେବ ବୋଲି କହୁଛେ, ତେବେ କେଉଁଟା ଠିକ୍ ? ପୁରୁଣା ସମାଜ ସଂସ୍କାରକମାନେ ନାରୀକୁ ଓଢ଼ଣା ଭିତରୁ ବାହାର-କରିବାକୁ ଚେଷ୍ଟା କଲାବେଳେ ଓ ତାହାକୁ ହିଁ ନାରୀ ମୁକ୍ତି କହୁଥିଲାବେଳେ ଆଜି ପୁଣି ସେମାନଙ୍କୁ କେତେକ ଅନୁଶୀଳନ ମାନିବା ପାଇଁ ବାଧ୍ୟ କରାଯାଉଛି ଓ ସେମାନଙ୍କୁ ପୁଣି ଘର ଭିତରକୁ ଠେଲିଦେବାପାଇଁ ଉଦ୍ୟମ କରାଯାଉଛି । ଆମ ସମାଜରେ ବଢୁଥିବା ନାରୀଧର୍ଷଣ, ନାରୀ ନିର୍ଯାତନା ସହିତ ଯୌତୁକପ୍ରଥା ଓ କନ୍ୟା ଭ୍ରୂଣହତ୍ୟାର ମାତ୍ରା ମଧ୍ୟ ବଢ଼ିବା ଚିନ୍ତାର ବିଷୟ । ଆଧୁନିକ

ସଭ୍ୟତା ହୁଏତ କିଛି ଲୋକଙ୍କୁ ଅଧିକ ଅର୍ଥ ଦେଇ ପାରିଛି । ମାତ୍ର 'ସଭ୍ୟତା କ'ଣ' ସେମାନଙ୍କୁ ଶିଖାଇ ନାହିଁ । ଆଜିର କ୍ଷମତା କୈନ୍ଦ୍ରିକ ସାମାଜିକ ବ୍ୟବସ୍ଥା ମଧ୍ୟରେ କ୍ଷମତାଶାଳୀ ମଣିଷ ନିଜର କ୍ଷମତାର ବ୍ୟବହାର କରୁଛି । କେନ୍ଦ୍ରୀଭୂତ କ୍ଷମତାର ବ୍ୟବହାର ଓ ଅପବ୍ୟବହାର ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । କ୍ଷମତାକୁ ନିଜର ଦାୟିତ୍ୱ ଓ ସେ ଯେ ଏଥିପାଇଁ ଉତ୍ତରଦାୟୀ ସେକଥା ଭାବୁନାହିଁ । ସେଥିପାଇଁ ନାରୀ ଏବେବି କ୍ଷତିଗ୍ରସ୍ତ ହେଉଛି ଓ ପୁରୁଷ ନିଜେ ପୁରୁଷ ହେବାର ସୁବିଧା ନେଉଛି, ଏକଥା ଜଣାପଡୁଛି ।

ମୋର ନାରୀବନ୍ଧୁମାନେ ଯୁକ୍ତି କରୁଥିଲେ ଯେ ଆଧୁନିକତା ଓ ଅର୍ଥଗତ ସ୍ୱାବଲମ୍ବନ ଦ୍ୱାରା ନାରୀ ଅତ୍ୟାଚାରକୁ ନିଶ୍ଚେ କମାଇ ଦିଆଯାଇ ପାରିବ । ଏହା ଏକ ଆପେକ୍ଷିକ ସତ୍ୟ । ଆଧୁନିକତା ଓ ଅର୍ଥଗତ ସ୍ୱାବଲମ୍ବନ ଅନ୍ୟମାନଙ୍କ ପରି ନାରୀକୁ ମଧ୍ୟ ଅନିଶ୍ଚିତତା ଆଡ଼କୁ ନେଇଯାଉଛି, ଯାହା ଆମେ ଆର୍ଥିକ ସଂସ୍କାର ପରେ ବିଶେଷ ଭାବରେ ଦେଖୁଛେ । ଅଥଚ ଫେମିନିଜିମ୍ ଏବେବି ଆର୍ଥିକ ସଂସ୍କାରକୁ ବିରୋଧ କରିପାରୁନାହିଁ । ଏପରିକି ଆଧୁନିକତାର ଆଳରେ ଓଡ଼ିଶାରେ ଗ୍ରାମୀଣ ମହିଳାମାନଙ୍କ ଦ୍ୱାରା ଚାଲିଥିବା ମଦ ମୁକ୍ତି ଆନ୍ଦୋଳନକୁ ମଧ୍ୟ ସିଧା ସମର୍ଥନ କରିପାରୁନାହିଁ । ତେଣୁ ପୁଞ୍ଜିବାଦୀ ବ୍ୟବସ୍ଥା ମଧ୍ୟରେ ଆର୍ଥିକ ସ୍ୱାବଲମ୍ବନକୁ ଗୁରୁତ୍ୱ ଦେଲାବେଳେ ଯେ ତାହା ଆଉ ଏକ ଉଚ୍ଚ ଶ୍ରେଣୀର ନାରୀ (ଠିକ୍ ଦଳିତ ଆନ୍ଦୋଳନ ପରି) ତିଆରି କରୁଛି ଏଥିରେ ଅତ୍ୟୁକ୍ତି ନାହିଁ ।

କାଶୀପୁର ଆନ୍ଦୋଳନରେ ମୋର ସଂପୃକ୍ତି କାଳରେ ଆଦିବାସୀ ମହିଳାର ସ୍ଥିତିକୁ ଦେଖି ମୁଁ ବୁଝିପାରିଲି ଯେ ନାରୀଟିଏ ଆର୍ଥିକ ଦୃଷ୍ଟିରୁ ସେଠାରେ ସ୍ୱାବଲମ୍ବୀ ନୁହେଁ, ସେ କେବଳ ଅନ୍ୟମାନଙ୍କ ସହିତ ଚାଷରେ ଭାଗ ନେଉଛି । ଅଥଚ ସେ ନିର୍ଭୀକ ଭାବରେ ନିଜର ଇଚ୍ଛାକୁ ପ୍ରକାଶ କରିବା ସହିତ ପରିବାର ଓ ଗୋଷ୍ଠୀର ପୁରୁଷମାନେ ସେଇ ଇଚ୍ଛାକୁ ସମ୍ମାନ ଦେଉଛନ୍ତି । ଆଦିବାସୀ ସମାଜରେ ପୁରୁଷର ପ୍ରଭାବ ନାହିଁ ବୋଲି ନୁହେଁ । ଛୁଆମାନେ ବାପାର ନାମରେ ପରିଚିତ । ସଂପତ୍ତିରେ ନାରୀର ଅଧିକାର ପଛରେ ଆସେ । ମହିଳାଙ୍କ ଭିତରେ ଭଲ ଲୋକ ଖରାପ ଲୋକ ଶାଶୁ ଓ ନଣନ୍ଦଙ୍କ ମନ୍ତବ୍ୟ ଉପରେ ନିର୍ଭର କରେ । ହେଲେ ଆଦିବାସୀ ମହିଳାଙ୍କୁ 'ବିଧବା' ଅଥବା 'ସ୍ୱାମୀ ପରିତ୍ୟକ୍ତା' ପରି ଅତି ନ୍ୟୁନ ପରିଚୟ ଦେଇ କେହି ଦେଖନ୍ତି ନାହିଁ ।

ରାୟଗଡ଼ା ଜିଲ୍ଲାରେ କାଶୀପୁର ଅଞ୍ଚଳରେ ଆଦିତ୍ୟ ବିରଳାର ବକ୍‌ସାଇଟ୍ ଖଣିକୁ ବିରୋଧ କରି ସ୍ଥାନୀୟ କନ୍ଧ ଓ ପରଜା ଆଦିବାସୀମାନେ ୧୯୯୪ରୁ ଲଢ଼େଇ ଆରମ୍ଭ କରିଥିଲେ । ୧୯୯୮ ବେଳକୁ ଆମେ କିଛି ସାଥି ଏଠାକୁ ଯିବାଆସିବା ଆରମ୍ଭ କଲୁ ଓ ମାଇକଞ୍ଚ ଗୁଳିକାଣ୍ଡ (ଡିସେମ୍ବର ୧୬, ୨୦୦୦) ପୂର୍ବରୁ ଆମେ ଆନ୍ଦୋଳନର କିଛି

ଦାୟିତ୍ୱ ନେବା ଆରମ୍ଭ କରି ଦେଇଥିଲୁ । ସେହି ଆନ୍ଦୋଳନର ସଂପୃକ୍ତି ଭିତରେ ମୁଁ ବୁଝିଲି ଯେ ଏଠାରେ ଆଦିବାସୀ ସମାଜ ନିଜର ପରିଶ୍ରମ ଦ୍ୱାରା ବଞ୍ଚିପାରିଛି ଏବଂ ସ୍ୱାଭିମାନର ସହିତ ମଧ୍ୟ ବଞ୍ଚିପାରିଛି । ସେ ମଧ୍ୟରେ ପାରସ୍ପରିକତା ରହିଛି । କାରଣ ତାର ଏକ ଇତିହାସ ରହି ଆସିଛି, ଯାହାକି ଆପେଆପେ ଏକ ସଂସ୍କୃତି ମଧ୍ୟ ତିଆରି କରିପାରିଛି । ସେହି ସଂସ୍କୃତି ହିଁ ସେମାନଙ୍କ ମଧ୍ୟରେ ଶୃଙ୍ଖଳା ଆଣିଛି । ଏଠାରେ ରାଷ୍ଟ୍ର ଓ ରାଷ୍ଟ୍ରଗତ ସମ୍ବନ୍ଧର କୌଣସି ଆବଶ୍ୟକତା ନାହିଁ । ନିଜର ପ୍ରାକୃତିକ ସଂପଦର ବ୍ୟବହାର ଦ୍ୱାରା ଗାଁର ମଣିଷମାନେ ବଞ୍ଚିଛନ୍ତି । କିଛି ଚାଲାକ ଲୋକ ଅଛନ୍ତି ଯେଉଁମାନେ ସରକାରୀ ବ୍ୟବସ୍ଥାର ସଂଯୋଗରେ ନିଜ ଲୋକଙ୍କର ଦଲାଲି କରୁଛନ୍ତି । ଯେମିତିକି ସାନିରେ ସ୍ୱର୍ଗତ ବିଧାୟକ ସେଥିପାଇଁ ସେ ଅଞ୍ଚଳରୁ ବାସନ୍ଦ ମଧ୍ୟ ହୋଇଥିଲେ । ଯଦି ଆମେ ଭୁଲିଯାନ୍ତେ ପୁଞ୍ଜି, ବଜାର ପ୍ରକ୍ରିୟା, କ୍ଷମତାକେନ୍ଦ୍ର, ଜାତି ଓ ଲିଙ୍ଗଗତ ବୈଷମ୍ୟ, ଧର୍ମର ଔଦ୍ଧତ୍ୟ ଓ ଜାତୀୟତା ନାମରେ ଦେଶଗତ ସୀମାର ଆକ୍ରୋଶ, ତାହାହେଲେ ପ୍ରତ୍ୟେକ ଅଞ୍ଚଳରେ ଯେ ଏପରି ଏକ ସୁସ୍ଥ ସମାଜ ଆସିପାରନ୍ତା, ତାହାର ଉଦାହରଣ ମୁଁ ସେଠାରେ ପାଇଲି । ତେଣୁ ଏକ ସୁସ୍ଥ ସମାଜକୁ ଅସୁସ୍ଥ ଓ ଆକ୍ରୋଶମୂଳକ କରିବା ପଛରେ ଗୋଟେ ନୁହେଁ ଅନ୍ୟ ବହୁ କାରଣ ରହିଛି ଯାହା ବିରୋଧରେ ଲଢ଼େଇ କରିବା ଜରୁରି । ସେଠାରେ ସାଧାରଣ ଆଦିବାସୀ ଜଣକ ନିଜକୁ ଦେଶିଆ କହିବା ଭିତରେ ସେ ନିଜର ମାଟି ତଥା ନିଜର ସଂସ୍କୃତିକୁ ହିଁ ବୁଝାଉଛି, ଯାହାପାଇଁ ସେ ଜାଗାରେ ଏତେବର୍ଷ ରହି ମଧ୍ୟ ମୋତେ ଲାଗେ ମୁଁ ପରଦେଶୀ ବା ବିଦେଶୀ । ଭାରତର ଆଦିବାସୀ ପରମ୍ପରା ମଧ୍ୟରେ ଜାତୀୟତା ଓ ଜାତୀୟ ସୀମା ଏକ ଦୁର୍ବଳ ଚିନ୍ତାଧାରା । ଯଦି ମୁଁ ମୋ ନିଜକୁ କାଶିପୁର ଭିତରେ ବିଦେଶୀ (ଏକ ଭିନ୍ନ ସଂସ୍କୃତି ହେତୁ) ଓ କାଶିପୁର ଆଦିବାସୀଟିଏ ମୋ ଜାଗାରେ ବିଦେଶୀ, ତେବେ ସାଧାରଣ କାଶ୍ମୀରବାସୀ ଅଥବା ମଣିପୁର ବାସିନ୍ଦାଟିଏ ସମଗ୍ର ଭାରତର କ୍ଷେତ୍ରରେ କାହିଁକି ଏକଥା ବୁଝିବ ନାହିଁ ? ଯଦି ପ୍ରତି ଜଣେ କାଶ୍ମୀରୀବାସୀକୁ 'ଜଗିବା ପାଇଁ' କାଶ୍ମୀର ଉପତ୍ୟକାର ୭-୮ ଜଣ ସୈନ୍ୟ ଭାରତ ସରକାର ନିଯୁକ୍ତ କରନ୍ତି, ଯଦି ଭାରତର ସମସ୍ତ ସୈନ୍ୟବାହିନୀର ଦୁଇ ତୃତୀୟାଂଶ କେବଳ କାଶ୍ମୀରରେ ନିଯୁକ୍ତି ହୁଅନ୍ତି, ତେବେ ସାଧାରଣ କାଶ୍ମୀରବାସୀ ପାଇଁ ମୁଁ ଭାରତୀୟ ଭାବରେ ତ ଜଣେ ଶତ୍ରୁ ? କାରଣ ମୋର ସରକାର ତ ସେଠାରେ ଅତ୍ୟାଚାର କରୁଛି !

ବିଶିଷ୍ଟ ଦାର୍ଶନିକ ଆଶିଷ ନନ୍ଦୀ ନିଜର ବହି 'ଗାନ୍ଧିଙ୍କ ଜଣା'ରେ ଲେଖିଛନ୍ତି ଯେ ଦୁଇଜଣ ବ୍ୟକ୍ତି ପ୍ରକୃତରେ ଗାନ୍ଧିଜୀଙ୍କୁ ଠିକ୍‌ରେ ବୁଝିଥିଲେ । ଜଣେ ହେଲା ନାଥୁରାମ ଗଡ଼ସେ ଯେ ତାଙ୍କୁ ହତ୍ୟା କଲେ । ଆଉଜଣେ ବିରଳା ଯେ ତାଙ୍କ ଉପରେ ଭଲ

ବ୍ୟବସାୟ କଲେ । ତାଙ୍କରି ବଂଶଧର କୁମାର ମଂଗଳମ୍ ବିର୍ଲା 'ଆଦିତ୍ୟ ବିରଳା'ଙ୍କ ପାଇଁ ଦୀର୍ଘ ସତର ବର୍ଷର ଉଦ୍ୟମରେ ଓଡ଼ିଶା ସରକାରଙ୍କ କ୍ଷମତାର ସାହାଯ୍ୟରେ ଏବେଏବେ କମ୍ପାନୀ ବସାଇବାରେ ସଫଳ ହେବାକୁ ଯାଉଛି । ୨୦୦୨ ମସିହା ମାଇକଞ୍ଚ ପୁଲିସ୍ ଗୁଳିକାଣ୍ଡରେ ତିନିଜଣ ଆଦିବାସୀ ମୃତ୍ୟୁବରଣ କଲେ । ସେମାନେ ଗଣତାନ୍ତ୍ରିକ ଉପାୟରେ ଆନ୍ଦୋଳନ କରୁଥିଲେ । ୨୦୦୪-୦୬ରେ ରାଷ୍ଟ୍ର ଦମନର ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହେଲା । କମ୍ପାନୀ ପାଖରେ ସେତେବେଳେ ପରିବେଶ ଅନୁମତି ପତ୍ର, ଜଂଗଲ ବିଭାଗ, ଅନୁମତିପତ୍ର ଓ ଖଣି ବିଭାଗ ଅନୁମତିପତ୍ର ନଥିଲା । ବିଧାନସଭାର କମିଟି (୨୦୦୮) କାଶିପୁର ଆସିଥିବା ସମୟରେ କମ୍ପାନୀର କାମ ଚାଲିଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ଅଥଚ ୨୦୦୪-୦୬ ମଧ୍ୟରେ ତତ୍କାଳୀନ ଜିଲ୍ଲାପାଳ ଶ୍ରୀ ମେହେର୍ଦ୍ଦାଙ୍କ ଅଫିସ୍ କମ୍ପାନୀ ଅଫିସ୍ ପରିଣତ ହୋଇଯାଇଥିଲା । (ଆଜି ଯେତେବେଳେ ୨୦୦୬ ମସିହାର ନରେଗା ଦୁର୍ନୀତିରେ ସିବିଆଇ ଅଭିଯୋଗ କରୁଛି ଯେ ରାୟଗଡ଼ାର ସେ ସମୟର ଜିଲ୍ଲାପାଳ କିଏ ଥିଲେ ଓଡ଼ିଶା ସରକାର ତାଙ୍କୁ ତାଲିକା ନେଉନାହାନ୍ତି, ସେତେବେଳେ ମୋତେ ଲାଗୁଛି କାରଣ ଆଉ କିଛି ମାସପରେ ଶ୍ରୀଯୁକ୍ତ ମେହେର୍ଦ୍ଦା ଆମ ରାଜ୍ୟର ସ୍ୱାସ୍ଥ୍ୟ ସଚିବ ହେବାର ସମ୍ଭାବନା ଅଛି) । ଆଜି ଯେତେବେଳେ ମେଟ୍ରିକ୍ ପରୀକ୍ଷାରେ ପ୍ରଥମ ଦଶଜଣଙ୍କ ଭିତରେ ଥିବା ଛାତ୍ରଛାତ୍ରୀ ଭବିଷ୍ୟତରେ ଆଇ.ଏ.ଏସ୍. ହେବାର ସ୍ୱପ୍ନ ଦେଖୁଛି, ମୋତେ ସେତେବେଳେ ତା ଭିତରେ ମେହେର୍ଦ୍ଦାର ଛାପ ବେଶ୍ ନଜର ଆସୁଛି । ଏବେ ଆଉ ଭଲ ଆଇ.ଏ.ଏସ୍ କି ଖରାପ ଆଇ.ଏ.ଏସ୍‌ର କିଛିମାନେନାହିଁ । କ୍ଷମତାର କେନ୍ଦ୍ର ଆଇ.ଏ.ଏସ୍ ପାଲଟି ଗଲେଣି ଓ ସେମାନେ ଆଦିବାସୀ ବିରୋଧୀ ହୋଇ କାମ କରିବା ହିଁ ଆଜିର ଶାସନ ବ୍ୟବସ୍ଥା । ଏହିକଥା ଲାଞ୍ଜିଗଡ଼ (କଳାହାଣ୍ଡି), ଜଗତ୍‌ସିଂହପୁର, ଢିଙ୍କିଆ, ନାରାୟଣପାଟଣା (କୋରାପୁଟ) ପ୍ରତ୍ୟେକ ଜାଗାରେ ଆମେ ଏବେ ଦେଖୁଛେ ।

କାଶୀପୁରରେ କମ୍ପାନୀ ଏବେ ଜୋରସୋରରେ କାମ ଚଳାଇଛି । ଜଗଦୀଶ ମାଝୀ ନିଜର ଆଦିବାସୀଙ୍କୁ ସାହାଯ୍ୟ କରିବ ବୋଲି ଓକିଲାତି ପଢ଼ିଥିଲା । କମ୍ପାନୀ ଆସିଲା ପରେ ଏବେ ଠିକାଦାର ହୋଇଗଲା । ଦୁଇଟି ଟ୍ରାକ୍ଟର କଲାଣି । ତୁମୁଡୁ ମାଝୀ ଏମ୍.ଏ. ପାସ କଲା । ଆନ୍ଦୋଳନ ଭିତରେ ସକ୍ରିୟ ଥିଲା, ସାମ୍ବାଦିକ ହେବ ବୋଲି ଚିନ୍ତା କରୁଥିଲା । ଏବେ ସେ କମ୍ପାନୀର ଠିକାଦାରୀ କରୁଛି । ନିଜର ଟ୍ୟାକ୍ସି କମ୍ପାନୀକୁ ଦେଇଛି । ସମର୍ରେ ମାଝୀ ଗାଡ଼ି କିଣିବ ବୋଲି ବାପାକୁ ଟଙ୍କା ମାଗିଲା । ବାପା ନଦେବାରୁ ଏବେ ଘରକୁ ଯାଉନାହିଁ । ଡାମାମାଝୀ କମ୍ପାନୀ ସହିତ ପାଟିତୁଣ୍ଡ କରି ଦୁଇଲକ୍ଷ ଟଙ୍କାର କାମ ଆଣିଥିଲା । ତାକୁ ସେ ଗୌରାଙ୍ଗ ନାୟକକୁ ବିକିଦେଲା । ସେହି ଟଙ୍କା ମଦରେ

ଉଡ଼ାଇଦେଲା । ଦୀନା, ରାଜିବ ଦାସ, ଚକ୍ରୁ ସମସ୍ତେ ଏବେ ଚାଷ ଛାଡ଼ିଦେଇ କମ୍ପାନୀରୁ ଲୁହା ଚୋରି କରୁଛନ୍ତି ଓ ଭୀଷଣ ମଦ ପିଉଛନ୍ତି । ଘରେ ଆଗରୁ ତାଲା ପଡୁନଥିଲା । ଏବେ ତାଲା ପଡ଼ି ମଧ୍ୟ ଚୋରି ହେଉଛି । ଘରର ପିଲା ନିଜେ ଚୋରି କରୁଛି । ଆମ୍ଭାଶ କିନ୍ତୁ ଫାର୍ମାସିଷ୍ଟକୁ ନିଜର ବର୍ଷକର ମାଣ୍ଡିଆକୁ ପାଞ୍ଚଶହ ଟଙ୍କାରେ ବିକି ନିଜର ପୁଅର ମ୍ୟାଲେରିଆ ଜ୍ୱର ଭଲ କରିଛି । ଦୁଇଟା ସାଲାଇନ୍ ଲାଗିଲା । ସେ ଏବେବି କମ୍ପାନୀକୁ ଘୃଣା କରୁଛି । କମ୍ପାନୀ ହଟିବାର ସ୍ୱପ୍ନ ଦେଖୁଛି । ପରମେ ମାଝୀର ପରିବାର ଦିନରେ ଭାତ ଖାଇଲେ ରାତିରେ ମାଣ୍ଡିଆ ଜାଉ ପିଇ ଶୋଇ ଯାଉଛନ୍ତି । ସେ କହୁଥିଲା ଗାଁର ଟୋକାମାନେ ମହୁଲି ଛାଡ଼ି କେତେ ଶହ ଟଙ୍କା ଦେଇ ବିଦେଶୀ ପିଉଛନ୍ତି । ଉମେଶ ମାଝୀ କମ୍ପାନୀ ପାଇଁ ଜମିଘର ଛାଡ଼ି ବିସ୍ଥାପିତ ହେଲା । କଲୋନିରେ ରହୁଛି । ମାତ୍ର କଲୋନିର ଘର ତାକୁ ଲିଜ୍‌ରେ ମିଳିଛି । ଏବେବି ସେ ଠିକା ଶ୍ରମିକ । ଚାକିରି ନାହିଁ । କଲୋନିର ଜଳାମଣି ନାୟକ ଏବେବି କଲେକ୍ଟର ମେହେର୍ଦ୍ଦାକୁ ସମ୍ଭୁଛି । ସେହି ଆମକୁ ମିଛ କହି ଭୁତାଇ କରି ଏଠିକୁ ନେଇ ଆସିଲା । ଯଦି ମାଗିହା କେବେ ଆସେ ତାକୁ ହାଣିବି । ଦିନ ମଜୁରି ଘରେ ତା'ର ସାତପ୍ରାଣୀ କୁଟୁମ୍ବ । କାମକୁ ନଗଲେ ମଜୁରି ବନ୍ଦ । ସାନପୁଅ ଏବେ ଆଉ ଗୋଟେ ଗାଡ଼ି କିଣିବ ବୋଲି ଜିଦି କରୁଛି । ଗାଁର ଢେମ୍‌ସା ନାଚରେ କୋରାପୁଟର ଆଲବମ୍ ବାଜୁଛି । ଢେମ୍‌ସା ନାଚରେ ବଲିଉଡ଼୍‌ର ଆଇଟମ୍ ଗୀତର ନଗ୍ନ ଭଂଗୀ ଦେଖିବାକୁ ମିଳୁଛି । ପ୍ରଦୀପ ନିଜର ମୋବାଇଲ୍‌କୁ ଚାର୍ଜ କଲାବେଳେ ଝିଅଟିର ଲଙ୍ଗଳା ଫଟୋ ରଖିଥିବା କଥା ଧରାପଡୁଛି । ନାଥ କହୁଥିଲା ରାୟଗଡ଼ା ଏସ.ପି. ଧମକ ଦେଇଛନ୍ତି, ଜୁଲାଇ ମାସ ଭିତରେ କମ୍ପାନୀ ପାଇଁ ଜମି ଛାଡ଼ିଦିଅ । କମ୍ପାନୀ ଏବେବି କେତେକଙ୍କର ଜମି ଅକ୍ତିଆର କରି ପାରିନଥିବା ହେତୁ ବ୍ୟସ୍ତ ହୋଇପଡ଼ିଲାଣି । ଏବେ ଏସ୍.ପି. ଅଫିସରୁ ସି.ଆର.ପି.ଏଫ୍.ର କୋମ୍ବିଂ ଅପରେସନର ମ୍ୟାପ ତିଆରି ହେଉଛି । ଯେଉଁ ଲୋକେ ଜମିଦେବାପାଇଁ ଆଗ୍ରହୀ ନୁହଁନ୍ତି ସି.ଆର.ପି.ଏଫ୍. ଏବେ ସେହିଠାରେ ବେଶି କୋମ୍ବିଂ କରୁଛି । କାଶିପୁର ପାଖ କୁମ୍ଭିକଟାରେ ସି.ଆର.ପି.ଏଫ୍. କ୍ୟାମ୍ପ କରିଛି । ବାରିଗାଁର ବୁଲ୍‌କା କହୁଥିଲା 'ପ୍ରତି ମାସରେ ସି.ଆର.ପି.ଏଫ୍. ଆସୁଛି, ଗାଁ ଲୋକଙ୍କୁ ପିଟୁଛି, ନକ୍ସଲ ସହିତ ମିଶିଛ ବୋଲି କହୁଚି । ହେଲେ ଆମେ ଜମି ଦେବୁନାହିଁ । ବୁଲ୍‌କା ଆନ୍ଦୋଳନ କେଶ୍‌ରେ ପୁଲିସଠୁ ମାଡ଼ ଖାଇଛି । କେତେ ମାସ ଜେଲ ଯାଇଛି । ବାରିଗାଁର ତିନିଜଣ ଝିଅ ବାସଙ୍ଗ ମାଝୀର ଏନକାଉଣ୍ଟରରେ ପ୍ରାଣ ଦେଇଛନ୍ତି (ଜାନୁଆରୀ ୨୦୧୧) । ଟିକିରି ଗ୍ରାମରକ୍ଷୀ କହୁଥିଲା,

କମ୍ପାନୀ ଏବେ ଟିକିରି, କାଶିପୁର, ଦୋରାଗୁଡ଼ ଥାନାକୁ ପ୍ରତିମାସରେ "ଲକ୍ଷେ କୋଡ଼ିଏ ହଜାର ଟଙ୍କା ଦେଉଛି । ମୋରି ପାଇଁ ଏତେ କାମ ହେଲା । ଏବେ ମୋତେ ସେଥିରୁ ମାତ୍ର ହଜାରେ ଟଙ୍କା ଦେଉଛନ୍ତି ।" କୁଚେଇପଦରର ଦିଶାରୀ ବୁଢ଼ୀ ଗଲାବର୍ଷ ପର୍ଯ୍ୟନ୍ତ କମ୍ପାନୀକୁ ସମ୍ଭୁଥିଲା । ଏବେ ତାର ସ୍ୱର ନରମି ଯାଇଛି । ଆନ୍ଦୋଳନ ପାଇଁ ଦୁଇଥର ଜେଲ ଯାଇଥିବା ତାର ପୁଅ ମୁକୁନା କମ୍ପାନୀଠୁ ବସିକରି ଦୁଇହଜାର ଟଙ୍କା ପାଉଛି । କମ୍ପାନୀର ସିକାଓ କହୁଥିଲା "ଏ ଏରିଆ ଭିତରେ ତିନିହଜାର ଯୁବକ ଅକ୍‌ଜୁଲାରୀ ୱାର୍କର ଭାବରେ ବସିକରି ଦୁଇରୁ ପାଞ୍ଚହଜାର ପାଉଛନ୍ତି ।" ଏମାନେ ସମସ୍ତେ ଦିନେ ଆନ୍ଦୋଳନରେ ସକ୍ରିୟ ଥିଲେ । ସେ ପୁଣି କହୁଛି, ଏଠାରେ ବାରଶହ ଲୋକ ଚାକିରି କରିବେ । କାଶିପୁରରୁ କେହି ପାଇବେ ନାହିଁ । ହେଲେ ସେମାନଙ୍କ ଘରେ ଆଦିବାସୀ ମହିଳାମାନେ କାମକରି ସଭ୍ୟତା କ'ଣ ଶିଖିବେ । ଭଲରେ ଲୁଗା ପିନ୍ଧିବେ, ଖାଇବା ଜାଣିବେ ।" ସି.ଇ.ଓ. ମିଶ୍ରର ଘର ବ୍ରହ୍ମପୁର । ଉପକୂଳର ସମସ୍ତେ ଜାଣନ୍ତି କମ୍ପାନୀ ଆସିଲେ ଆଦିବାସୀ ସଭ୍ୟ ହେବ । ଭୁବନେଶ୍ୱରରେ ଜଣେ ଇଂଜିନିଅରର ବାପା କହୁଥିଲେ "ଚାରିଲକ୍ଷ ଦେଇ ପୁଅକୁ ଇଂଜିନିଅରିଂ ପଢ଼ାଇଲି । ଏବେ ଘରେ ବସିଛି । ବନ୍ଧୁ ସଂପର୍କୀୟଙ୍କ ଆଗରେ ମୁହଁ ଦେଖାଇବାକୁ ଲାଜ ଲାଗୁଛି । କାଶିପୁର ଆଡ଼େ ଲାଗିଯାନ୍ତା ନାହିଁ ?" ଲାଗିଥିଲେ ସିକାଓ ମିଶ୍ରର ଆସିଷ୍ଟାଣ୍ଟ ହୋଇଥାନ୍ତା, ଆଦିବାସୀ ମହିଳାକୁ ଲୁଗା ପିନ୍ଧାଇ ସଭ୍ୟ କରିଥାନ୍ତା । ଆମର ଛୁଆମାନେ ତ ଆଦିବାସୀ ଅଞ୍ଚଳରେ ଯାଇ ଏୟା ହିଁ କରୁଛନ୍ତି । ବାଫଲାମାଳୀ ପାଖ କୁପାଖାଲର ଯୁବକମାନେ ଆଜିକାଲି ସୁବ୍ରତ ପଟ୍ଟନାୟକ, ସିଇଓ ମିଶ୍ର ଇତ୍ୟାଦିଙ୍କ ଉପରେ ଭୀଷଣ ରାଗୁଛନ୍ତି । "କାମ ଆରମ୍ଭ କଲାବେଳେ କେତେ କଅଁଳ କରି କହି ଘରେ ବସି କମ୍ପାନୀର ରାସ୍ତା ପାଇଁ ଜମି ମାଗିଲା । ଏବେ ରାସ୍ତା ହେଇଗଲା ପରେ ସି.ଆର.ପି.ଏଫ୍.ର ଗାଡ଼ି ଆସିଯାଉଛି । ଏବେ ସେ ଷଣ୍ଢ ଭଳି ଯାଉଛି ଆସୁଛି । ଆମକୁ ଚାକିରି ଦେବ କହି ଦେଲାନାହିଁ ।" ଆମରି ଶିକ୍ଷିତବର୍ଗ କମ୍ପାନୀ ପାଇଁ ନିଜର ସମସ୍ତ ନୈତିକତାକୁ ବିକ୍ରି କରୁଛନ୍ତି । ତାରି ଭିତରେ ପାଖାପାଖି ଲୋକ 'ଆମ ଲୋକ' ଅଛନ୍ତି । 'ଆମଲୋକ' ହାଇକୋର୍ଟର ଜଜ୍ ହେଲେ । ଜଗମାଝୀ ଆଦିବାସୀର ଜମିକୁ ବିରଳା କମ୍ପାନୀ ଜବରଦସ୍ତି ଅକ୍ତିଆର କଲା । କମ୍ପାନୀ ବିରୁଦ୍ଧରେ ଜଗମାଝୀ ହାଇକୋର୍ଟରେ କେଶ୍ କଲା । ଜଜ୍ ମଧ୍ୟ 'ଆମଲୋକ' । ସେ ଆଦିବାସୀକୁ ଠକିଦେଲା । ଜଗମାଝୀର କେଶ୍‌ର ରାୟ ଶୁଣାଇବା ଆଗରୁ ଅବସର ନେଇଗଲେ । ଜଗମାଝୀ କହୁଛି ଓକିଲ ମାନେ କମ୍ପାନୀଠୁ ଟଙ୍କା ଖାଇଲେ । ଜଜ୍‌ମାନେ ଖାଇଥିବେ ମଧ୍ୟ । କମ୍ପାନୀ ପୁଣି

ପୁଲିସ୍, କୋର୍ଟ, ଦଲାଲ, ନେତା, ପ୍ରଶାସନର ଶକ୍ତିରେ ବଳିଆନ୍ । ସେହି 'ଆମଲୋକ' ଏବେ ଆଦିବାସୀ ରାଜ୍ୟକୁ ନଷ୍ଟଭ୍ରଷ୍ଟ କରିବାକୁ ବସିଛନ୍ତି । ସଭ୍ୟତା ସେଠି ନଗ୍ନ, କ୍ରୂର, ଅସଭ୍ୟ ପାଲଟି ଯାଇଛି । ଅଥଚ ଏଇ କମ୍ପାନୀର ମୁଖ୍ୟ ପୋଷକ ଆମେରିକାର ଲୋକେ ଆଜି ୱାଲ୍‌ଷ୍ଟ୍ରିଟ୍ ଦଖଲ ଅଭିଯାନରେ ବାହିରି ଆସିଛନ୍ତି - ସ୍ଲୋଗାନ୍ ଦେଉଛନ୍ତି କମ୍ପାନୀମାନଙ୍କ ଲାଭ ଓ ଲୋଭ ବିରୁଦ୍ଧରେ ! କହୁଛନ୍ତି 'ଆମେ ଅନେଶତ ଭାଗ ।'

କାଶୀପୁରର ପରିବର୍ତ୍ତନକୁ ଆଉ ଦେଖିହେଲା ନାହିଁ । ସେହି ଆମଲୋକଙ୍କ କବଳରୁ କାଶୀପୁରକୁ ବଞ୍ଚାଇ ହେଲାନାହିଁ । ଏବେ ମୁଁ କାଶୀପୁର ଯିବା କମେଇ ଦେଇଛି । ଜାଣିନି ଏହାଦ୍ୱାରା ମୁଁ ଠିକ୍ କରିଛି କି ଭୁଲ୍ କରିଛି । ତାହା ମୁଁ ସମୟ ଉପରେ ଛାଡ଼ି ଦେଇଛି ।



# ଆମ ସଂସଦୀୟ ଗଣତନ୍ତ୍ର ଏବଂ ଜନଗଣଙ୍କ ଆସ୍ଥା

## (ଜୀବନ ଓ ସଂଗ୍ରାମ ସପକ୍ଷରେ ଆନ୍ନାଙ୍କ ସଂଗ୍ରାମ - ଏକ ବିଶ୍ଳେଷଣ)

**ଲିଙ୍ଗରାଜ**

ବ୍ରିଟିଶ୍ ଉପନିବେଶବାଦରୁ ମୁକୁଳିବାର ପଚାଶ ବର୍ଷ ପୂର୍ତ୍ତି (ସୁବର୍ଣ୍ଣ ଜୟନ୍ତୀ!) ଅବସରରେ ୧୯୯୭ ଅଗଷ୍ଟ ୧୫ ତାରିଖଠାରୁ ଭାରତୀୟ ସଂସଦର ଏକ ସପ୍ତାହବ୍ୟାପୀ ସ୍ୱତନ୍ତ୍ର ମିଳିତ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉକ୍ତ ଅଧିବେଶନରେ ବିଭିନ୍ନ ରାଜନୈତିକ ଦଳର ପ୍ରମୁଖ ନେତାମାନେ ଦେଶ ସମ୍ମୁଖୀନ ହେଉଥିବା ବିବିଧ ସମସ୍ୟା ଉପରେ ବେଶ୍ ପ୍ରଭାବଶାଳୀ ଭାଷଣ ଦେଉଥିଲେ ଏବଂ ପରିଶେଷରେ ଏକ ଚଉଦ ସୂତ୍ରୀ ପ୍ରସ୍ତାବ ପାରିତ କରିଥିଲେ । ସବୁସ୍ତରରେ ବଢ଼ି ଚାଲିଥିବା ଭ୍ରଷ୍ଟାଚାର ଏବଂ ରାଜନୀତିରେ ବୃଦ୍ଧି ପାଉଥିବା ଅପରାଧୀକରଣକୁ ନେଇ ଅଧିକାଂଶ ସାଂସଦ ଗଭୀର ଉଦ୍‌ବେଗ ପ୍ରକାଶ କରିଥିଲେ । ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ, ଉକ୍ତ ଅଧିବେଶନ କାଳରେ ତତ୍କାଳୀନ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଏବଂ ଲୋକସଭାର ବାଚସ୍ପତି ସେମାନଙ୍କର ଅଭିଭାଷଣରେ ଦେଶ ସମ୍ମୁଖୀନ ହେଉଥିବା ବିଭିନ୍ନ ପ୍ରମୁଖ ସଂକଟ ବିରୋଧରେ 'ଆନ୍ଦୋଳନ' / 'ସତ୍ୟାଗ୍ରହ' କରିବାକୁ ଏବଂ 'ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ' ଆରମ୍ଭ କରିବାକୁ ଦେଶର ଜନଗଣଙ୍କୁ ଆହ୍ୱାନ ଦେଇଥିଲେ । ଏ କଥାକହିବା ବାହୁଲ୍ୟ ଯେ, ଏହି ଅଧିବେଶନର ସମାପ୍ତି ପରେ ସଂସଦରେ ପାରିତ ଚଉଦ ସୂତ୍ରୀ ପ୍ରସ୍ତାବ କଥା ସମସ୍ତେ ଭୁଲିଗଲେ ଏବଂ ଆମ ଦେଶର ସଂସଦରେ ପ୍ରମୁଖ ରାଜନେତାମାନଙ୍କର ଜ୍ୱାଳାମୁଖୀ ଭାଷଣ ପବନରେ ମିଶିଗଲା ।

ଉପରୋକ୍ତ ଐତିହାସିକ ଘଟଣାର ଠିକ୍ ୧୪ବର୍ଷ ପରେ ଗତ (୨୦୧୧) ବର୍ଷ ଏକ ପୂର୍ବଘୋଷିତ କାର୍ଯ୍ୟକ୍ରମ ଅନୁସାରେ ଅଗଷ୍ଟ ୧୬ ତାରିଖଠାରୁ ଆନ୍ନା ହଜାରେଙ୍କ ନେତୃତ୍ୱରେ ଭ୍ରଷ୍ଟାଚାର ଭଳି ଏକ ପ୍ରମୁଖତମ ସମସ୍ୟାକୁ ନେଇ ଅନଶନ ପରି ସଂପୂର୍ଣ୍ଣ ଅହିଂସାତ୍ମକ ପନ୍ଥାରେ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରାଗଲା । ସର୍ବପ୍ରଥମେ କେନ୍ଦ୍ରରେ କ୍ଷମତାସୀନ ସରକାର ରକ୍ତ ଚାଉଳ ଚୋବାଇଲା ଭଳି କାଣ୍ଡମାନ କଲା ଏବଂ ସଂସଦ

ଭିତରେ ବିଭିନ୍ନ ଦଳର ସଦସ୍ୟମାନେ ପ୍ରାରମ୍ଭରେ ଅତି ଅସହିଷ୍ଣୁ ହୋଇ ଏହି ଆନ୍ଦୋଳନ ବିରୋଧରେ ପ୍ରତିକ୍ରିୟା ପ୍ରକାଶ କରିଥିଲେ । କିନ୍ତୁ ଏକ ସଶକ୍ତ ଜନ ଲୋକପାଳ ଦାବି ନେଇ ଆରମ୍ଭ କରିଥିବା ଏହି ଆନ୍ଦୋଳନ ପ୍ରତି ରାଷ୍ଟ୍ରବ୍ୟାପୀ ଜନସମର୍ଥନର ଲହରୀ ସାମ୍ନାରେ ପରିଶେଷରେ ସଂସଦକୁ ମଧ୍ୟ ମଥାନତ କରିବାକୁ ପଡ଼ିଥିଲା । ଦିଲ୍ଲୀର ରାମଲୀଳା ମୈଦାନରେ ଆନ୍ନା ହଜାରେଙ୍କର ୧୨ଦିନ ବ୍ୟାପୀ ଅନଶନ ଆନ୍ଦୋଳନର ଚାପରେ ସଂସଦ ଏକ ତିନି ସୂତ୍ରୀ 'ସେନ୍ସ ଅଫ୍ ଦି ହାଉସ୍' (ସଂସଦର ଭାବନା) ସର୍ବସମ୍ମତି କ୍ରମେ ପାରିତ କରିବାକୁ ବାଧ୍ୟହେଲା । ଆମ ଦେଶରେ ଗତ ୬ଦଶନ୍ଧି ହେଲା ଚାଲିଥିବା ସଂସଦୀୟ ଗଣତନ୍ତ୍ରର ବିବର୍ତ୍ତନ କ୍ରମରେ ଏହା ଏକ ଅଭୂତପୂର୍ବ ଘଟଣା ବୋଲି ମନେ ହୋଇଥିଲା । ଆନ୍ନା ଆନ୍ଦୋଳନର କଟୁ ସମାଲୋଚକମାନଙ୍କୁ ମଧ୍ୟ ସ୍ୱୀକାର କରିବାକୁ ପଡ଼ିଥିଲା ଯେ ଜନଗଣଙ୍କ ସ୍ୱର ସଡ଼କରେ ଗର୍ଜନର ରୂପନେଇ ସଂସଦରେ ମଧ୍ୟ ଏକ ଶକ୍ତିଶାଳୀ ଗୁଞ୍ଜରଣ ସୃଷ୍ଟି କରିପାରିଲା । ଡିସେମ୍ବର ଶେଷ ସପ୍ତାହରେ ସଂସଦର ଅଧିବେଶନକୁ ବିଶେଷ ଭାବରେ ଘୁଞ୍ଚାଇ ସରକାରଙ୍କ ଦ୍ୱାରା ପ୍ରସ୍ତୁତ ଲୋକପାଳ ବିଲ୍‌କୁ ପେଶ୍ କରାଯାଇ ଯେଉଁଭଳି ରାଜନୀତିକ ନାଟକବାଜି ହେଲା ତାହା କ'ଣ ଅପ୍ରତ୍ୟାଶିତ ଥିଲା ? ଆନ୍ନା ଆନ୍ଦୋଳନର ଦ୍ୱିତୀୟ ବା ଅଗଷ୍ଟ ପର୍ଯ୍ୟାୟରେ ଯେଉଁଭଳି ଜନ ଜାଗରଣ ସୃଷ୍ଟି ହୋଇଥିଲା, ତାର ଚାପରେ ମଥାନତ କରିଥିବା ସଂସଦ ତୃତୀୟ ବା ଡିସେମ୍ବର ପର୍ଯ୍ୟାୟର କାର୍ଯ୍ୟକ୍ରମ ପ୍ରଭାବହୀନ ହୋଇଯିବା କାରଣରୁ ପୁଣି ପୂର୍ବବତ୍ ହୋଇଗଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବିଗତ ୩୨ବର୍ଷ ଭିତରେ ବିଭିନ୍ନ ଦଳର ସରକାର ଅମଳରେ ୮ଥର ପେଶ୍ କରାଯାଇ (ଯେଉଁ ରୂପରେ ହେଉପଛେ) ଲୋକପାଳ ବିଲ୍‌କୁ ପାରିତ କରା ନଯିବା ଘଟଣାର ପୁନରାବୃତ୍ତି ନବମ ଥର ପାଇଁ ହେଲା ।

ଆନ୍ନାଙ୍କ ଦୁଇଟି ପର୍ଯ୍ୟାୟର ଆନ୍ଦୋଳନ ସହ ତୃତୀୟ ପର୍ଯ୍ୟାୟର ଆନ୍ଦୋଳନର ତୁଳନା କରି ଆନ୍ନା ଟିମ୍‌ର ଏକ ରଣନୀତିଗତ ଭୁଲ୍ ହେଲା କି ବୋଲି ଏକ ପ୍ରଶ୍ନ ଉତ୍‌ଥାପନ କରାଯାଇପାରେ । ଏଠାରେ ସ୍ମରଣଯୋଗ୍ୟ ଯେ, ବିଦେଶରେ ଗଚ୍ଛିତ କଳାଧନ ପ୍ରସଂଗକୁ କେନ୍ଦ୍ରକରି ରାଷ୍ଟ୍ରବ୍ୟାପୀ ଜନଜାଗରଣ ସତ୍ତ୍ୱେ ଯୋଗଗୁରୁ ରାମଦେବ ବାବାଙ୍କ ଆନ୍ଦୋଳନକୁ ସଂଚାଳନାଗତ ଅପରିପକ୍ୱତା କାରଣରୁ ଗତ ଜୁନ୍ ମାସରେ କେନ୍ଦ୍ର ସରକାର ଦମନ ଓ ଭଣ୍ଡୁର କରିବାରେ ସଫଳ ହୋଇଥିଲେ । ଏକ ଗାଣତନ୍ତ୍ରିକ ଶାସନ ବ୍ୟବସ୍ଥାରେ ଜନମତ ଜାଗ୍ରତ କରିବାପାଇଁ ଆନ୍ଦୋଳନର ପ୍ରୟୋଗ ବିଷୟକ ଉପରୋକ୍ତ ଦୁଇଟି ପ୍ରସଂଗ ଆଲୋଚନା ଓ ବିତର୍କ ସାପେକ୍ଷ ।

କିନ୍ତୁ ଏହି ପ୍ରସଂଗରେ ସବୁଠାରୁ ବଡ଼ ପ୍ରଶ୍ନ ହେଉଛି ଯେ, ଦେଶ ଓ ଦଶ ସାମ୍ନା କରୁଥିବା ପ୍ରମୁଖ ସମସ୍ୟାବଳୀକୁ ନେଇ ସଂସଦର ଏ ନକାରାତ୍ମକ ଭୂମିକା ସଂସଦୀୟ ଗଣତନ୍ତ୍ରର ଏକ ଅନ୍ତର୍ନିହିତ ଚରିତ୍ର କି ? କିମ୍ୱା ଭାରତର ସଂସଦ ଅକ୍ତିଆର କରିଥିବା ଏହାର ବର୍ତ୍ତମାନ ଚରିତ୍ର ଏଥିପାଇଁ ଦାୟୀ ? ବ୍ରିଟିଶ ସଂସଦୀୟ ବ୍ୟବସ୍ଥାକୁ କଟୁ ସମାଲୋଚନା କରି ମହାତ୍ମାଗାନ୍ଧୀ ଏହାକୁ 'ବନ୍ଧ୍ୟା' ବୋଲି ଅଭିହିତ କରିଥିଲେ । ସଂସଦୀୟ ବ୍ୟବସ୍ଥାର ଜନନୀ ବୋଲାଉଥିବା ବ୍ରିଟିଶ ପାର୍ଲାମେଣ୍ଟର କେନ୍ଦ୍ରୀଭୂତ ଢାଞ୍ଚା, ପୁଞ୍ଜିବାଦୀ ତଥା ସାମ୍ରାଜ୍ୟବାଦୀ ଶୋଷଣ ଆଧାରରେ ଗଢ଼ା ମୁକ୍ତ ବ୍ୟବସ୍ଥାର ବାସ୍ତବ ରୂପକୁ ଅତି ନିକଟରୁ ଦେଖି ଗାନ୍ଧିଜୀ ସେପରି ଏକ କଟୁ ତଥା ଅତିବାଦୀ ମନ୍ତବ୍ୟ ଦେଇଥିଲେ । ବ୍ରିଟିଶ ଉପନିବେଶବାଦରୁ ମୁକ୍ତି ପରେ ଆମ ଦେଶ ସେହି ବ୍ରିଟିଶ ଢାଞ୍ଚାର ସଂସଦୀୟ ଶାସନ ବ୍ୟବସ୍ଥାକୁ ଅନୁସରଣ କରୁଛି । ତେଣୁ ଏ ପ୍ରସଂଗ ଚର୍ଚ୍ଚା କଲାବେଳେ ଗାନ୍ଧିଜୀଙ୍କ ଶହେବର୍ଷ ତଳର ସେ ଉକ୍ତି ମନେପଡ଼ିବା ସ୍ୱାଭାବିକ । ଯେଉଁମାନେ ସଂସଦୀୟ ବ୍ୟବସ୍ଥାକୁ ନୀତିଗତ ଭାବରେ ସଂପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରନ୍ତି, ଗାନ୍ଧିଜୀ, ନିଜର ଏତାଦୃଶ ସମାଲୋଚନା ସତ୍ତ୍ୱେ, ସେମାନଙ୍କଠାରୁ ମୌଳିକ ଭାବେ ଭିନ୍ନ । ଯେଉଁମାନେ ଏହି ବ୍ୟବସ୍ଥାକୁ ସଂପୂର୍ଣ୍ଣ ବିରୋଧ କରନ୍ତି ସେମାନେ କହିବେ ସଂସଦକୁ ଧ୍ୱଂସ କରିଦିଅ । ତାପରେ ବିକଳ୍ପ କ'ଣ ?

ଗତ ଶତାବ୍ଦୀର ମଧ୍ୟ ଭାଗରେ ଭାରତ ଭଳି ଦେଶମାନେ ଉପନିବେଶବାଦରୁ ମୁକ୍ତିଲାଭ କଲାପରେ ନିଜନିଜ ରାଷ୍ଟ୍ର ପରିଚାଳନା ସକାଶେ ଭିନ୍ନଭିନ୍ନ ସ୍ତରର ପ୍ରୟୋଗରେ ରହିଛନ୍ତି । ଗତ ୬ଦଶନ୍ଧି ଭିତରେ ଆମ ଦେଶ ଯେଉଁ ସ୍ତରରେ ପହଞ୍ଚିଛି, ତାହା ଅନ୍ୟାନ୍ୟ ଅନେକ ଦେଶଙ୍କ ସକାଶେ ଉଦାହରଣୀୟ । କାରଣ ଅନେକ ଦେଶରେ ଆଜି ବି ମିଲିଟାରି ବା ଏକଛତ୍ରବାଦୀ ଶାସନ ଚାଲିଛି ଏବଂ ସେଠିକାର ଲୋକମାନଙ୍କ ପାଇଁ ଭାରତ ଭଳି ଏକ ବ୍ୟବସ୍ଥା ମଧ୍ୟ ଈପ୍ସିତ ହୋଇପାରେ । ଆମ ପଡ଼ୋଶୀ ଦେଶ ନେପାଳରେ ମାଓବାଦୀମାନେ ଦୀର୍ଘ ଦୁଇଦଶନ୍ଧିର ସଶସ୍ତ୍ର ସଂଗ୍ରାମ ପରେ ଏକ ବହୁଦଳୀୟ ବ୍ୟବସ୍ଥା ଭିତରେ ରାଷ୍ଟ୍ର ପରିଚାଳନାର ସଂସଦୀୟ ପଥ ସୃଷ୍ଟି କରିବାକୁ ଉଦ୍ୟମରତ ।

ଯେଉଁ ଦେଶର ସଂସଦରେ ୨୬୮ଜଣ ସଦସ୍ୟ ହେଉଛନ୍ତି କୋଟିପତି ଏବଂ ସେମାନେ ନିର୍ବାଚନ ଲଢ଼ିବାବେଳେ ଦଳୀୟ ତଥା ଅନ୍ୟାନ୍ୟ ସ୍ରୋତରୁ କୋଟିକୋଟି ଟଙ୍କା ଖର୍ଚ୍ଚ କରିଥାନ୍ତି, ସେମାନେ ଦୁର୍ନୀତିର ମୂଳୋତ୍ପାଟନ ପାଇଁ ଏକ ସଶକ୍ତ ଲୋକପାଳ ଆଇନ ପ୍ରଣୟନ ବା ବିଦେଶରେ ଗଚ୍ଛିତ କଳାଧନ ଫେରାଇ ଆଣିବାକୁ ଆନ୍ତରିକ ପଦକ୍ଷେପ

ନେବେ ବୋଲି ଆଶା କରିବା ବୃଥା । କିନ୍ତୁ ଏ କଥା ବି ସତ ଯେ ଆମ ଦେଶରେ ଯେହେତୁ ଦଳ ଓ ନେତାମାନଙ୍କୁ ପ୍ରତି ପାଞ୍ଚବର୍ଷରେ ଥରେ ଲୋକମାନଙ୍କ ପାଖକୁ ଭୋଟ୍ ମାଗିବାକୁ ଯିବାକୁ ବାଧ୍ୟ ହେବାକୁ ପଡ଼େ, ପ୍ରବଳ ଜନମତକୁ ସେମାନଙ୍କର ଏକମାତ୍ର ଭୟ । ତେଣୁ ଗତବର୍ଷକ ଭିତରେ ଆନ୍ନା ହଜାରେଙ୍କ ଆନ୍ଦୋଳନ ହେଉ ବା ରାମଦେବ ବାବାଙ୍କ ଅଭିଯାନ; ଦେଶବ୍ୟାପୀ ଜନଗଣଙ୍କ ଭିତରେ ଯେଉଁ ଉଦ୍‌ବେଳନ ସୃଷ୍ଟି କରିଛି, ଭାରତର ରାଜନୀତିକ ଦଳମାନଙ୍କୁ ତାହା ନିଶ୍ଚିତ ଭାବରେ ପ୍ରଭାବିତ କରୁଛି । କେନ୍ଦ୍ର ସରକାର ଲୋକପାଳ ବିଲ୍‌ର ଚିଠା ପ୍ରସ୍ତୁତିରେ ଆନ୍ନାଟିମ୍‌ର ସଦସ୍ୟମାନଙ୍କୁ ସାମିଲ୍ କରିବାଠାରୁ ଆରମ୍ଭ କରି ସଂସଦର ଅଧିବେଶନକୁ ଘୁଞ୍ଚାଇବା ଯାଏ ସରକାର ବାଧ୍ୟ ହେଲେ । ପୂର୍ବରୁ ଘଟୁ ନଥିବା ଅନେକ ଘଟଣା ଘଟିଲା । ବଡ଼ବଡ଼ ନେତା, ଅଫିସର ଓ ପୁଞ୍ଜିପତିମାନଙ୍କୁ ମଧ୍ୟ ଜେଲ୍ ବରଣ କରିବାକୁ ପଡ଼ିଲା । କର୍ଣ୍ଣାଟକରେ ବିଜେପିର ଜଣେ ମୁଖ୍ୟମନ୍ତ୍ରୀଙ୍କୁ ମଧ୍ୟ ଇସ୍ତଫା ଦେବାକୁ ପଡ଼ିଲା । ସେ ଜେଲ୍ ବି ଗଲେ । ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ମାୟାବତୀ ଦୁର୍ନୀତି ଅଭିଯୁକ୍ତ ତାଙ୍କ ମନ୍ତ୍ରୀମଣ୍ଡଳର ୧୨ଜଣ ମନ୍ତ୍ରୀଙ୍କୁ ବାହାର କରିବାକୁ ବାଧ୍ୟ ହେଲେ । ଗତ ବର୍ଷକ ଭିତରେ ଦେଶବ୍ୟାପୀ ଭ୍ରଷ୍ଟାଚାର ବିରୋଧୀ ଜନ ଉଦ୍‌ବେଳନ ପ୍ରକ୍ରିୟାର ଚାପରେ ଏପରି ଅନେକ ଘଟଣାର ଉଲ୍ଲେଖ କରାଯାଇପାରେ । ତେଣୁ ଏକଥା ସ୍ପଷ୍ଟ ଯେ ଜନ ଉଦ୍‌ବେଳନର ଧାରା ଯେତେ ତିଷ୍ଠି ରହିବ ଆମ ଦେଶର ସଂସଦୀୟ ବ୍ୟବସ୍ଥାର ସୀମା ଭିତରେ ପରିବର୍ତ୍ତନ ସମ୍ଭାବନା ସେତିକି ସୃଷ୍ଟି ହୋଇ ଚାଲିଥିବ । ବର୍ତ୍ତମାନର ଶାସକ ଶ୍ରେଣୀ ଅବଶ୍ୟ ସାମ, ଦାନ, ଦଣ୍ଡ, ଭେଦ, ନୀତି ପ୍ରୟୋଗ କରି ଜନ ଆନ୍ଦୋଳନର ଶକ୍ତିମାନଙ୍କୁ ଦୁର୍ବଳ କରିବାକୁ ଚେଷ୍ଟା କରିବ ।

ସେମିତି ଦେଖିବାକୁ ଗଲେ ଭ୍ରଷ୍ଟାଚାର ଏକ ବ୍ୟବସ୍ଥାଗତ ବ୍ୟାପକ ରାଜନୀତିକ ପ୍ରସଂଗ । ଏହାର ଚେର ସର୍ବବ୍ୟାପୀ । କିନ୍ତୁ ଗତବର୍ଷର ଆନ୍ଦୋଳନ କାଳରେ 'ଜନ ଲୋକପାଳ ଆଇନ୍'ର ଦାବି ଜନଗଣଙ୍କ ମାନସରେ ଭ୍ରଷ୍ଟାଚାର ବିରୋଧୀ ଚେତନାକୁ ଉଦ୍‌ବେଳିତ କରି ଉଗ୍ରରୂପ ଦେଇଛି । ଏହି ପର୍ଯ୍ୟାୟରେ ବଡ଼ ସଂଖ୍ୟାରେ ଶିକ୍ଷିତ ଯୁବା ମଧ୍ୟବର୍ଗ ବିଶେଷ ଭାବରେ ସକ୍ରିୟ ହୋଇଥିଲା । ସେମାନଙ୍କ ଚେତନାରେ ଏକ ବ୍ୟବସ୍ଥା ବିରୋଧୀ ବୀଜବପନ ହୋଇପାରିଛି । କିନ୍ତୁ ଏହି ଆନ୍ଦୋଳନର ଧାରା କେତେ ଆଗକୁ ଯିବ ତା ଉପରେ ଭବିଷ୍ୟତର ରୂପରେଖ ନିର୍ଭର କରିବ ।

ଯେଉଁମାନେ ଭ୍ରଷ୍ଟାଚାର ବିରୋଧୀ ଆନ୍ଦୋଳନକୁ ସିଭିଲ୍ ସୋସାଇଟି (ପାଶ୍ଚାତ୍ୟ ରାଜନୀତିକ ସମାଜଶାସ୍ତ୍ରର ପ୍ରକୃତ ପରିଭାଷା ଅନୁସାରେ 'ଅଣ-ରାଜନୀତିକ ସମାଜ')ର

ଆନ୍ଦୋଳନ ବୋଲି ଏକ ସୀମିତ ବିଚାର ଭିତରେ ଦେଖିବେ, ସେମାନଙ୍କର ଭୂମିକା ସୀମିତ ହୋଇଯିବ । ଆନ୍ଦୋଳନରେ ଗତିରୋଧ ସୃଷ୍ଟିହେବା ମଧ୍ୟ ନିଶ୍ଚିତ । ଭ୍ରଷ୍ଟାଚାରର ବ୍ୟବସ୍ଥାଗତ ତଥା ନୀତିଗତ ଦିଗ ସାଂଗକୁ ନୈତିକ ଦିଗ ମଧ୍ୟ ଯୋଡ଼ି ହୋଇ ରହିଛି । ଯେଉଁମାନେ ଏହି ଆନ୍ଦୋଳନକୁ ଏକ ଶକ୍ତି ଭାବେ ଦେଖିପାରିବେ, ଯେଉଁ ଶକ୍ତିକୁ ଆଗକୁ ନେଇ ହେବ, ସେମାନେ ଏକ ସକାରାତ୍ମକ ପରିବର୍ତ୍ତନର ସ୍ୱପ୍ନ ବି ଦେଖିପାରିବେ । ଜନଗଣଙ୍କ ଅନ୍ୟାନ୍ୟ ପ୍ରମୁଖ ମୌଳିକ ସମସ୍ୟାକୁ ନେଇ ଆନ୍ଦୋଳନଗୁଡ଼ିକ ସହ ଏହା ଯେତେ ସେତୁ ସୃଷ୍ଟି କରିପାରିବ, ଏହା ସେତେ ବିସ୍ତାରିତ ହେବ ।

ଆମ ଦେଶର ସଂସଦୀୟ ବ୍ୟବସ୍ଥାର ସଂଚାଳନ କରୁଥିବା ରାଜନୀତିକ ସମାଜ (ପଲିଟିକାଲ୍ ସୋସାଇଟି) ପାଇଁ ମଧ୍ୟ ଏହା ଏକ ପରୀକ୍ଷାର ସମୟ । ଭ୍ରଷ୍ଟାଚାର ବିରୋଧରେ ମୁଣ୍ଡ ଟେକୁଥିବା ଜନ ଆନ୍ଦୋଳନମାନଙ୍କୁ କଳେବଳେ କୌଶଳେ ଦମନ କରି ଦେବାରେ ସେମାନଙ୍କର ସଫଳତା ରହିଛି ବୋଲି ଭାବିବା ସାମୟିକ ଆଶ୍ୱସ୍ତି ହୋଇପାରେ, ମାତ୍ର ଦେଶର ଭବିଷ୍ୟତ ଦୃଷ୍ଟିରୁ ତାର ପରିଣତି ଘାତକ ହେବ । ସଂସଦୀୟ ବ୍ୟବସ୍ଥା ପ୍ରତି ଜନଗଣଙ୍କ ଆସ୍ଥା ସଂପୂର୍ଣ୍ଣ ଲୋପ ପାଇଗଲେ ଦେଶ ଓ ସମାଜରେ ଅରାଜକତା ବ୍ୟାପିଯିବା ସୁନିଶ୍ଚିତ ।



# ଏବେ ନିରୋଳା ଈଶ୍ୱରଙ୍କ ରତୁ

ଶୈଳେନ୍ଦ୍ର ଦ୍ୱିବେଦୀ

ନିକଟରେ (ଡିସେମ୍ବର ୧୩, ୨୦୧୧) 'ୟୁରୋପିଆନ୍ ସେଣ୍ଟର ଫର୍ ନ୍ୟୁକ୍ଲିଅର ରିସର୍ଚ୍ଚ'ର ବିଜ୍ଞାନୀମାନେ ଏକ ସଂକ୍ଷିପ୍ତ ଅଥଚ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ଘୋଷଣା କରିଛନ୍ତି । ଏହା ଯଦିଓ ଚୂଡ଼ାନ୍ତ ନୁହେଁ (ଉପଲବ୍ଧ ତଥ୍ୟ ଅନୁଶୀଳନ ପାଇଁ ପ୍ରାୟ ବର୍ଷେ ଲାଗିଯିବ), ସେମାନେ ଆଶାବାଦୀ ଯେ ୫୦ବର୍ଷ ଧରି ସାରା ପୃଥିବୀର ବୈଜ୍ଞାନିକମାନେ ଯେଉଁ ଆବିଷ୍କାର ପାଇଁ ଉଦ୍ୟମରତ, ଖୁବ୍ ସମ୍ଭବ ସେମାନେ ତାହାର ନିକଟବର୍ତ୍ତୀ ହେବାକୁ ଯାଉଛନ୍ତି । ପାଠକମାନଙ୍କ ନିମନ୍ତେ ସ୍ପଷ୍ଟ କରୁଛି ଯେ 'ସର୍ନ'ର ବୈଜ୍ଞାନିକମାନେ ଯେଉଁ ଆବିଷ୍କାରର ପାଖାପାଖି ହୋଇଛନ୍ତି ବୋଲି ଆଲୋଚିତ ହେଉଛି ତାହା ହେଉଛି 'ହିଗ୍‌ସ ବୋଜନ୍' । ଅନ୍ୟ ଅର୍ଥରେ 'ଗଡ୍ ପାର୍ଟିକଲ୍' । ଆପଣ କହିପାରନ୍ତି 'ଈଶ୍ୱର କଣିକା' । ୧୯୬୪ରେ ପଦାର୍ଥ ବିଜ୍ଞାନୀ ପ୍ରଫେସର ପିଟର୍ ହିଗ୍‌ସ ଏବଂ ହେରାଲ୍ଡ ଗୁରାଲ୍‌ନିକ୍ ସି.ଆର.ହାଗେନ୍, ଟିମ୍ କିବ୍‌ଲ (ମିଳିତଭାବେ) ଏବଂ ଫ୍ରାଙ୍କୋଇ ଏଙ୍ଗଲର୍ଟ ଏବଂ ରବର୍ଟ ବ୍ରାଉଟ୍ ଉପସ୍ଥାପନ କରିଥିଲେ କଣିକାମାନଙ୍କ ଉପରେ ପ୍ରାୟ ସମାନ ମତ ରଖୁଥିବା ତିନିଟି ପୃଥକ୍ ଗବେଷଣାତ୍ମକ ସନ୍ଦର୍ଭ, ଯାହା ପ୍ରସିଦ୍ଧ 'ଡିଗ୍‌ସ ବୋଜନ୍' ତତ୍ତ୍ୱ ଭାବରେ ପରିଚିତ । ତେବେ ହିଗ୍‌ସ ବୋଜନ୍ ସେବେ ଠାରୁ ଏକ ଅପ୍ରମାଣିତ ତତ୍ତ୍ୱ ବା 'ହାଇପୋଥିସିସ୍' ହୋଇ ରହିଛି । ଆସନ୍ତୁ, ଏବେ ସାମାନ୍ୟ ବିସ୍ତାରରେ ଯିବା ମୂଳ ପ୍ରସଂଗକୁ ।

ବୈଜ୍ଞାନିକମାନଙ୍କର ବିଶ୍ୱାସ ଯେ ପ୍ରାୟ ୧୩.୭ ବିଲିୟନ୍ ବର୍ଷ ପୂର୍ବେ ବିଗ୍‌ବ୍ୟାଙ୍ଗ୍ (ଯେଉଁ ମହାବିସ୍ଫୋରଣରୁ ସୃଜନ ଆରମ୍ଭ ହୋଇଥିଲା) ପରେପରେ ଅତି କମ୍ ସମୟ ପାଇଁ (ଏକ ସେକେଣ୍ଡର ଏକ ନିୟୁତ ଭାଗରୁ ମାତ୍ର କେତେ ଭାଗ) ତତ୍କାଳୀନ ଜଗତର ତାପମାତ୍ରା ଥିଲା ପାଖାପାଖି ୨୦୦୦ ବିଲିଅନ୍ ଡିଗ୍ରୀ ସେଲ୍‌ସିଅସ୍ ଯାହା ସୂର୍ଯ୍ୟଙ୍କ ଅଭ୍ୟନ୍ତର ତାପମାତ୍ରାର ୧ଲକ୍ଷ ଗୁଣରୁ ଅଧିକ । ତେବେ ଚମତ୍କାର ଦେଖନ୍ତୁ । ସୃଜନର ସେଇ ଆଦି ଲଗ୍ନରେ, ସମୟର ଭୂମିଷ୍ଠ ହେବା ମୁହୂର୍ତ୍ତରେ ହିଁ ବ୍ରହ୍ମାଣ୍ଡର ପ୍ରାଥମିକ

ସଂରଚନା ଶେଷ ହୋଇ ସାରିଥିଲା । ଅର୍ଥାତ୍, ମୁହୂର୍ତ୍ତର ଭଗ୍ନାଂଶରେ ସୃଜିଥିଲା ଅନ୍ତରୀକ୍ଷ, ଗ୍ରହ, ନକ୍ଷତ୍ର-ପୁଣି ତଥାପି ଢେର୍ ଦୁରନ୍ତ ହେଲେ ହେଁ ମୂଳଦୁଆ ପଡ଼ି ସାରିଥିଲା ସୃଷ୍ଟିରେ କ୍ଷୁଦ୍ରତମ ଜୀବସତ୍ତାର (ମାଇକ୍ରୋବ୍) । ବିସ୍ମୟକର ଥିଲା ସେ ଅନନ୍ୟ ଶିଳାନ୍ୟାସ । ଜଗତ୍ ନିର୍ମାଣକାଳରେ ମହାଉତ୍ତାପର (କ୍ୱାର୍କ-ଗ୍ଲୁଅନ୍‌ପ୍ଲାଜ୍‌ମା) ଏଇ ସ୍ଥିତି ଥିଲା ଏକ ବହଳିଆ 'ସୁପ୍' ପରି । ଏ କଥା ବି ବିଶ୍ୱାସ କରାଯାଏ ଯେ ସେଇ ମୁହୂର୍ତ୍ତ ଖଣ୍ଡର ଅବସାନ ଅନ୍ତେ ସୃଷ୍ଟି କ୍ରମଶଃ ଶୀତଳ ହେବା ଆରମ୍ଭ ହେଲା । ପଦାର୍ଥର ନିର୍ମାଣ ପାଇଁ ପ୍ରକ୍ରିୟା ବି ଆରମ୍ଭ ହେଲା । କ୍ୱାର୍କ୍‌ମାନେ ଏକତ୍ର ହୁଅନ୍ତେ ପ୍ରସ୍ତୁତ ହେଲା ପ୍ରୋଟନ୍ ଏବଂ ନ୍ୟୁଟ୍ରନ୍ ଆଖିର ପଲକରେ । ତେବେ ଅଣୁର ଉଦ୍ଭବ ହୋଇଥିଲା ଏଇ ମହା ଘଟନାର ଅନ୍ତତଃ ୩,୮୦,୦୦୦ ବର୍ଷ ପରେ । ଆଉ ୧.୬ ନିୟୁତ ବର୍ଷ ଲାଗିଥିଲା ମାଧ୍ୟାକର୍ଷଣ ଶକ୍ତିକୁ ତାର ନିୟନ୍ତ୍ରଣ ହାସଲ ପାଇଁ । ମଣିଷ ଆସିବା ପର୍ବ ଆହୁରି ଢେର୍ ଡେରିଥିଲା ସେତେବେଳକୁ, କାରଣ ଆମେ ଯେଉଁ ସବୁ ଉପାଦାନରେ ଗଢ଼ା (ଯଥା କାର୍ବନ, ଅମ୍ଳଜାନ, ଲୌହ ଆଦି) ସେସବୁ ତଥାପି ଆଉଟି ହେଉଥିଲେ ଦୂର କେଉଁ ନକ୍ଷତ୍ର ଗର୍ଭରେ । ପଦାର୍ଥ ବିଜ୍ଞାନରେ କଣିକା ତତ୍ତ୍ୱ ସହିତ ସୃଜନ ପ୍ରକ୍ରିୟା ବାବଦରେ ପ୍ରାୟ ପ୍ରମାଣସିଦ୍ଧ ସାବ୍ୟସ୍ତ ହୋଇଥିବା 'ଷ୍ଟାଣ୍ଡାର୍ଡ଼ ମଡେଲ' (ଗତ ଶତାବ୍ଦୀର ଷାଠିଏ ଏବଂ ସତୁରି ଦଶକରେ ବିକଶିତ) ତତ୍ତ୍ୱ ଅନୁଯାୟୀ ସୃଜନ ଉଷାକାଳରେ ଉପସ୍ଥିତ ଥିଲେ ୧୨ଟି ମୌଳିକ କଣିକା ଯାହାଙ୍କୁ ପରିଚାଳିତ କରୁଥିଲେ ଶକ୍ତିର ଚାରିଟି ସ୍ରୋତ / ଉତ୍ସ : (୧) ମାଧ୍ୟାକର୍ଷଣ (୨) ଇଲେକ୍‌ଟ୍ରୋଷ୍ଟାଟିକ୍ (୩) ଷ୍ଟ୍ରଙ୍ଗ୍ ବା ଶକ୍ତିଶାଳୀ (୪) ୱିକ୍ ବା ଦୁର୍ବଳ । ତେବେ ଷ୍ଟାଣ୍ଡାର୍ଡ଼ ମଡେଲ୍‌ରେ ମାଧ୍ୟାକର୍ଷଣ ଶକ୍ତିର ପ୍ରଭାବ ସମ୍ବନ୍ଧରେ କିଛି କୁହାଯାଇ ନାହିଁ । ଏ କ'ଣ ବୋଜନ୍ ? ବାହକ କଣିକା ଭାବରେ ଯଦିଓ 'ଗ୍ରାଭିଟନ୍'ର ପରିକଳ୍ପନା କରାଯାଇଛି, ଏ ଯାଏଁ ଗ୍ରାଭିଟନ୍‌ର ଆବିଷ୍କାର ହୋଇପାରିନାହିଁ । ମଡେଲ୍‌ଟି ନିର୍ଭରଯୋଗ୍ୟ ହେଲେ ମଧ୍ୟ ସ୍ୱୟଂସଂପୂର୍ଣ୍ଣ ନ ହେବାର ଅନ୍ୟାନ୍ୟ କାରଣ ମାନ ମଧ୍ୟ ରହିଛି । ଯାହାକୁ ଆମେ ବ୍ରହ୍ମାଣ୍ଡ ବୋଲି କହୁଛେ, ଅର୍ଥାତ୍ ଗ୍ରହ ନକ୍ଷତ୍ର, ଛାୟାପଥ, ଆମ ଜୀବନଜଗତ, ଏ ସମସ୍ତ ସୃଷ୍ଟିର ସଂପୂର୍ଣ୍ଣ ପରିଚୟ ନୁହଁନ୍ତି । ମୂଳସୃଷ୍ଟିର ଏମାନେ ଅତିବେଶିରେ ଚାରିଭାଗ ମାତ୍ର । ଅନ୍ୟ ଅର୍ଥରେ ଆମକୁ ଦେଖା ଯାଉଥିବା ବା ଜ୍ଞାତସାରରେ ଥିବା ୪ ଭାଗ ତୁଳନାରେ ସୃଷ୍ଟି ଢେର୍ ବିପୁଳ । ଶୂନ୍ୟ ବି ତତୋଽଧିକ ବିପୁଳ । ଦୃଶ୍ୟ / ଜ୍ଞାତ ଠାରୁ ଅଦୃଶ୍ୟ / ଅଜ୍ଞାନର ଆକର୍ଷଣ ସେଇ ଦୃଷ୍ଟିରୁ ଅଧିକ ତୀବ୍ର । ହଁ, ଯାହା ଅବଶିଷ୍ଟ ୯୬ଭାଗ,

ତହିଁରୁ ସିଂହଭାଗ ହେଉଛି ଅଜ୍ଞାତ ଶକ୍ତି (ଡାର୍କ୍ ଏନର୍ଜି) ଏବଂ ବାକି ଅଜ୍ଞାତ ପଦାର୍ଥ (ଡାର୍କ୍ ମ୍ୟାଟର୍) । ସୃଷ୍ଟିର ବିନ୍ୟାସ ବେଳାରେ ଏବଂ କ୍ରମ ବିବର୍ତ୍ତନରେ ଏମାନଙ୍କର ଭୂମିକା ଅବିକଳ କ'ଣ ଥିଲା ସେ ସଂପର୍କରେ ଷ୍ଟାଣ୍ଡାର୍ଡ ମଡେଲ୍ ନିରବ ।

ଆସନ୍ତୁ ପୁଣି ଫେରିବା ହିଗ୍‌ସଙ୍କ ପାଖକୁ । ହିଗ୍‌ସ ତତ୍ତ୍ୱ ଅନୁଯାୟୀ ବିଗ୍‌ବ୍ୟାଙ୍ଗ ଉପରାନ୍ତ ସୃଷ୍ଟି ଯେବେ ଶୀତଳ ହେବା ଆରମ୍ଭ ହେଲା, ସେଇ ପ୍ରକ୍ରିୟା ସହିତ ସମାନ୍ତରାଳ ହୋଇ ସୃଷ୍ଟି ହୋଇଥିଲା 'ହିଗ୍‌ସ କ୍ଷେତ୍ର' ବା ହିଗ୍‌ସ ଫିଲ୍‌ଡ । ତେଣିକି ଯେଉଁ କଣିକା ଏଇ କ୍ଷେତ୍ରର ସଂସ୍ପର୍ଶରେ ଆସିଲା ହିଗ୍‌ସ କଣିକା ପ୍ରଭାବରେ ତାହା ପ୍ରାପ୍ତ ହେଲା ବସ୍ତୁତ୍ୱ । ଯେଣୁ ବ୍ରହ୍ମାଣ୍ଡକୁ ସଂପ୍ରସାରିତ ଥିଲା ଏଇ ଅଦୃଶ୍ୟ କ୍ଷେତ୍ର, ସୁତରାଂ ଏଇ ପରିବର୍ତ୍ତନ ସର୍ବତ୍ର ଘଟିଲା । କିନ୍ତୁ ଷ୍ଟାଣ୍ଡାର୍ଡ ମଡେଲ୍‌କୁ ନେଇ ଉପ ଆଣବିକ ସ୍ତରରେ ବସ୍ତୁତ୍ୱ ପ୍ରସଂଗରେ ସମସ୍ୟାଟି ରହିଛି । ଅର୍ଥାତ୍ ବିଗ୍‌ବ୍ୟାଙ୍ଗ ଉତ୍ତାରୁ ସଂପ୍ରସାରଣର ଧାରାକୁ ତ ବୁଝି ହେଉଛି, ହେଲେ କଣିକାମାନେ ଠିକ୍ କେଉଁ ପ୍ରକ୍ରିୟା ଯୋଗୁଁ ସେମାନଙ୍କ ବସ୍ତୁତ୍ୱ ପ୍ରାପ୍ତ ହେଲେ ମଡେଲ୍ ସେ କଥା ସ୍ପଷ୍ଟ କରିନାହିଁ । ଯଦି ବସ୍ତୁତ୍ୱ ନଥାନ୍ତା, ସୃଜନ ପ୍ରକ୍ରିୟା ଏକଦମ୍ ବିଗିଡ଼ି ଯାଇଥାନ୍ତା । ହିଗ୍‌ସ ତତ୍ତ୍ୱରେ ଏହାର ଉତ୍ତର ନିହିତ । ପୁଣି ଏହା ବାଦ୍ କଣିକାର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ବୋଲି କୁହାଯାଇଛି । ତାହା ହେଉଛି ସୃଷ୍ଟି ନିର୍ମାଣ କାଳରେ ସଭିଙ୍କ ଭିତରେ (ଅନ୍ୟ କଣିକାମାନଙ୍କ ମଧ୍ୟରେ) ସମନ୍ୱୟ ପ୍ରତିଷ୍ଠା; ସଭିଙ୍କୁ ଗୋଟିଏ ମହାନିୟମର ଅନ୍ତର୍ଭୁକ୍ତ କରିବାର ପ୍ରୟାସ । ପାଠକେ, ମହାକାଳ ନିରବରେ ଖୁବ୍ ସମ୍ଭବ ତାହାହିଁ କରି ଚାଲିଥିଲା । ସାରା ବ୍ରହ୍ମାଣ୍ଡରେ ପରିବ୍ୟାପ୍ତ ହିଗ୍‌ସ କ୍ଷେତ୍ର କେତେକାଂଶରେ ଥିଲା ବୈଦ୍ୟୁତିକ ଚୁମ୍ବକୀୟ କ୍ଷେତ୍ରପରି । କଣିକାମାନେ ଯେତେବେଳେ ସେଇ କ୍ଷେତ୍ର ଦେଇ ଗତି କରୁଥିଲେ ସେମାନେ ଏହାର ସଂସ୍ପର୍ଶରେ ବସ୍ତୁତ୍ୱ ପ୍ରାପ୍ତ ହେଉଥିଲେ । ଅନ୍ୟ ଅର୍ଥରେ ଏହା ଥିଲା ଅନୁବନ୍ଧନର ଅଦ୍ଭୁତ ପ୍ରକ୍ରିୟା । ଉପ ଆଣବିକ ସ୍ତରରେ ଘଟୁଥିବା ଏଇ ପ୍ରଚ୍ଛନ୍ନ ସୂକ୍ଷ୍ମ ପ୍ରକ୍ରିୟା ଯାହା ହିଗ୍‌ସ ତତ୍ତ୍ୱ ଉପସ୍ଥାପନ କରିଛି, ତାହାକୁ ଷ୍ଟାଣ୍ଡାର୍ଡ ମଡେଲ୍‌ର ଏକ ନିରୁଦ୍ଦିଷ୍ଟ ସଂଯୋଗ ଭାବେ ବୈଜ୍ଞାନିକମାନେ ଅବଶ୍ୟ ଗ୍ରହଣ କରି ଆସିଛନ୍ତି (ଏହାର ମୁଖ୍ୟ ଶ୍ରେୟ ଯାଏ ସେଲ୍‌ଡନ୍, ଷ୍ଟିଭେନ୍ ଏବଂ ୱିନ୍‌ବର୍ଗଙ୍କୁ । ସମସ୍ତେ ନୋବେଲ୍ ବିଜେତା) । ତଥାପି ପରୀକ୍ଷଣରେ ଏହା ପ୍ରମାଣିତ ହୋଇପାରି ନାହିଁ ।

'ସର୍ନ' ବିଜ୍ଞାନୀମାନଙ୍କ ମତ ଯେ ନିକଟରେ ହିଗ୍‌ସ ବୋଜନ୍‌ର (ଏହାର ସ୍ଥିତିର) ଗୋଟାଏ ଝଲକ ମାତ୍ର ମିଳିଛି 'ଆଟ୍‌ଲାସ୍' ଏବଂ 'ସିଏମ୍‌ଏସ୍'ର ପୃଥକ

ଅନୁଶୀଳନରୁ । ଆଲ୍‌ପସ୍ ପର୍ବତମାଳା ଅଭ୍ୟନ୍ତରରେ ୧୦୦ ମିଟର ଗଭୀରରେ (ଜେନେଭା) ସ୍ଥାପିତ 'ଲାର୍ଜ ହେଡ୍ରନ୍ କୋଲାଇଡର' (ଏଲ୍‌ଏଚସି)ରେ ଘଟୁଥିବା କଣିକା ସଂଘାତ ଭିତରେ ଠାବ କରାଯାଇଛି ସେଇ ରହସ୍ୟମୟ ଏବଂ ଅତ୍ୟନ୍ତ କ୍ଷଣସ୍ଥାୟୀ ସତ୍ତାର ସଂକେତକୁ । ଏଲ୍‌ଏଚ୍‌ସିରେ ବୈଜ୍ଞାନିକମାନେ ପ୍ରୋଟନ୍‌ମାନଙ୍କ ମଧ୍ୟରେ ସଂଘାତ ସୃଷ୍ଟି କରୁଛନ୍ତି ଏକ ସେକେଣ୍ଡରେ ନିୟୁତ ନିୟୁତ ଥର । ଅତି ଶକ୍ତିଶାଳୀ ଚୁମ୍ବକୀୟ କ୍ଷେତ୍ର ଦ୍ୱାରା ପରୀକ୍ଷଣରେ ପ୍ରୋଟନ୍‌ମାନଙ୍କ ଉଦ୍ଦିଷ୍ଟ ଗତି ତ୍ୱରଣ ବହୁଗୁଣ ବୃଦ୍ଧି କରାଯାଉଛି, ଯାହା ଆଲୋକର ଗତି ସହିତ ପାଖାପାଖି । ପ୍ରୋଟନମାନଙ୍କ ଶକ୍ତି ପହଞ୍ଚୁଛି ସାତ ଟ୍ରିଲିୟନ୍ ଇଲେକ୍ଟ୍ରନ ଭୋଲ୍‌ଟରେ । 'ସର୍ନ' ବୈଜ୍ଞାନିକମାନଙ୍କ ସୂଚନା ଯେ ଏଯାଏଁ ସେମାନେ ହିଗ୍‌ସ ବୋଜନ୍‌କୁ ଆବିଷ୍କାର କରିନାହାନ୍ତି ସତ, କିନ୍ତୁ ଏମିତି ଏକ ନୂତନ କଣିକାର ଆଭାସ ମିଳିଛି ଯାହା ପ୍ରୋଟନ୍‌ଠାରୁ ଅନ୍ତତଃ ୧୨୫ଗୁଣ ବଡ଼ । ତେବେ ଏ ବାବଦରେ ତଥ୍ୟ ପର୍ଯ୍ୟାପ୍ତ ନୁହେଁ ଏବଂ ଏଥିପାଇଁ ବିଜ୍ଞାନକୁ ଆହୁରି କଠିନ ପରୀକ୍ଷାରୁ ଉତୁରିବା ପାଇଁ ପଡ଼ିବ । ଆଉ ଯଦି ହିଗ୍‌ସ ବୋଜନ୍ ଆବିଷ୍କାର ହୋଇ ନପାରିଲା, ତାହା ବି ପଦାର୍ଥ ବିଜ୍ଞାନ ପାଇଁ କିଛି କମ୍ ରୋମାଞ୍ଚକର ହେବନାହିଁ । ବୈଜ୍ଞାନିକମାନଙ୍କ ମତ ଯେ ୧୦ ବିଲିୟନ୍ ଡଲାର ବ୍ୟୟରେ ଏଲଏଚସି ପରୀକ୍ଷଣରୁ ଏ ବାବଦରେ ଠିକ୍ ଉତ୍ତର ନ ମିଳିଲେ ବିଜ୍ଞାନ ସମ୍ବନ୍ଧରେ ଆମ ଧାରଣା ତ ବଦଳିବ, ତେବେ ତା ସାଂଗକୁ ସ୍ପଷ୍ଟତର ହେବ ଯେ ସୃଜନ ପ୍ରକ୍ରିୟା ଆମ ଅନୁମାନଠୁ ଅଧିକ ଜଟିଳ । ପାଠକେ, ପ୍ରଫେସର୍ ହିଗ୍‌ସ ବୁଢ଼ା ହୋଇଗଲେଣି । ଏ ତତ୍ତ୍ୱ ନିର୍ଦ୍ଦିଷ୍ଟ ଭାବରେ ତାଙ୍କ ନିଜର ନ ହୋଇଥିବାରୁ 'ହିଗ୍‌ସ ବୋଜନ' ପ୍ରୟୋଗ ଶୁଣିବାକୁ ତାଙ୍କୁ ଭଲ ଲାଗେନାହିଁ । ତେବେ 'ସର୍ନ୍'ର ଚୂଡ଼ାନ୍ତ ଆବିଷ୍କାର ଘୋଷଣା ହେବା ପର୍ଯ୍ୟନ୍ତ ତାଙ୍କର ବଞ୍ଚି ରହିବାକୁ ଭାରି ଇଚ୍ଛା ବୋଲି ସେ କହିଛନ୍ତି ।

ହିଗ୍‌ସ ବୋଜନ୍‌କୁ 'ଗଡ୍ ପାର୍ଟିକଲ୍' ଆଖ୍ୟା ଦେବାରେ ପ୍ରକୃତରେ କିନ୍ତୁ ହାତ ଥିଲା ନୋବେଲ୍ ବିଜେତା ପ୍ରଫେସର ଲିଅନ୍ ମ୍ୟାକ୍ସ ଲିଡରମ୍ୟାନ୍‌ଙ୍କର (ଜନ୍ମ : ୧୯୨୨) । ୧୯୯୩ରେ ପ୍ରକାଶିତ ହୋଇଥିଲା ତାଙ୍କର ଏକ ଲୋକପ୍ରିୟ ବିଜ୍ଞାନ ପୁସ୍ତକ – 'ଦି ଗଡ୍ ପାର୍ଟିକଲ୍-ଇଫ୍ ୟୁନିଭର୍ସ ଇଜ୍ ଦି ଆନ୍‌ସର, ହ୍ୱାଟ୍ ଇଜ୍ ଦି କ୍ୱେଶ୍ଚିନ୍ ? / 'ଯଦି ବ୍ରହ୍ମାଣ୍ଡ ହେଉଛି ଉତ୍ତର, ତେବେ ପ୍ରଶ୍ନଟି କ'ଣ ?' ପାର୍ଟିକଲ୍ ଫିଜିକ୍ସ (କଣିକା ତତ୍ତ୍ୱ) ଉପରେ ଆଧାରିତ ଏହି ବହିରେ ଆଲୋଚନା ହୋଇଛି । ଡେମୋକ୍ରିଟସ୍‌ଙ୍କଠାରୁ

ଆରମ୍ଭ କରି ବିଂଶ ଶତାବ୍ଦୀର ପ୍ରମୁଖ ବୈଜ୍ଞାନିକମାନଙ୍କ ଅବଦାନ ଉପରେ । ପ୍ରସଂଗକ୍ରମେ ଲିଡରମ୍ୟାନ୍ ଅବତାରଣା କରିଛନ୍ତି ହିଗ୍ସ ବୋଜନ୍‌ର । ସେଇ ପରିପ୍ରେକ୍ଷୀରେ ଅପ୍ରମାଣିତ ଏବଂ ରହସ୍ୟମୟ ଏଇ ସତ୍ତାକୁ ସେ କହିଛନ୍ତି 'ଗଡ୍‌ସ ପାର୍ଟିକଲ୍' ବା 'ଈଶ୍ୱର କଣିକା' । ସେ ଲେଖିଛନ୍ତି, 'ଅଦ୍ୟାବଧି ଅନାବିଷ୍କୃତ ଈଶ୍ୱର କଣିକା ପଦାର୍ଥ ବିଜ୍ଞାନକୁ ବୁଝିବାରେ ପଦାର୍ଥର ନିର୍ମାଣକୁ ଅନୁଶୀଳନ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରଖେ ।' ପରେ ମଜାରେ ଅବଶ୍ୟ ସେ ଏକଥା କହିଥିଲେ ଯେ ଯେଉଁ ରହସ୍ୟମୟ ସତ୍ତା ବିଜ୍ଞାନକୁ ଆଖିମିଟିକା ମାରି ନିରୁଦ୍ଦିଷ୍ଟ ହୋଇ ରହିଛି ଏବଂ ପର୍ଯ୍ୟାପ୍ତ ଅର୍ଥବ୍ୟୟର କାରଣ ପାଲଟିଛି, ସେଇ କଣିକାକୁ ସେ 'ଗଡ୍ ଡ୍ୟାମ୍ ପାର୍ଟିକଲ୍' ବୋଲି ହୁଏତ କହିପାରିଥାନ୍ତେ, ଅର୍ଥାତ୍ ତାକୁ ରୀତିମତ ଗାଳି ବି ଦେଇପାରିଥାନ୍ତେ, ମାତ୍ର ସେମିତି କରିଥିଲେ ବହିଟି ପ୍ରକାଶ କରିବା ପାଇଁ ହୁଏତ ପ୍ରକାଶକ ଆପତ୍ତି ଉଠାଇଥାନ୍ତେ । ପାଠକେ, ଈଶ୍ୱର କଣିକାର ଆବିଷ୍କାର ୨୦୧୨ରେ ହୋଇପାରେ, ନ ହୋଇ ବି ପାରେ, କିନ୍ତୁ ଆମକୁ ସ୍ୱୀକାର କରିବା ପାଇଁ ପଡ଼ିବ ଯେ ବିଜ୍ଞାନ ଅନ୍ତତଃ ଈଶ୍ୱରଙ୍କ ଅଗଣାକୁ ପୁଣିଥରେ ନେଇ ଆସିଛି ଆପଣା ଅଗ୍ରଗତି ସମେତ ଅନ୍ତଃସ୍ଥ ଅସହାୟତାକୁ । ସୃଷ୍ଟିତତ୍ତ୍ୱକୁ ଭେଦିବାର ପ୍ରୟାସ ଜାରି ରହିଛି । ଜଣେ ପ୍ରସିଦ୍ଧ ଜର୍ମାନ୍ ଲେଖକ ଥରେ କହିଥିଲେ ଯେ ସଂସାରରେ ଏମିତି କିଛି ଅଛି, ଯାହାକୁ ଦେଖି ଆମେ ବିସ୍ମୟ ବିମୂଢ଼ ହେଉ, କିନ୍ତୁ ଚେଷ୍ଟାକଲେ ବି ତାହା କେମିତି ସମ୍ଭବ ହେଲା ସେ ସଂପର୍କରେ ଆମର ସକଳ ଜ୍ଞାନ ଅକୁଳାଣ ରହିଯାଏ । ଅଜ୍ଞତାର ତାହା ହିଁ ଅସଲ ପରିଚୟ । ଜ୍ଞାତ-ଅଜ୍ଞାତର ଧୂମାଭ ସୀମାରେଖାରେ ତାହାହିଁ ଗୋଧୂଳି । କିଏ ଜାଣେ, ଈଶ୍ୱର ହୁଏତ, ଆମର ଖୁବ୍ ପାଖାପାଖି ଥାଇ ପାରନ୍ତି । ଏବେ ତ ନିରୋଳା ଈଶ୍ୱରଙ୍କ ଋତୁ । ଆପଣ ତାଙ୍କୁ ଖୋଜିବା ଆରମ୍ଭ କରିଦିଅନ୍ତୁ ।



# ଜୀବନ ନା ମୃତ୍ୟୁ ? ମୃତ୍ୟୁ-ଚେତନାଗ୍ରସ୍ତ ବିଷାଦ ନା ଜୀବନୋନ୍ମାଦନା ?

ନିଖିଳାନନ୍ଦ ପାଣିଗ୍ରାହୀ

୨୦୧୧ ସାଲ ଡିସେମ୍ବର ୩୧ ତାରିଖ ମଧ୍ୟରାତ୍ରି । ତାପରେ ଆରମ୍ଭ ହେବ ନୂଆବର୍ଷ ୨୦୧୨ । ଏମିତି ଜିରୋ ନାଇଟ୍ ଅବସରରେ ସାଧାରଣତଃ ନବବର୍ଷକୁ ସ୍ୱାଗତ କରାଯାଇଥାଏ । କିନ୍ତୁ ୨୦୧୨ସାଲକୁ ସ୍ୱାଗତ କରିବାବେଳେ ଅନ୍ୟ ବର୍ଷ ପରି ଏତେ ମନଖୋଲା ଉଚ୍ଛ୍ୱାସ ଉଚ୍ଛୁଳି ନଥିଲା । କାରଣ କେତେଜଣ ଏଇ ବର୍ଷଟି ଶଙ୍କା ସମ୍ବଳିତ ସମ୍ଭାବନା ସହ ଜଡ଼ିତ ବୋଲି ପ୍ରଚାର କରିଥିଲେ ।

ଆମେରିକାର ଗୋଟିଏ ମୁଭି ଚାନେଲ ଏଇ ପରିପ୍ରେକ୍ଷୀରେ ଯେମିତି ଥରକୁ ଥର '୨୦୧୨' ଓ 'ଅବତାର' ନାମକ ଦୁଇଟି ଚଳଚ୍ଚିତ୍ର ଦେଖାଇ ଚାଲିଲା, ତାହା ଅନେକ ଦର୍ଶକଙ୍କୁ ନିଶ୍ଚୟ ଆମ ଭବିଷ୍ୟତକୁ ନେଇ ପରିସ୍ଥିତି ସମ୍ବନ୍ଧରେ ନିରୁତ୍ସାହିତ କରିଥିବ । ଉକ୍ତ ଆମେରିକୀୟ ଫିଲ୍ମ ଦୁଇଟି ବିଜ୍ଞାନଭିତ୍ତିକ । ଉଭୟ ଚଳଚ୍ଚିତ୍ର ୨୦୦୯ରେ ମୁକ୍ତିଲାଭ କରିବା ପରେ ବିଶ୍ୱସାରା ଅପାର ଲୋକପ୍ରିୟତା ଲାଭ କରିଥିଲା । ପ୍ରସିଦ୍ଧ ନିର୍ଦ୍ଦେଶକ ରୋନାଲ୍ଡ ଏମରିକଙ୍କ ୨୦୧୨ ଫିଲ୍ମଟିର ନିର୍ମାଣ ସକାଶେ ୨୦୦ ମିଲିଅନ୍ ଡଲାର ଖର୍ଚ୍ଚ ହୋଇଥିଲା । ଏଥିରେ ସୂର୍ଯ୍ୟାଗ୍ନିରେ ହଠାତ୍ ପ୍ରଜ୍ୱଳନ (ସୋଲାର୍ ଫ୍ଲେଆର) ବେଳେ କିଛି ନ୍ୟୁଟିନୋ (ଚାର୍ଜଶୂନ୍ୟ ସମ୍ଭବତଃ ବସ୍ତୁତ୍ୱ - ଶୂନ୍ୟ, ଆଲୋକର ଗତିରେ ଯାଉଥିବା ସ୍ଥାୟୀ ମୌଳିକ କଣିକା) ପୃଥିବୀର ଗର୍ଭରେ ପ୍ରବେଶ କରି ତାର ତାପମାତ୍ରା ଯଥେଷ୍ଟ ବୃଦ୍ଧି କରି ଦେଇଛନ୍ତି । ଫଳରେ ଭୂପୃଷ୍ଠରେ ଅସାଧାରଣ ଭୂକମ୍ପ ସୃଷ୍ଟି ହୋଇଛି । ସମୁଦ୍ରରେ ମଧ୍ୟ କିଛି ଭୂମିକମ୍ପ ସଂଘଟିତ ହେବାରୁ ତାହା ସୁନାମୀ ରୂପେ ଆତ୍ମପ୍ରକାଶ କରିଛି । ବହୁ ବ୍ୟସ୍ତ ବହୁଳ ଜନାକୀର୍ଣ୍ଣ ସହର ଜଳମଗ୍ନ ହୋଇଛି । ତେବେ ଫିଲ୍ମର ଶେଷ ଦୃଶ୍ୟରେ ଆଫ୍ରିକାର କିୟଦଂଶ ସ୍ଥଳଭାଗ ସମୁଦ୍ର ସ୍ତରଠାରୁ ଉପରେ ଥିବା ଦର୍ଶାଯାଇଚି । ୧୫୮ ମିନିଟ୍ ଅବଧି ଚଳଚ୍ଚିତ୍ରରେ ମାୟା କ୍ୟାଲେଣ୍ଡରର କଥା ମଧ୍ୟ ଉଲ୍ଲେଖ ହୋଇଛି ।

ପ୍ରାୟ ୩୫୦ରୁ ୯୦୦ ଖ୍ରୀଷ୍ଟାବ୍ଦ ମଧ୍ୟରେ କେନ୍ଦ୍ରୀୟ ଆମେରିକାର ମେକ୍ସିକୋ, ଗୁଏଟମାଲା ଏବଂ ହଣ୍ଡୁରାସ ଅଞ୍ଚଳରେ ମାୟାସଭ୍ୟତା ବିକଶିତ ହୋଇଥିଲା । ଏଇ ସଭ୍ୟତା ଏତେ ଉନ୍ନତ ଥିଲା ଯେ, ସେତେବେଳେ ସେଠାକାର ଅଧିବାସୀମାନେ ଶୂନର ବ୍ୟବହାର ଜାଣିଥିଲେ । ଜ୍ୟୋତିର୍ବିଜ୍ଞାନରେ ପାରଦର୍ଶିତା ହାସଲ କରିଥିଲେ । ମୁଖ୍ୟତଃ ସେମାନେ ଗୋଟିଏ ନିର୍ଭୁଲ କ୍ୟାଲେଣ୍ଡର ପ୍ରଣୟନ କରିଥିଲେ । ପଞ୍ଚଦଶ ଶତାବ୍ଦୀରେ ସ୍ପେନର ଆକ୍ରମଣ ଯୋଗୁଁ ଏଇ ସଭ୍ୟତା ଧ୍ୱଂସ ପାଇଥିଲା । ମାୟାର ଲଙ୍ଗ୍ କାଉଣ୍ଟ କ୍ୟାଲେଣ୍ଡର ୩,୧୧୪ ଖ୍ରୀଷ୍ଟପୂର୍ବ ସାଲରୁ ଆରମ୍ଭ ହୋଇଛି । ପ୍ରାୟ ୩୯୪ ବର୍ଷର ଅବଧିକୁ 'ବାକୁନ' ବୋଲି ଗଣାଯାଏ । ମାୟାଙ୍କ ପାଇଁ ତେର ସଂଖ୍ୟା ହେଉଛି ଅତି ପବିତ୍ର ଓ ସ୍ୱତନ୍ତ୍ର । ତେରତମ ବାକୁନ ୨୧.୧୨.୨୦୧୨ରେ ଶେଷ ହେଉଛି । ଏହାପରେ ମାୟାନ୍ ପଞ୍ଜିକାରେ କୌଣସି ତଥ୍ୟ ନାହିଁ କିମ୍ବା ଆଉ କୌଣସି ତାରିଖ ଲିପିବଦ୍ଧ ହୋଇନାହିଁ । ଏହି ବିଷୟଟିରୁ ଆମ ମଧ୍ୟରୁ କେତେଜଣ ବିଶ୍ୱାସ କରୁଛନ୍ତି ଯେ, ଉକ୍ତ ତାରିଖରେ ପୃଥିବୀ ଧ୍ୱଂସପ୍ରାପ୍ତ ହେବ ଏବଂ ଏଠାରେ ପ୍ରଳୟ ଘଟିବ । ଏହା ହେବ ସୃଷ୍ଟିର ଅନ୍ତିମ ଦିବସ ।

ଏଇ ଭୀତିପ୍ରଦ ସମ୍ଭାବନା ୨୦୧୨ ଫିଲ୍ମର ମୂଳଭିତ୍ତି ହୋଇଛି । କିନ୍ତୁ ଏହାକୁ ଅନ୍ୟ ପ୍ରକାରେ ମଧ୍ୟ ବ୍ୟବହାର କରାଯାଇଥିବା ସମ୍ବାଦ ଶୁଣିବାକୁ ମିଳେ । ମେକ୍ସିକୋର ପର୍ଯ୍ୟଟନ ବିଭାଗ ଏଇ ତାରିଖଟିକୁ ସ୍ମରଣୀୟ କରିବା ଲକ୍ଷ୍ୟରେ ସହରର ମଧ୍ୟଭାଗରେ ଗୋଟିଏ ବିଶାଳ ଘଡ଼ି ସ୍ଥାପନ କରିଛନ୍ତି । ସେଠାକାର ସରକାର ଆକଳନ କରିଛନ୍ତି ଯେ, ୨୦୧୨ ଡିସେମ୍ବର ସୁଦ୍ଧା ପ୍ରାୟ ୫୨ ମିଲିଅନ୍ ବିଦେଶୀ ପର୍ଯ୍ୟଟକ ସେଠାରେ ପହଞ୍ଚିବେ, ଯାହାକି ସାଧାରଣ ବର୍ଷର ପର୍ଯ୍ୟଟକ ସଂଖ୍ୟା (ପ୍ରାୟ ୨୨ମିଲିଅନ) ଠାରୁ ଢେର ଅଧିକ । ପର୍ଯ୍ୟଟକମାନଙ୍କ ମୁଖ୍ୟ ଆକର୍ଷଣ ହେବ ତେରଶହ ବର୍ଷର ପୁରୁଣା ଖୋଦିତ ଫଳକ, ଯାହାକି ମାୟା ପଞ୍ଜିକାର ସମୟ ଚକ୍ରର ସମାପ୍ତି ଦର୍ଶାଏ । ମାୟା ସଭ୍ୟତା ବେଳେ ଚିଆପସ୍, ଇଜାପା କୁଇଣ୍ଟାନା ରୁ'ର ଜଂଗଲ, କାନକୁନ୍, କାର୍ମେନ୍, ଟୋବାସ୍କୋ, କାମ୍ପେଚେ ପରି ଯେଉଁ ଜନପଦ ସହର ଓ ଅଞ୍ଚଳମାନ ବିଖ୍ୟାତ ହୋଇଥିଲା, ସେଠାରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହେବ । ଯଥା : ମାୟାର ପୂଜକମାନେ ସୁଗନ୍ଧିତ ଧୂପଦେଇ ପ୍ରାର୍ଥନା କରିବେ, ଗୀତ ଗାଇବେ, ବିଭିନ୍ନ ପ୍ରକାର ସନ୍ଦେଶ ଓ ଫଟୋ ଟାଇମ୍-କ୍ୟାପସୁଲରେ ଭର୍ତ୍ତିକରି ପଚାଶ ବର୍ଷ ଯାଏଁ ଭୂଗର୍ଭରେ ସୁରକ୍ଷିତ ରଖାଯିବ, ମାୟା ସଭ୍ୟତାକୁ ସ୍ମରଣ କରିବାପାଇଁ ଗୋଟିଏ ମ୍ୟୁଜିଅମ୍ ଆଗାମୀ ଗ୍ରୀଷ୍ମଋତୁ ପୂର୍ବରୁ ନିର୍ମାଣ କରାଯିବ । ତଥାକଥିତ ପ୍ରଳୟ ପୂର୍ବରୁ ଏଇ କାର୍ଯ୍ୟକ୍ରମମାନ ସଂପାଦନ କରିବାରେ

କୌଣସି ଅବହେଳା ବା ତ୍ରୁଟି କରାଯିବ ନାହିଁ । ମୋଟାମୋଟି ଭାବେ ପ୍ରଳୟ ଦିବସ ସଂପର୍କରେ ଲୋକଙ୍କ ମନରେ ଥିବା ଧାରଣାକୁ ଉପଯୋଗ କରି ପର୍ଯ୍ୟଟନ ଶିଳ୍ପକୁ ସମୃଦ୍ଧ କରାଯିବ ।

କେବଳ ଆମେରିକା ନୁହେଁ, ଉକ୍ତ ତାରିଖଟିକୁ ଆନ୍ତର୍ଜାତିକ ସ୍ତରରେ ସୁପରିଚିତ କରିବା ସକାଶେ http:// www.december212012.com ଶୀର୍ଷକ ଗୋଟିଏ ୱେବସାଇଟ୍ ଖୋଲାଯାଇଛି, ଯେଉଁଥିରେ ଆଗ୍ରହୀ ବ୍ୟକ୍ତିମାନେ ବିଭିନ୍ନ ସମ୍ବାଦ, ସନ୍ଦେଶ ଲେଖା ରଖିପାରିବେ ।

୨୦୧୨ ଫିଲ୍ମରେ ପୃଥିବୀରେ ଯେଉଁ ପ୍ରଳୟ କଥା ଉଲ୍ଲେଖ ହୋଇଛି, ସେଥିରେ ଅବଶ୍ୟ ଭବିଷ୍ୟତ ପାଇଁ ସାମାନ୍ୟ ଆଶା ମଧ୍ୟ ରଖାଯାଇଛି । ତଦନୁସାରେ ଆମ ମଧ୍ୟରୁ ଯେଉଁ ଅଳ୍ପ କେତେଜଣ ଭାଗ୍ୟବାନ, ସେମାନେ ପ୍ରଳୟରୁ ବର୍ତ୍ତିଯାଇ ବିଶ୍ୱ ପୁନରୁଦ୍ଧାର କରିବେ ।

ବର୍ତ୍ତମାନ ଆମେ ଉପରୋକ୍ତ ଆମେରିକୀୟ ମୁଭି ଚାନେଲର ଅନ୍ୟ ଫିଲ୍ମଟି ପ୍ରତି ଦୃଷ୍ଟିଦେବା । ବିଶ୍ୱବିଖ୍ୟାତ ଯଶସ୍ୱୀ ଜେମ୍ସ କେମରୁନ୍‌ଙ୍କ ନିର୍ଦ୍ଦେଶିତ, 'ଅବତାର' ଶୀର୍ଷକ ଏଇ ଫିଲ୍ମଟିର ଅବଧି ୧୬୨ମିନିଟ୍ । ଡିସେମ୍ବର ୨୦୦୯ରେ ଏହା ମୁକ୍ତିଲାଭ କରୁକରୁ ସାରା ବିଶ୍ୱରେ ଚହଳ ସୃଷ୍ଟି କଲା । ପୃଥିବୀରେ ଆଗାମୀ ଦିନରେ କଣ ଘଟିପାରେ, ଏମିତି ଏକ କାଳ୍ପନିକ ବିଷୟକୁ ଆଧାର କରି ଏଇ ବିଜ୍ଞାନ-ଚଳଚ୍ଚିତ୍ରଟି ନିର୍ମିତ ହୋଇଛି । ୨୧୪୮ ସାଲ ବେଳକୁ ପୃଥିବୀର ପ୍ରାକୃତିକ ସଂପଦମାନ ନିଃଶେଷ ହୋଇଯାଇଥିବ । ସେତେବେଳେ ବୈଜ୍ଞାନିକମାନେ ଏଇ ଅଭାବକୁ ପୂରଣ କରିବା ସକାଶେ ନୂତନ ଉଦ୍‌ଭାବନରେ ମନୋନିବେଶ କରିବେ । ତଦନୁସାରେ ସେମାନେ ହାଇବ୍ରିଡ ମନୁଷ୍ୟ (ଯାହାକି 'ଅବତାର' ବୋଲି ନାମିତ କରାଯିବ) ସୃଷ୍ଟି କରିବେ । ଅବତାରମାନେ ଜାଣିପାରିବେ ଯେ, ପାଣ୍ଡୋରା ବୋଲି ଗୋଟିଏ ଗ୍ରହ ଅନ୍ୟତ୍ର ଅଛି, ଯେଉଁଠାରେ ଅସରନ୍ତି ଧନ ସଂପତ୍ତି ରହିଛି । ସେଠାରେ ନାଭି ନାମକ ଦଶଫୁଟିଆ ନୀଳବର୍ଣ୍ଣର ଜ୍ଞାନୀ ଓ ବିଜ୍ଞ ବ୍ୟକ୍ତିମାନେ ରହୁଛନ୍ତି । ସେମାନଙ୍କର ଆକୃତି ଓ ଗୁଣ ମଣିଷ ପରି, କିନ୍ତୁ ପ୍ରକୃତି ସହ ସଂପୂର୍ଣ୍ଣ ଭାବେ ଖାପ ଖୁଆଇ ସେମାନେ ଜୀବନ ନିର୍ବାହ କରନ୍ତି । ସେମାନେ ଆଇବା ନାମ୍ନୀ ମାତୃଦେବୀର ଉପାସକ । ପୃଥିବୀର ବୈଜ୍ଞାନିକମାନେ ଏଇ ଐଶ୍ୱର୍ଯ୍ୟପୂର୍ଣ୍ଣ ପାଣ୍ଡୋରା ଗ୍ରହକୁ ଜୟକରି ସେଠାରେ ମନୁଷ୍ୟ ବସତି ସ୍ଥାପନ କରିବାପାଇଁ ଯୋଜନା କରନ୍ତି । ତେଣୁ ସେମାନେ ଉଦ୍ଭାବନ କରିଥିବା ଅବତାରମାନଙ୍କୁ ପ୍ରୟୋଗ କରନ୍ତି । କିନ୍ତୁ ପାଣ୍ଡୋରା ଗ୍ରହର ବାୟୁମଣ୍ଡଳ ମଣିଷ ପାଇଁ ବିଷାକ୍ତ । ତେଣୁ ସେମାନେ ଅବତାରମାନଙ୍କୁ ଏଥିରୁ

ବର୍ତ୍ତାଇବା ସକାଶେ ଉନ୍ନତ ଜେନେଟିକ ଇଂଜିନିଅରିଂ ସହାୟତା ନିଅନ୍ତି । ଜେକ୍ (ସାମ୍ ୱାର୍ଦ୍ଦିଙ୍ଗଟନ୍) ନାମକ ଗୋଟିଏ ଅବତାରର ନେତୃତ୍ୱରେ ପାଣ୍ଡୋରାକୁ ଆକ୍ରମଣ କରାଯାଏ । ଭୀଷଣ ଯୁଦ୍ଧ ଶେଷରେ ଜେକଙ୍କୁ ଛାଡ଼ିଦେଲେ, ଆଉ ସମସ୍ତ ଅବତାର ମୃତ୍ୟୁବରଣ କରନ୍ତି । ତେବେ ଜେକ୍ ନାଭିମାନଙ୍କ ପାଣ୍ଡୋରା ଅଧିପତି ହୁଅନ୍ତି । ଜେକ୍‌ଙ୍କ ପଦାଙ୍କ ଅନୁସରଣ କରି ଆମର ଏଠାରେ ପ୍ରାକୃତିକ ସଂପଦକୁ ସଂପୂର୍ଣ୍ଣ ଭାବେ ବିଲୋପ କରିଥିବା ପୃଥିବୀବାସୀଙ୍କୁ ଅନ୍ୟ ଗ୍ରହକୁ ଯୋଜନାବଦ୍ଧ ଭାବେ ଯିବାକୁ ଫିଲ୍ମର କଥାବସ୍ତୁ ପ୍ରେରଣାଦିଏ । ଗ୍ରହାନ୍ତର ଗମନ ଆମପାଇଁ କେତେ ଉପାଦେୟ ଏଥିରୁ ବୁଝି ହୁଏ । ଏଇ ବୈଜ୍ଞାନିକ କଳ୍ପନା ବାସ୍ତବ ରୂପ ନେବା ଜରୁରି ।

ଫିଲ୍ମ ୨୦୧୨ ଓ ଅବତାରର ବିଶ୍ଳେଷଣ କରାଯିବା ଏଠାରେ ପ୍ରାସଂଗିକ । ୨୦୧୨ରେ ଚମତ୍କାର ଫଟୋଗ୍ରାଫି ମାଧ୍ୟମରେ ଦର୍ଶାଯାଇଛି ପ୍ରଳୟ କିପରି ଭୟଙ୍କର ହୋଇପାରେ । ଏଇ ଲୋମହର୍ଷଣକାରୀ ଦୃଶ୍ୟ ଆମପାଇଁ ଚରମ ସତର୍କବାଣୀ ହେବା ଉଚିତ । ଯଦି ପ୍ରଳୟ ପୃଥିବୀକୁ କେବେ ମାଡ଼ିଆସେ, ଆମେ କେମିତି ଦୟନୀୟ ଭାବେ ମୃତ୍ୟୁର ଶିକାର ହେବା ତାର ଆଭାସ ଆମେ ଏଇ ଫିଲ୍ମରେ ମର୍ମେମର୍ମେ ଅନୁଭବ କରିଛେ । ଚଳଚ୍ଚିତ୍ରରେ ଅଳ୍ପ କେତେଜଣ ମୃତ୍ୟୁମୁଖରୁ ବର୍ତ୍ତିଯିବା କଥା ଯାହା ଉଲ୍ଲେଖ ହୋଇଛି, ତାହା ସଂପୂର୍ଣ୍ଣ ଅମୂଳକ କିମ୍ବା ଆକସ୍ମିକ ନହୋଇପାରେ । ବୈଜ୍ଞାନିକମାନେ ଏଥିପୂର୍ବରୁ ପୃଥିବୀରେ ଘଟିଥିବା ଯେଉଁ ପାଞ୍ଚଟି ପ୍ରଳୟ ବିଷୟ ଉଲ୍ଲେଖ କରିଛନ୍ତି, ତାହା ସମ୍ଭବତଃ ଆଜିକୁ ପ୍ରାୟ ୫୦୦, ୩୫୦, ୨୨୫, ୧୦୦ ଏବଂ ୬୫ନିୟୁତ ବର୍ଷ ପୂର୍ବେ ଘଟିଥିଲା । ଆଧୁନିକ ମନୁଷ୍ୟର ସୃଷ୍ଟି ପ୍ରାୟ ୧.୬ ନିୟୁତ ପୂର୍ବେ ହୋଇଥିବାରୁ ଆମେ ଏଇ ପାଞ୍ଚ ପ୍ରଳୟ ଦ୍ୱାରା ପ୍ରତ୍ୟକ୍ଷ ଭାବେ କ୍ଷତିଗ୍ରସ୍ତ ହୋଇନାହୁଁ । ତେବେ ଉକ୍ତ ପାଞ୍ଚ ପ୍ରଳୟ ବେଳେ ସଚରାଚର ଜୀବମଣ୍ଡଳ ସଂପୂର୍ଣ୍ଣ ଭାବେ ଲୋପ ନପାଇ ଶତକଡ଼ା ପ୍ରାୟ ୮୦ଭାଗ ଜୀବସତ୍ତା ନିଶ୍ଚିହ୍ନ ହୋଇଥିଲା ବୋଲି ବିଶ୍ୱାସ କରାଯାଏ । ତେଣୁ ପ୍ରଳୟ ପରିବର୍ତ୍ତେ ଭୟଙ୍କର ଖଣ୍ଡପ୍ରଳୟ ଶବ୍ଦ ବ୍ୟବହାର କଲେ ଅଧିକ ଯଥାର୍ଥ ହେବ ।

୨୦୧୨ ଫିଲ୍ମରେ ଆମ ଆୟତ୍ତରେ ନଥିବା ଏକ ମହାଜାଗତିକ କାରଣକୁ ପୃଥିବୀ ଧ୍ୱଂସର ହେତୁ ବୋଲି ଉପସ୍ଥାପନ କରାଯାଇଥିବା ବେଳେ 'ଅବତାର'ରେ ମଣିଷର ଲୋଭ ଓ ପ୍ରକୃତି ପ୍ରତି ଅବାରିତ ଅତ୍ୟାଚାରକୁ ମୂଳ କାରଣ ବୋଲି ଦର୍ଶାଯାଇଛି । ଏଥିରୁ ଉଦ୍ଧାର ପାଇବାକୁ ଗୋଟିଏ ହାଇବ୍ରିଡ ମନୁଷ୍ୟର ପରିକଳ୍ପନା କରାଯାଇଛି, ଯାହାକୁ ନାଁ ଦିଆଯାଇଛି ଅବତାର । ହିନ୍ଦୁ ଧର୍ମଶାସ୍ତ୍ରରେ ବିଶ୍ୱାସୀ ଲୋକଙ୍କ ପାଇଁ ଅବତାର ଏକ ସୁପରିଚିତ ଶବ୍ଦ । ଆମେ ବିଶ୍ୱାସ କରୁ ଯେ ସତ୍ୟ, ତ୍ରେତୟା, ଦ୍ୱାପର ଓ କଳି ଏପରି

ଚାରୋଟି ଯୁଗର କ୍ରମାନ୍ୱୟରେ ପୁନରାବୃତ୍ତି ଘଟିଥାଏ । ଗୋଟିଏ ଯୁଗରୁ ଅନ୍ୟ ଏକ ଯୁଗରେ ପ୍ରବେଶ କରିବାକୁ ଯୁଗସନ୍ଧି କୁହାଯାଏ । ତେବେ ଏଇ ଯୁଗସନ୍ଧି ବେଳେ ସ୍ୱୟଂ ଭଗବାନ ଅବତାର ଗ୍ରହଣ କରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ତେଣୁ ବିଭିନ୍ନ ଯୁଗରେ ଆମେ ଈଶ୍ୱରଙ୍କ ଅବତାର ଭାବେ ବରାହ, ନୃସିଂହ, ବାମନ, ରାମ, କୃଷ୍ଣ ପରି ମାନବରୂପୀ ଦେବତାଙ୍କୁ ପାଇଥାଉ । ବର୍ତ୍ତମାନ କଳିଯୁଗ ଚାଲିଥିବାରୁ ଏଇ ଯୁଗରେ ପାପଭାର ଯେତେବେଳେ ଅସହ୍ୟ ହେବ, ଭଗବାନ କଳାଧଳା ଘୋଡ଼ାରେ ଚଢ଼ି କଲ୍‌କୀ ରୂପରେ ଆମ ଗହଣକୁ ଆସିବେ ଓ ମ୍ଳେଚ୍ଛ ସଂହାର କରି ମର୍ତ୍ତ୍ୟରେ ସନ୍ଥମାନଙ୍କୁ ରକ୍ଷା କରିବେ ।

ପୌରାଣିକ ଅବତାର ଓ ଜେମ୍‌ସ କେମରୁନ୍‌ଙ୍କ ଅବତାର ସହ ସର୍ବତୋଭାବେ ସମାନ ନହେଲେ ମଧ୍ୟ ଅବତାର ମାଧ୍ୟମରେ ମାନବ ସଭ୍ୟତା ସୁରକ୍ଷିତ ହେବାକଥା ଉଭୟ ସଂସ୍କରଣରେ ଚିତ୍ରଣ କରାଯାଇଛି । ତେବେ ପ୍ରଶ୍ନ ଉଠୁଛି; କଲ୍‌କୀ କଣ ୨୧.୧୨.୨୦୧୨ ପୃଥିବୀରେ ଆବିର୍ଭାବ ହେବେ ? ପ୍ରଳୟରୁ ଦୁଃସମୟ କ'ଣ ଏତେ ଶୀଘ୍ର ପ୍ରକୃତରେ ପହଞ୍ଚିଗଲାଣି ?

ପ୍ରଳୟ ସମୟଟି ନିରୂପଣ କରିବାକୁ ହିନ୍ଦୁ ବ୍ୟତୀତ ଖ୍ରୀଷ୍ଟ ଓ ଅନ୍ୟ ଧର୍ମରେ ମଧ୍ୟ କିଛି ଲକ୍ଷଣ ତାଲିକାଭୁକ୍ତ ହୋଇଛି । ଯଥା : ପୁରୁଷମାନଙ୍କଠାରେ ନାରୀର ଗୁଣ ପ୍ରକଟିତ ହେବ । ଫଳରେ ପୁରୁଷମାନେ ଗର୍ଭଧାରଣ କରିବେ । ବଳଦ, ପୋଢ଼ ଇତ୍ୟାଦି ପୁଲିଙ୍ଗ ବିଶିଷ୍ଟ ଜୀବ କ୍ଷୀର ଦେବେ । ଜଂଗଲ ବାଘଶୂନ୍ୟ ହେବ । (ପରୋକ୍ଷରେ ପୃଥିବୀ ଜଂଗଲ ଶୂନ୍ୟ ହେବ) । ଦକ୍ଷିଣରେ, ବୃହତ୍ ଧୂମକେତୁ ଦେଖାଦେବ । (ତେବେ ଏହା ଭୂପୃଷ୍ଠରେ ପଡ଼ିଲେ ହିଁ, କ୍ଷୟକ୍ଷତି ହେବ) । ସୂର୍ଯ୍ୟ ନୀଳରଙ୍ଗ ଧାରଣ କରିବ । (ସୂର୍ଯ୍ୟର ବୟସ ବଢ଼ିଲେ ଏହା ବୃଦ୍ଧତ୍ୱ ଲୋହିତ ହୋଇ ବର୍ତ୍ତମାନ ଠାରୁ ଭିନ୍ନ ଏକ ରଂଗରେ ଦେଖାଦେବ) । ପଥରରୁ ରକ୍ତ, ପୁଜ ନିଗିଡ଼ି ଗୋଟିଏ ଦୂଷିତ ନଦୀର ସ୍ରୋତ ପ୍ରବାହିତ ହେବ । କାଠ, ପଥର ପରି ନିର୍ଜୀବ ବସ୍ତୁରେ ତିଆରି ଜୀବଜନ୍ତୁମାନ ଜୀବନ୍ୟାସ ପାଇ ଜୋରରେ ଦୌଡ଼ିବେ । ଆକାଶରୁ ରକ୍ତ ମାଂସ ଖସି ଆମ ଉପରେ ପଡ଼ିବ ।

ଏଇ ସବୁ ଅଶୁଭ ସଂକେତମାନଙ୍କ ମଧ୍ୟରୁ ଅଧିକାଂଶ ଅଣବୈଜ୍ଞାନିକ । ତେବେ ଯେଉଁ ଅଳ୍ପ କେତୋଟି ଯୁକ୍ତିଯୁକ୍ତ ପରି ଲାଗୁଛି, ସେଥିରେ ସର୍ତ୍ତାବଳୀ ଯୋଡ଼ିଲେ ହିଁ ବିଶ୍ୱାସନୀୟ ହେବ । ମୋଟାମୋଟି ଭାବେ ଆମେ ବୈଜ୍ଞାନିକ ଗବେଷଣା ଉପରେ ଅଧିକ ଗୁରୁତ୍ୱ ଦେବା, ଯାହାକି ସାଂପ୍ରତିକ ବୈଜ୍ଞାନିକ ଯୁଗପାଇଁ ବେଶ ଉପଯୋଗୀ ହେବ । ତେଣୁ ଆମେ କହିପାରୁ, 'ଅତୀତରେ ଘଟି ଯାଇଥିବା (ବିଜ୍ଞାନ ସମର୍ଥିତ) ୫ଟିଯାକ ପ୍ରଳୟର ନାୟକ ଥିଲା ପ୍ରକୃତି ଏବଂ ତାକୁ ସେଥିରୁ ନିବୃତ୍ତ କରିବାକୁ କେହି

ନଥିଲେ । ତେବେ ବର୍ତ୍ତମାନ ପୃଥିବୀର ଅଧିବାସୀ ହେଉଛି ବୁଦ୍ଧିମାନ ମନୁଷ୍ୟ । ସେ ତାର ପ୍ରଜ୍ଞାକୁ ସକାରାତ୍ମକ ଭାବେ ବିନିଯୋଗ କରି ପ୍ରକୃତିକୁ ଅଧିକରୁ ଅଧିକ ସହନୀୟ ରଖି ପାରିଲେ ଏହାକୁ ଅସୀମ କାଳ ପାଇଁ ଏଡ଼ାଇ ଦେବା ହୁଏତ ସମ୍ଭବ ହେବ ।

ପ୍ରକାଶଥାଉକି ୩୧.୫.୨୦୧୧ ତାରିଖ ସଂଧ୍ୟା ଛଅଟା ବେଳେ ପ୍ରଳୟ ହେବ ବୋଲି ପ୍ରବଳ ଗୁଜବ ରଟିତ ହୋଇଥିଲା । କିନ୍ତୁ ସେତେବେଳେ ସାମାନ୍ୟତମ ଖଣ୍ଡପ୍ରଳୟ ମଧ୍ୟ ଦେଖା ଦେଇନଥିଲା । ସେମିତି ୨୧.୧୨.୨୦୧୨ର ଦଶା ହେବ । ସେଇ ଦିନଟି ପୃଥିବୀ ପାଇଁ ଅନ୍ୟ ଦିନମାନଙ୍କ ପରି ସ୍ୱାଭାବିକ୍ ହେବ । ଏଥିପାଇଁ ଆତଙ୍କିତ ହେବାର କୌଣସି କାରଣ ଦେଖାଯାଉନାହିଁ । ୨୦୧୨ ସାଲକୁ ମିଳିତ ଜାତିସଂଘ ଆନ୍ତର୍ଜାତିକ ସମବାୟ ସମିତି ସମ୍ବତ୍ସର (ଇଣ୍ଟରନ୍ୟାସନାଲ ଇଅର ଅଫ୍ କୋଅପରେଟିଭସ୍) ବୋଲି ଯେଉଁ ଘୋଷଣା କରିଛି, ତାହା ଅସଂପୂର୍ଣ୍ଣ ହେବ ନାହିଁ କିମ୍ବା ଲଣ୍ଡନରେ ଅନୁଷ୍ଠିତ ହେବାକୁ ଥିବା ୨୭.୭.୨୦୧୨ର ଅଲମ୍ପିକ ପ୍ରତିଯୋଗିତାର ଭାଗ ନେବାକୁ କୌଣସି ପ୍ରତିଯୋଗୀର ମନୋବଳ ଦୁର୍ବଳ ହେବନାହିଁ ।

ଉଲ୍ଲେଖନୀୟ ଯେ, ବିଭିନ୍ନ ଅପପ୍ରଚାର ସତ୍ତ୍ୱେ ସମଗ୍ର ପୃଥିବୀବାସୀ ଉଣା ଅଧିକେ ଏଇ ଉପସଂହାରକୁ ମାନି ନେଇଛନ୍ତି । ତେଣୁ ୨୦୧୧-୧୨ର ଜିରୋ-ନାଇଟ୍‌ରେ ଗୋଟିଏ ଅଭୁତପୂର୍ବ ଘଟଣା ଘଟିଥିଲା । ନବବର୍ଷର ଶୁଭେଚ୍ଛା ପାଇଁ ମାଇକ୍ରୋ ବ୍ଲଗିଂ ସାଇଟ୍ ଟ୍ୱିଟରରେ ଏତେ ସନ୍ଦେଶ ଆସିଲା ଯେ, ସାଇଟର କର୍ତ୍ତୃପକ୍ଷ ବାଧହୋଇ କ୍ଷମାପ୍ରାର୍ଥନା ସହ ଘୋଷଣା କଲେ 'ଟ୍ୱିଟର ଇଜ ଓଭର କାପାସିଟି' । ବ୍ୟବହାରକାରୀଙ୍କ ଅତ୍ୟଧିକ ଲୋଡ଼ ଯୋଗୁଁ ସାଇଟ୍‌ଟି କେତେ ଘଣ୍ଟାଧରି ଅକାମି ହୋଇଗଲା । ଏଥିରେ କ୍ଷୁବ୍ଧ ହୋଇ କେତେକ ବ୍ୟବହାରକାରୀ ରୋଷ ପ୍ରକଟ କରିଥିଲେ । ଟ୍ୱିଟର ଓଭର କାପାସିଟି ଏଇ ତିନୋଟି ଶବ୍ଦ ସେମାନଙ୍କ ନବବର୍ଷର ପହିଲା ତାରିଖ ପରି ଶୁଭଦିନକୁ ବରବାଦ କରିଦେଲା । (ଦ୍ରଷ୍ଟବ୍ୟ : ସମ୍ବାଦ, ନ୍ୟୁ ଅର୍କ ଟାଇମ୍ସ, ଡେଲିମେଲ୍, ଉଦ୍ଧୃତି : ଟିଓଆଇ, ୨.୧.୨୦୧୨)

ଯାନ୍ତ୍ରିକ ଅସୁବିଧା ରୁଷ୍ଟ ବ୍ୟବହାରୀଙ୍କ ପାଇଁ ଆମେ ନିଶ୍ଚୟ ଦୁଃଖିତ । କିନ୍ତୁ ସେମାନଙ୍କ କ୍ରୋଧର କାରଣ ୨୦୧୨ର ପ୍ରଚାରିତ ପ୍ରଳୟ ନ ହୋଇଥିବାରୁ ଆମେ ବେଶ ଉଲ୍ଲସିତ । ୨୦୧୨ ନବବର୍ଷ ପାଇଁ ଆମର ଭରପୂର ଶୁଭେଚ୍ଛା ।



# ଜୀବନସଂଗ୍ରାମ ବିବର୍ତ୍ତନର ବାର୍ତ୍ତାବହ

ଧରଣୀଧର ଘୋଷ

ଜୀବଜଗତର ବିବର୍ତ୍ତନ ଏକ ସ୍ୱୟଂସିଦ୍ଧ ଧାରା । ଗାଠନିକ ମାନର ଅଭିବୃଦ୍ଧି ସହିତ ଚିନ୍ତାର ଉନ୍ନତମାନ ସକାଶେ ପ୍ରତି ମୁହୂର୍ତ୍ତରେ ପରିମାର୍ଜିତ ପରିବର୍ତ୍ତନ ଲାଗିରହିଛି । ପ୍ରତମୁହୂର୍ତ୍ତରେ ଜୀବନକୁ ଚରମ ସୀମାରେ ପହଞ୍ଚାଇବାର ଲୁକ୍କାୟିତ ସଂଗ୍ରାମ ପ୍ରକୃତି ଜାରି ରଖିଛି । ଯେ କୌଣସି ଅବରୁଦ୍ଧତା ଯେତେବେଳେ ସଂସ୍କାରଧର୍ମୀ ବିବର୍ତ୍ତନକୁ ବାଧା ଦିଏ, ସେତେବେଳେ ସଂଘର୍ଷ ଅନିବାର୍ଯ୍ୟ ହୁଏ । ଶରୀର, ବଚନ ଓ ମନର ଏକାତ୍ମତା ହେଉଛି ମାନବ ଦର୍ଶନର ସାଧାରଣ ଧର୍ମ । ଏହାର ବ୍ୟତିକ୍ରମ ଅର୍ଥ ସଂଗ୍ରାମର ସୂତ୍ରପାତ । ସମାଜରେ ଯେତେବେଳେ ନୈତିକତାର ବୈପରୀତ୍ୟ ପ୍ରଭାବର ପ୍ରାବଲ୍ୟ ସୃଷ୍ଟି ହୁଏ, ସେତେବେଳେ ମହାସମର ଅବଶ୍ୟମ୍ଭାବୀ । ମହାଭାରତର ମହାସମର ଏହାର ଜ୍ୱଳନ୍ତ ଉଦାହରଣ । ଶାନ୍ତିର ନିରାପତ୍ତାକୁ ସୁଦୃଢ଼ କରିବା ପାଇଁ ସଂଗ୍ରାମ ଅନସ୍ୱୀକାର୍ଯ୍ୟ ।

ମନୁଷ୍ୟର ପ୍ରାରମ୍ଭକାଳୀନ ମୁହୂର୍ତ୍ତରେ, ନିଜର ଜୀବନକୁ ପଶୁମାନଙ୍କ ଦାଉରୁ ରକ୍ଷା କରିବାପାଇଁ ସଂଗ୍ରାମ ଆରମ୍ଭ କରିଥିବା ସ୍ୱାଭାବିକ । ତାପରେ ବିଭିନ୍ନ ପ୍ରକାର ବସ୍ତୁକୁ ନେଇ, ଖାଦ୍ୟ ଓ ବାସସ୍ଥଳୀକୁ ନେଇ ଲଢ଼େଇର ସୂତ୍ରପାତ କଲା । କାଳକ୍ରମେ ଧର୍ମକୁ ନେଇ, ଆଦର୍ଶଭିତ୍ତିକ ବିଶ୍ୱାସକୁ ନେଇ ସଂଗ୍ରାମ ଜାରି ରଖିଲା । ସଂପ୍ରତି ମଣିଷ ଜୀବନ-ସଂଗ୍ରାମର ଚରମ ସୀମାରେ ଉପନୀତ । ସାମାଜିକ ଶ୍ରେଣୀ ବିଭାଗ, ଅର୍ଥନୈତିକ ବୈଷମ୍ୟ ଓ ଚୌକିର ଚାତୁର୍ଯ୍ୟକୁ ନେଇ ଜୀବନ-ସଂଗ୍ରାମ ତ୍ୱରାନ୍ୱିତ ହେଉଛି ।

ଡାରଉଇନଙ୍କ ଯୁଗାନ୍ତକାରୀ ବିବର୍ତ୍ତନବାଦର ଉଦ୍ଭାବନ ପୃଥିବୀବାସୀଙ୍କ ଜୀବନ-ସଂଗ୍ରାମ ବିଷୟରେ ଏକ ନୂତନ ଚେତନା ଦେଇଛି । ତାଙ୍କର କାଳଜୟୀ ପୁସ୍ତକ "ଅରିଜନ ଅଫ୍ ସ୍ପେସିଜ"ରେ ସେ ଦର୍ଶାଇଛନ୍ତି, ଏ ଜୀବଜଗତରେ ପ୍ରତି ପ୍ରଜାତିର ପ୍ରାଣୀ ତିଷ୍ଠି ରହିବା ପାଇଁ ନିଜ ନିଜ ଭିତରେ ସଂଗ୍ରାମ (Intraspecific Struggle) ତଥା ନିଜ ଚତୁପାର୍ଶ୍ୱରେ ବେଷ୍ଟିତ ଥିବା ଅନ୍ୟ ପ୍ରଜାତିର ଜୀବମାନଙ୍କ ସହିତ ସଂଗ୍ରାମ (Interspecific Struggle) ସଦା ସର୍ବଦା ଜାରି ରଖିଛନ୍ତି । ପୃଥିବୀର ବିଭିନ୍ନ ପରିବେଶରେ ଏହି ସଂଗ୍ରାମ ଉନ୍ନତ ପ୍ରଜାତିର ଜୀବମାନଙ୍କୁ ସୃଷ୍ଟିକରିପାରିଛି ଏବଂ ସୃଷ୍ଟିକରି ଚାଲିଥିବ ମଧ୍ୟ ।

ଊନବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଡାରଉଇନ୍‌ଙ୍କ ଜୀବନ ସଂଗ୍ରାମର ଏହି ତଥ୍ୟ (struggle for existance) ବିଶ୍ୱ ମାନବ ମତିରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ଉତ୍ତର - ଡାରଉଇନୀୟ କାଳଖଣ୍ଡରେ ଏହି ଆଲୋଡ଼ନ ବିଶ୍ୱ ସାହିତ୍ୟ ଭିତରେ ମଧ୍ୟ ପ୍ରବେଶ କରି ଜୀବନ ସଂଗ୍ରାମର ଗୂଢ଼ ବାର୍ତ୍ତା ପ୍ରଚାର କରିଥିଲା ଏବଂ ବଞ୍ଚିବା ପାଇଁ ସଂଗ୍ରାମକୁ ଏକ ସାର୍ବଜନୀନ ସ୍ତରକୁ ନେଇ ଯାଇଥିଲା । ସେବେଠାରୁ ବିବର୍ତ୍ତନବାଦ ସହିତ ସାହିତ୍ୟ ମିଶିଯାଇ ବିଶ୍ୱମନୀଷାକୁ ଏକ ନୂତନ ଦିଗ୍‌ଦର୍ଶନ ଦେଇଛି, ନୂଆନୂଆ ରାହାମାନ ଦେଖାଉଛି । ପୃଥିବୀର ସମସ୍ତ ବିପ୍ଳବ ଏହି ଜୀବନ-ସଂଗ୍ରାମରୁ ହିଁ ସୃଷ୍ଟ ।

ବିବର୍ତ୍ତନ ପ୍ରକ୍ରିୟା ଜୀବନ-ସଂଗ୍ରାମ ମାଧ୍ୟମରେ ଜୀବକୁ ଅଧିକ ସୁନ୍ଦର, ଚତୁର ଓ ଚେତନାଦୀପ୍ତ କରି ଗଢ଼ିତୋଳିବାର ପ୍ରଚେଷ୍ଟା କରେ । ଡାରଉଇନ୍‌ଙ୍କ ସଂଗ୍ରାମ ସଂପର୍କିତ ସନ୍ଦର୍ଭ ମନୁଷ୍ୟର ଦୃଷ୍ଟିଭଂଗୀରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟାଇଛି । ମନୁଷ୍ୟର ଚେତନାରେ ବାସ୍ତବଧର୍ମୀ ଏକ କ୍ରାନ୍ତିର ଉତ୍ତରଣ ସଂଘଟିତ କରିଛି । ବଞ୍ଚିବା ମରିବାକୁ ନେଇ ସଂଗ୍ରାମର ଭାବନାକୁ ପ୍ରଶସ୍ତ ଓ କ୍ରିୟାଶୀଳତାକୁ ଅନିବାର୍ଯ୍ୟ ବୋଲି ପ୍ରମାଣ କରି ଦେଇଛି ।

ଖାଦ୍ୟ ଓ ବାସସ୍ଥଳୀ ପାଇଁ ଯଦି ଜୀବଜଗତର ସବୁ ଜୀବ ଅହରହ ସଂଗ୍ରାମ ଜାରି ରଖିଛନ୍ତି, ତେବେ ମଣିଷ ଏଥିରୁ ବାଦ୍‌ଯିବ କିପରି ! ସମାଜର ଶ୍ରେଣୀ ବିଭାଗ, ଶାସକର ଶୋଷଣ ଓ କ୍ଷମତାର ଅପପ୍ରୟୋଗ ମଣିଷ ମନରେ ଏହି ସଂଗ୍ରାମକୁ ତ୍ୱରାନ୍ୱିତ କରାଉଛି । ମନୁଷ୍ୟମାନଙ୍କ ଭିତରେ ଦଳେ ଲୋକ ଖାଇଖାଇ, ନଖାଇପାରି ଖାଦ୍ୟକୁ ଫିଙ୍ଗି ଦେଉଛନ୍ତି, ଅଥଚ ଆଉ ଦଳେ ଦିନରେ ବି ଓଳିଏ ଖାଇବାକୁ ନପାଇ ଭୋକ ଉପାସରେ କାଳାତିପାତ କରୁଛନ୍ତି । ଦଳେ ଦେଶ ବିଦେଶର ବହୁସ୍ଥାନରେ ବହୁମହଲା କୋଠାଘର ନିର୍ମାଣ କରି, ମାସରେ କି ବର୍ଷକରେ ଥରେ ବି ସେଠାରେ ରହିବାକୁ ସମୟ ପାଇପାରୁ ନାହାନ୍ତି, ଅଥଚ ଆଉ ଦଳେ ଶୀତ କାକର ଖରା ବର୍ଷାରେ, ଖୋଲା ଆକାଶ ତଳେ ସମୟ କଟାଉଛନ୍ତି । ମୁଣ୍ଡ ଗୁଞ୍ଜିବାକୁ କୁଡ଼ିଆଟିଏ ବି ନାହିଁ । ତେଣୁ ଗୋଟିଏ ପରିବେଶରେ, ଗୋଟିଏ ଗାଠନିକ ସ୍ଥିତିକୁ ନେଇ ଚରମ ଅବହେଳାରେ ତିଷ୍ଠି ରହିଥିବା ଗୋଟିଏ ଗୋଷ୍ଠୀଙ୍କର ମନ ଭିତରେ ନିତିଦିନ ଜୀଇଁ ରହିବାର ସଂଗ୍ରାମ ସହିତ ଅନ୍ୟ ଏକ ଈର୍ଷାନ୍ୱିତ ସଂଘର୍ଷର ସୂତ୍ରପାତ ସୃଷ୍ଟି ହୋଇଚାଲିଛି । ଏହା ହେବା ମଧ୍ୟ ସ୍ୱାଭାବିକ । ସାଂପ୍ରତିକ ପରିସ୍ଥିତିରେ ସମଗ୍ର ବିଶ୍ୱରେ ଏ ପ୍ରକାର ସଂଗ୍ରାମ ସକ୍ରିୟ ହୋଇ ଉଠିଛି, ଯାହାର ଫଳାଫଳ ଭୟାବହ ହେବା ଅବଶ୍ୟମ୍ଭାବୀ ।

ପରିସ୍ଥିତି ଅନୁଯାୟୀ ଠିକ୍ ସିଦ୍ଧାନ୍ତରେ ବା ଠିକଣା ଜାଗାରେ ନ ପହଞ୍ଚିବା ପର୍ଯ୍ୟନ୍ତ ବିବର୍ତ୍ତନ ପ୍ରକ୍ରିୟା ପ୍ରାଣୀମାନଙ୍କ ଭିତରେ ସଂଗ୍ରାମ ଅନବରତ ଜାରି ରଖିଥାଏ । ସଂଗ୍ରାମ ଜନିତ କ୍ଷୟ ଓ ସୃଷ୍ଟିର ନିତ୍ୟନୂତନ ପରିବର୍ତ୍ତନ ମାଧ୍ୟମରେ ଏହା "ଉପଯୁକ୍ତ"କୁ ପ୍ରାଧାନ୍ୟ ଦିଏ ଏବଂ ଅନୁପଯୁକ୍ତକୁ ଅପସରାଇ ପକାଏ । ବିବର୍ତ୍ତନ ଜୀବନ-ସଂଗ୍ରାମକୁ ଏମିତି ଏକ ନିୟାମକ ମାର୍ଗରେ ନିୟନ୍ତ୍ରଣ କରେ ଯେ, ଉପଯୁକ୍ତ ହିଁ ସମୟ ସହିତ ସବୁବେଳେ ସହଗାମୀ ହୁଏ, ଅନୁପଯୁକ୍ତ ହୁଏ ଅବଲୁପ୍ତ ।

ଜୀବନ ସହିତ ସଂଗ୍ରାମର ନିବିଡ଼ ସଂପର୍କକୁ ବିବର୍ତ୍ତନବାଦ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇଛି । ଏହାକୁ ହୃଦୟଙ୍ଗମ ଓ ବ୍ୟାପକ ବିନିଯୋଗ କରିବାପାଇଁ ପଥ ପରିଷ୍କାର କରିଛି । ସମସ୍ତ ପ୍ରତିବନ୍ଧକ, ବାଧା ବିଘ୍ନ ପରେ ବି ସମୟ, ସମାଜ ଓ ପରିବେଶ ସହିତ ଖାପ୍ ଖୁଆଇବା ପାଇଁ ଜୀବନ-ସଂଗ୍ରାମର ଆବଶ୍ୟକତା ଯେ ଅନିବାର୍ଯ୍ୟ, ତାହା ମନୁଷ୍ୟର କାନେକାନେ କହିଛି । ପ୍ରଚ୍ଛନ୍ନ ଭାବରେ ସମସ୍ତ ପ୍ରାଣୀମାନଙ୍କ ଭିତରେ ପ୍ରାଣର ରକ୍ଷା କବଚକୁ ଚିହ୍ନାଇଛି । ସଚରାଚର ଦେଖାଯାଏ ଯେ, ଜୀବନ-ସଂଗ୍ରାମ ଏକ ସହଜାତ ପ୍ରକ୍ରିୟା । ଏହା ଜୀବନକୁ ବଞ୍ଚାଇ ରଖିବାର ସ୍ପୃହା ପ୍ରଦାନ କରେ । ଦୁର୍ବଳକୁ ସବଳ କବଳରୁ ରକ୍ଷାକରେ । ଚେତନାକୁ ତଥା ଗୋଷ୍ଠୀକୁ ଠିକଣା ପଥରେ ପ୍ରବାହିତ କରାଇବାରେ ସାହାଯ୍ୟ କରେ । ପରିବେଶ ସହିତ ପ୍ରାଣୀର ପ୍ରତିବଦ୍ଧତାକୁ ମାର୍ଜିତ କରାଏ । ଏହା ଆଶା, ଆକାଂକ୍ଷା ଓ କାମନାର କୁହୁକଦଣ୍ଡ । ସବୁକିଛି ଅର୍ଜନ କରିବାର ସ୍ପର୍ଦ୍ଧା ବହନ କରେ ଜୀବନ-ସଂଗ୍ରାମ । କେତେବେଳେ ପାଏ, କେତେବେଳେ ବି ହରାଏ । ସଂଗ୍ରାମୀ ଉପଯୁକ୍ତ ନହେଲେ ସବୁକିଛି ପାଇବା ଅସମ୍ଭବ । ଶକ୍ତ ପ୍ରତିବନ୍ଧକ, ସାମାଜିକ ଚାପ ଓ ବିବେକର ଦଂଶନ ବେଳେବେଳେ ସଂଗ୍ରାମରେ ବାଧା ସୃଷ୍ଟିକରେ । ବ୍ୟର୍ଥତା ଓ ନୈରାଶ୍ୟ ଜନ୍ମାଏ । ଏଥିରେ ହତୋତ୍ସାହିତ ହୋଇ ଯେଉଁ ବ୍ୟକ୍ତି ନିରବ ନିଶ୍ଚେଷ୍ଟ ହୋଇଯାଏ, ସେ କେବେ ପ୍ରତିଷ୍ଠା ଅର୍ଜନ କରିପାରେ ନାହିଁ । କିନ୍ତୁ ଯେଉଁ ବ୍ୟକ୍ତି ସାହସର ସହିତ ବ୍ୟର୍ଥତା ନୈରାଶ୍ୟ ଓ ତତ୍‌ଜନିତ ଦ୍ୱନ୍ଦ୍ୱ ଓ ଅସ୍ଥିରତାକୁ ଅତିକ୍ରମ କରିପାରେ, ସେ ହିଁ କେବଳ ବିଜୟର ସ୍ୱାଦ ଚାଖିପାରେ ।

ପର୍ଯ୍ୟାବରଣରେ ବିଭିନ୍ନ ପ୍ରଜାତି ମାନଙ୍କର ବିବର୍ତ୍ତନ ପ୍ରକ୍ରିୟାରୁ ଶ୍ରେଷ୍ଠ ଜୀବନ ମନୁଷ୍ୟର ଜନ୍ମ । ଜୀବଜଗତର ମହାସମରରୁ ମହାମାନବର ଆବିର୍ଭାବ । ତେଣୁ, ଜୀବନ-ସଂଗ୍ରାମ ହିଁ ଜୀଇଁବାର ବିକାଶଧାରା ଓ ଜୀବନ ଦର୍ଶନ । ଜିତିବା, ନ ଜିତିବା କଥା ସେତେବେଳେ ଉଠିବ, ଯେତେବେଳେ ବ୍ୟକ୍ତି ସଂଗ୍ରାମ ଭୂଇଁରେ ଉପନୀତ ହେବ । ପ୍ରଶଂସାପତ୍ର ପାଉ ନଥିବା ଖେଳୁଆଡ଼ କଣ ମ୍ୟାଚରେ ଭାଗୀଦାର ନୁହେଁ ? ସଂଗ୍ରାମ

ଭୂଇଁରେ ଜଣେ ରଥୀ ହେଲେ, ଅନ୍ୟଜଣକୁ ସାରଥୀ ହେବାକୁ ପଡ଼ିବ । ଜଣେ ସେନାପତି ହେଲେ, ଅନ୍ୟମାନେ ସୈନିକ ହେବେ । ସୈନ୍ୟଟିଏ ବି ସଂଗ୍ରାମରେ ପାରଦର୍ଶିତା ଦେଖାଇ ଦିନେନାଦିନେ ସେନାପତି ପଦରେ ବିମଣ୍ଡିତ ହୋଇପାରେ । ସେଥିପାଇଁ କୁହାଯାଇଛି ଯେ - struggle for existance and survival of the fittest.

ଏ ଦୁନିଆଟା ଗୋଟିଏ ରଣକ୍ଷେତ୍ର । ଆମେ ପ୍ରତ୍ୟେକେ ଜଣେଜଣେ ଯୋଦ୍ଧା । ଏହି ଜୀବନ-ଯୁଦ୍ଧରେ ସମସ୍ତଙ୍କର ଭୂମିକା ସମାନ ନହେଲେ ବି ପ୍ରତ୍ୟେକ ବ୍ୟକ୍ତିର ଗୁରୁତ୍ୱ ରହିଛି । ଏଠାରେ କୌଣସି ବ୍ୟକ୍ତିର ମୂଲ୍ୟବୋଧକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । ଦୃଢ଼ମନା ବ୍ୟକ୍ତିମାନେ ସଂଗ୍ରାମ ଓ ସିଦ୍ଧି ଉପରେ ବିଶ୍ୱାସ ରଖନ୍ତି । କେବଳ ଭୀରୁମାନେ ହିଁ ନିଜର ଭାଗ୍ୟ ଉପରେ ସବୁକିଛି ଛାଡ଼ି ଦିଅନ୍ତି । ସଂଗ୍ରାମ ବ୍ୟକ୍ତି ଭିତରେ ସାହସ ଓ ପ୍ରତ୍ୟୟ ସୃଷ୍ଟିକରେ, ଧିରେଧିରେ ଭିତରର ସାମର୍ଥ୍ୟ ବଢ଼ାଏ ।

ଶାନ୍ତି ଓ ସଂଗ୍ରାମ କର୍ମମୟ ଜୀବନରେ ମନୁଷ୍ୟର ଦୁଇଟି ବାହା । ଆଗକୁ ଅଗ୍ରସର ହେବାର ଦୁଇଟି ପାଦ । ଏ ଦୁଇଟିକୁ ସାଦରେ ବରିନେବା ମନୁଷ୍ୟ କେବଳ ସମାଜରେ ଶକ୍ତ ଭାବରେ ଠିଆ ହୋଇ ତିଷ୍ଠି ରହିପାରେ । ରାଜା ଅଶୋକ ଭଳି ଉତୁଙ୍ଗ ସଂଗ୍ରାମୀ ବି ଶାନ୍ତିର ଦୂତ ସାଜିପାରନ୍ତି । କୃଷ୍ଣଙ୍କ ଭଳି ଶାନ୍ତିର ଦୂତ ମଧ୍ୟ ମହାଭାରତ ସଂଗ୍ରାମର ପ୍ରତ୍ୟକ୍ଷ ସାରଥୀ ଓ ପ୍ରଚ୍ଛଦ ସଂଗ୍ରାମୀ ହୋଇପାରନ୍ତି ।

ତ୍ୟାଗ ଓ ଭୋଗର ସଂଘର୍ଷରୁ ହିଁ ସାମାଜିକ ଜୀବନ-ସଂଗ୍ରାମର ସୃଷ୍ଟି । ଦୁର୍ଯ୍ୟୋଧନ ଚରମ ଭୋଗବାଦୀ ବା ବସ୍ତୁବାଦୀ ଦର୍ଶନର ପ୍ରତୀକ । ଶାନ୍ତିପ୍ରିୟ ଯୁଧିଷ୍ଠିର ସଂଗ୍ରାମ ନକରିବାକୁ ଚାହିଁ ବି ରଣାଙ୍ଗନରେ ଉପନୀତ ହେବାକୁ ବାଧ୍ୟ ହୋଇଥିଲେ । ଶେଷ ମୁହୂର୍ତ୍ତରେ ସଂଗ୍ରାମକୁ ଟାଳିବା ଉଦ୍ଦେଶ୍ୟରେ, ପଞ୍ଚପାଣ୍ଡବ ରହିବା ପାଇଁ ପଡ଼ାଟିଏ ମାଗି ମଧ୍ୟ ନିଷ୍ଫଳ ହୋଇଥିଲେ ଓ ସଂଗ୍ରାମ ଭୂଇଁରେ ଅବତରଣ କରିଥିଲେ । ସେ ଚାହିଁ ମଧ୍ୟ ଜୀବନ-ସଂଗ୍ରାମରୁ ଅବ୍ୟାହତି ପାଇପାରି ନଥିଲେ ।

ସଂଗ୍ରାମ ନ କରିବା ଦୁର୍ବଳତା ନୁହେଁ, ହେଲେ ସଂଗ୍ରାମ କ୍ଷେତ୍ରରୁ ପଛଘୁଞ୍ଚା ଦେବା ଜୀବନ ଦର୍ଶନର ବିପରୀତ ପ୍ରକ୍ରିୟା, ଅକ୍ଷମଣୀୟ ଅପରାଧ । ମନୁଷ୍ୟ ପୃଥିବୀରେ ଥିବା ପର୍ଯ୍ୟନ୍ତ ଶାନ୍ତିରେ ରହିବାକୁ ଚାହିଁବ, ଅଥଚ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରି ଚାଲିଥିବ । ନହେଲେ ଭବିଷ୍ୟତରେ ବିବର୍ତ୍ତନ ପ୍ରକ୍ରିୟା ଅତିମାନସ ଶକ୍ତିକୁ ନେଇ ଅତିମାନବ ସ୍ତରରେ ମନୁଷ୍ୟକୁ ପହଞ୍ଚାଇ ପାରିବ ନାହିଁ ।

ବିବର୍ତ୍ତନ ସବୁବେଳେ ଜୀବନ-ସଂଗ୍ରାମରେ ଉପଯୁକ୍ତ ଓ ନ୍ୟାୟର ପକ୍ଷ ନିଏ । ସେଥିପାଇଁ ରାମାୟଣର ରାବଣ କି ମହାଭାରତର ଦୁର୍ଯ୍ୟୋଧନର ପତନ ଘଟିଛି ।

ସେଥିପାଇଁ ଇତିହାସରେ ହିଟଲର୍ କି ମୁସୋଲିନୀର ପତନ ଘଟିଛି । ଅନ୍ୟାୟ ଓ ଅଧର୍ମର ବିନାଶ ପାଇଁ ମନୁଷ୍ୟଙ୍କୁ ସବୁବେଳେ ସଂଗ୍ରାମ କରିବାକୁ ପଡ଼ିଛି, ପଡ଼ିବ ମଧ୍ୟ । ସଂଗ୍ରାମ ବିନା ମୁକ୍ତି ନାହିଁ ଏହାହିଁ ଗୀତାର ସାରମର୍ମ ।

ଅଠର ଅଧ୍ୟାୟ ଗୀତାର ସୃଷ୍ଟି ମହାଭାରତର ସଂଗ୍ରାମ ଭୂଇଁରେ । ସଂଗ୍ରାମ କ୍ଷେତ୍ରରୁ ନ ଓହରି ଯିବାପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ମହତ୍‌ବାଣୀ ଶୁଣାଇଥିଲେ । ବୁଝାଇ ଥିଲେ ସଂଗ୍ରାମ ହିଁ ଜୀବନର ପୂର୍ଣ୍ଣତାକୁ ଉପଲବ୍ଧି କରାଏ । ଯୁଗେଯୁଗେ ଦୁର୍ବଳ ଉପରେ ସବଳର ଅତ୍ୟାଚାର ଲାଗି ରହିଛି, ହେଲେ ଦୁର୍ବଳ ସବୁବେଳେ ତିଷ୍ଠି ରହିଛି ନିଜର ଗୋଷ୍ଠୀଗତ ଐକ୍ୟ ଓ ପ୍ରଚଣ୍ଡ ସଂଗ୍ରାମ ବଳରେ । ମନୁଷ୍ୟର ଜୀବନ ଶାନ୍ତିକୁ ସ୍ୱୀକାର କରେ, କିନ୍ତୁ ସଂଗ୍ରାମକୁ ଏଡ଼େଇ ଦେଇ ନୁହେଁ । କାରଣ ଶାନ୍ତି ପ୍ରତିଷ୍ଠା ନିମିତ୍ତ ସଂଗ୍ରାମର ଆବଶ୍ୟକତା ମଧ୍ୟ ରହିଛି ।

ସଂସାର ଏକ ସଂଘର୍ଷର କ୍ଷେତ୍ର । ସଂଘର୍ଷ ଭିତରୁ ସୌରଜଗତର ସୃଷ୍ଟି । ଅଣୁ ପରମାଣୁର ସଂଘର୍ଷ ଭିତରୁ ଜ୍ୟୋତିଷ୍କ ଭିତରେ ଆଲୋକ ଏବଂ ଜଳ ଭିତରେ ଜୀବନର ସର୍ଜନା । ଜୀବନରେ ସଂଘର୍ଷର ପରିଣାମ ସୁଖଦ ବା ଦୁଃଖଦ ହୋଇପାରେ । ଏହା ସଂଘର୍ଷ କରିବା ପ୍ରାଣୀ ଉପରେ ହିଁ ନିର୍ଭର କରେ । ସଂଘର୍ଷ ପାଇଁ, ସାଧନାର ଆବଶ୍ୟକତା ରହିଛି । ଅହରହ ସଂଘର୍ଷ ଭିତରେ ଜୀବଜଗତରେ ଏକକୋଷୀ ଆମିବା ଜୀବଠାରୁ ମହନୀୟ ମନୁଷ୍ୟ ବିବର୍ତ୍ତିତ ହୋଇ ଏଯାବତ୍ ବଞ୍ଚିରହି ପାରିଛନ୍ତି । ସଂଘର୍ଷ ବିନା ଜୀବନ ତିଷ୍ଠି ରହିବା ଅସମ୍ଭବ । ସଂଘର୍ଷ ଭିତର ଦେଇ ପ୍ରଜାପତିଟିଏ ନିବୁଜ କୋଷା ଭିତରୁ ବାହାରି ପବନରେ ଉଡ଼ିବୁଲେ । ସଂଘର୍ଷ ବିନା ଜୀବନରେ କୌଣସି ଆଖିଦୃଶିଆ କାର୍ଯ୍ୟକରି ହୁଏନାହିଁ । ସଂଘର୍ଷ ଭିତରଦେଇ ମନୁଷ୍ୟ ଅତିମାନସ ସ୍ତରରେ ପହଞ୍ଚି ପାରିବ, ଦିବ୍ୟ ଚେତନା ମଧ୍ୟ ଉପଲବ୍ଧି କରିପାରିବ, ଏହା ମହାପୁରୁଷଙ୍କ ବାଣୀ ।

ନ୍ୟାୟ ପାଇଁ ଯିଏ ସଂଗ୍ରାମ କରିବ, ଦିନେ ନା ଦିନେ ସେ ନିଶ୍ଚୟ ବିଜୟୀ ହେବ । 'ସତ୍ୟମେବ ଜୟତେ' ମଧ୍ୟ ଅନୁରୂପ କଥା କହେ । ସଂଗ୍ରାମ କରିବାର ସାହସ ମୃତ୍ୟୁଭୟରୁ ମନୁଷ୍ୟଙ୍କୁ ମୁକ୍ତ ରଖେ । ମୃତ୍ୟୁକୁ ଭୟ କରୁଥିବା ଭୀରୁମାନେ ସଂଗ୍ରାମ କ୍ଷେତ୍ରକୁ ଆସି ପାରନ୍ତି ନାହିଁ କି ନଆସି ମଧ୍ୟ ବଞ୍ଚି ରହି ପାରନ୍ତି ନାହିଁ ।

ଜୀବନ ସୃଷ୍ଟିର ପ୍ରାରମ୍ଭରୁ ସମସ୍ତ ପ୍ରକାର ସଂଘର୍ଷରେ ମୁକାବିଲା କରି ଆସିଛି । ସଂଘର୍ଷ ମାଧ୍ୟମରେ ପ୍ରାପ୍ତ ପରିସ୍ଥିତିର ମୁକାବିଲା କରିଆସିଛି, ପ୍ରଗତି କରିଆସିଛି । ଆଗକୁ ମଧ୍ୟ କରି ଚାଲିଥିବ ।

ଜୀବନ-ସଂଗ୍ରାମ ବିଜୟୀ ମନରେ ନୂତନ ଉନ୍ମାଦନା ଭରିଦିଏ, ଚେତନା ସଂଚାର କରେ । ପ୍ରଗତି ପଥରେ ସମାଜକୁ ଆଗେଇ ନେବାର ରାହା ଦେଖାଏ । ଏହା

ଜୀବନର ଅପରିହାର୍ଯ୍ୟ ଅଂଗ । ଏହାର ମୁକାବିଲା ନ କରିପାରିବାର ଅର୍ଥ ମୃତ୍ୟୁବରଣ କରିବା । ଯାହାର ଜୀବନରେ ସଂଘର୍ଷ ନାହିଁ, ତାହାର ଜୀବନ, ଜୀବନ ନୁହେଁ । ଯେଉଁ ଜାତି ସଂଗ୍ରାମ କରି ଶିଖିନାହିଁ, ସେ ଜାତି କେବେ ଉନ୍ନତି କରିପାରିନାହିଁ ।

'କହ କେଉଁ ଜାତି ପାଇଛି ମୁକତି        କରି ହାରିହାରି ଗୁହାରି ?'

ଗୀତାର ସୃଷ୍ଟି ପୂର୍ବରୁ ଅନ୍ୟ କୌଣସି ଶାସ୍ତ୍ରରେ ସଂଗ୍ରାମ ସପକ୍ଷରେ ଅନୁକୂଳ ମତବ୍ୟକ୍ତ କରାଯାଇ ନଥିଲା । ଶ୍ରୀକୃଷ୍ଣ ସଂଗ୍ରାମ କ୍ଷେତ୍ରରେ ବିଷାଦଗ୍ରସ୍ତ ଅର୍ଜୁନଙ୍କୁ ବିଶ୍ୱରୂପ ମାଧମରେ ଦେଖାଇ ଦେଇଥିଲେ ଯେ ଜୀବନ ଭିତରେ ମୃତ୍ୟୁ ଏବଂ ମୃତ୍ୟୁ ଭିତରେ ଜୀବନକୁ । ଦେଖାଇ ଦେଇଥିଲେ ହିଂସା ଭିତରେ ଅହିଂସାକୁ । ରାତ୍ରିର ଘନ ଅନ୍ଧକାର ଭିତରେ ସେ ଦେଖାଇ ଦେଇଥିଲେ ଦିବସର ଦିବ୍ୟ ଆଲୋକ ରେଖା । ସଂଗ୍ରାମ ଭିତରେ ଶାନ୍ତିର ସ୍ୱାଦ ଚଖାଇ ଦେଇଥିଲେ ବିଷାଦଗ୍ରସ୍ତ ମହାବୀର ଅର୍ଜୁନଙ୍କୁ ।

ମନୁଷ୍ୟ ସବୁବେଳେ ଚାହେଁ ଭଲକୁ ଗ୍ରହଣକରି ଖରାପକୁ ତ୍ୟାଗ କରିବାପାଇଁ । ଅନ୍ଧକାର ଠାରୁ ଦୂରେଇ ଯାଇ ଆଲୋକର ନିକଟବର୍ତ୍ତୀ ହେବାପାଇଁ । ସଂଗ୍ରାମଠାରୁ ଦୂରରେ ରହି ଶାନ୍ତିରେ କାଳାତିପାତ କରିବାପାଇଁ । କିନ୍ତୁ ଜୀବନ ଦର୍ଶନ ଏହାକୁ ନେଇ ମନରେ ଦ୍ୱନ୍ଦ୍ୱ ସୃଷ୍ଟି କରାଏ । ସଂଗ୍ରାମ ପାଇଁ ମନ ମଧ ଦ୍ୱନ୍ଦ୍ୱାତ୍ମକ ହେବାକୁ ଚାହେଁ । ନହେଲେ ଶାନ୍ତିକୁ ବିଶ୍ୱାସ କରୁଥିବା ବ୍ୟକ୍ତି ସଂଗ୍ରାମ ପାଇଁ ପୂର୍ଣ୍ଣ ପ୍ରସ୍ତୁତି ନେଇପାରିବ ନାହିଁ । ଏହି ଦ୍ୱନ୍ଦ୍ୱର ସମାଧାନ ହିଁ ସଂଗ୍ରାମରେ ବିଜୟୀ ହେବାର ପଥ ପରିଷ୍କାର କରାଏ । ଜୀବନର ପୂର୍ଣ୍ଣତା ପ୍ରାପ୍ତି ହୁଏ ସେତେବେଳେ, ଯେତେବେଳେ ସଂଗ୍ରାମ ଓ ଶାନ୍ତି ଉଭୟକୁ ମନ ଆନ୍ତରିକତାର ସହ ସ୍ୱୀକାର କରେ ଏବଂ ସମ୍ମାନ ଦିଏ ।

ବଞ୍ଚିବାପାଇଁ ସଂଗ୍ରାମର ଆବଶ୍ୟକତା ରହିଛି ବୋଲି, ମନୁଷ୍ୟ ନିଜକୁ ଯୁଦ୍ଧଖୋର କରି ଥୋଇବା ତାହାର ଅଯଥା ଅହଂକାର । ଯୁଦ୍ଧଖୋର ମନୋଭାବ ବିନାଶର କାରଣ ହୁଏ । ମହାଭାରତ ଯୁଦ୍ଧ ଯେକୌଣସି କାରଣରୁ ସଂଘଟିତ ହୋଇଥାଉନା କାହିଁକି, ଶାନ୍ତିକାମୀ ଯୁଧିଷ୍ଠିର ଆରମ୍ଭରୁ ଏହାର ପକ୍ଷପାତୀ ନଥିଲେ । ସକଳ ପ୍ରକାର ବିକଳ୍ପ ପ୍ରଚେଷ୍ଟାରେ ବିଫଳ ହୋଇ ଶେଷରେ ସଂଗ୍ରାମ ଘୋଷଣା କରିଥିଲେ । ଏହି ମହାସଂଗ୍ରାମରେ ବିଜୟଲାଭ କରି, ନିଜର ଅଧିକାରକୁ ଛଡ଼ାଇ ଆଣି ଶାନ୍ତିରେ ନିଃଶ୍ୱାସ ମାରିଥିଲେ । ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ଓ ମହାଭାରତର ଏହି ମହାଶିକ୍ଷା ପରେ ମନୁଷ୍ୟକୁ ଆଉ ଜୀବନ-ସଂଗ୍ରାମ ବିଷୟରେ ଅଧିକ ବୁଝାଇବା ନିରର୍ଥକ ବୋଲି ମନେକରୁଛି ।



# ଜୀବନ ଓ ସଂଗ୍ରାମ

ବାଞ୍ଛାନିଧି ଦାସ

ଜୀବନ ଯାହାର ଅଛି, ଅଛି ତାର ଜୀବନ ସଂଗ୍ରାମ । ସାରା ଜୀବନଟା ତେଣୁ ସଂଗ୍ରାମର ଅନ୍ୟ ଏକ ନାମ । ବହୁ ବର୍ଷ ତଳେ ରାଉରକେଲାର କବି ହରେକୃଷ୍ଣ ଦାସ ନିଷ୍ପତ୍ତି କବିତାରେ ଏହି ପଙ୍‌କ୍ତି ଲେଖିଥିଲେ । କବି ହରେକୃଷ୍ଣ ଦାସ ଖଟିଖିଆର କବି ହୋଇଥିବାରୁ ଏଭଳି ଅନ୍ତର୍ଦୃଷ୍ଟି ସଂପନ୍ନ କବିତା ଲେଖି ପାରିଥିଲେ । ସେ ଲେଖିଛନ୍ତି -

ସଂଗ୍ରାମେ ବିଜୟ ଅଛି, ଅଛି ପୁଣି ବାଧା ପରାଜୟ
ପରାଜୟ ପାଇଁ ତେଣୁ ପ୍ରାଣେ ମୋର ଲାଗେ ନାହିଁ ଭୟ !

(ମାଇଲିଏ କବିତାର ପଥ - କବିତା ସଂକଳନ)

ସଂଗ୍ରାମରେ କେବେକେବେ ପରାଜୟ ବରଣ କରି କବି କେବେହେଲେ ଥକି ଯିବେନାହିଁ । ସେଥିରେ ହତୋତ୍ସାହିତ ହୋଇ ପରାଜୟକୁ ନିୟତି ବୋଲି ମାନିନେବେ ନାହିଁ କି ପରାଜୟର ଗୌରବଗାନ କରି ବୁଲିବେ ନାହିଁ । ବରଂ ସେ ନୂତନ ପ୍ରେରଣା ସଂଗ୍ରହ କରି ପୁଣି ଫେରିଯିବେ ସେ ସଂଗ୍ରାମର ପଥକୁ ।

ଅସମୟ ଚକ୍ରେ ପଡ଼ି ଧର ଯଦି ଆସ କେବେ ହାରି
ପୁଣି ଜାଗି ଉଠିବାକୁ ଶକ୍ତି ଯଦି ମନୁ ଯାଏ ମରି ।
ମୁଁ କି ହାୟ ପ୍ରଚାରିବି କେବେହେଲେ ପରାଜୟ କଥା ?
ଆନକୁ କହିବି କି ମୁଁ ମୋ ପଥର ଯେତେ ଭୟ ବ୍ୟଥା ?
ସଂଗ୍ରାମୀ ମଣିଷ ହାତେ ନ ଦେଲି ମୁଁ ଯଦିବା ଆଲୋକ
କି କାରଣେ ତା'ର ମନେ ଜଗାଇବି ଜଡ଼ତା ଓ ଶୋକ ?

(ମାଇଲିଏ କବିତାର ପଥ)

ଜୀବନ ସଂଗ୍ରାମ ସଂପର୍କରେ ଏ କବିଙ୍କ ଏ ନିଷ୍ପତ୍ତି ବାସ୍ତବରେ ବିଜ୍ଞାନ ସମ୍ମତ ଓ ଯୁକ୍ତିସମ୍ମତ ନିଷ୍ପତ୍ତି ।

ଜୀବନ ଅର୍ଥ ଆମେ ଗୋଟାଏ ସାମାଜିକ ଜୀବନଯାପନର ଧାରାକୁ ବୁଝୁ । ଏହା ଯୁଗରୁ ଯୁଗାନ୍ତର, ମନ୍ୱନ୍ତରୁ ମନ୍ୱନ୍ତର ଅବାରିତ ଧାରାରେ ବହୁ ଅଛି । "ନିସ୍ତବ୍ଧେ

ଜୀବନ-ସ୍ରୋତ ଧାଉଁଛି କିପରି !" ମଧୁରାଓଙ୍କ ଭାବଗମ୍ଭୀର ଦାର୍ଶନିକ ଦୀକ୍ଷା ହୁଏତ ଜୀବନର ଗୋଟିଏ ପାର୍ଶ୍ୱର ଦୃଶ୍ୟ । ମାତ୍ର ପ୍ରବହମାନ ଜୀବନସ୍ରୋତରେ ନିରବଚ୍ଛିନ୍ନ ପ୍ରସ୍ଥାନ ଓ ଆଗମନ ଲାଗି ରହିଥାଏ, ଏଇ ସତ୍ୟ ତାଙ୍କ ଆଖିରେ ଧରା ପଡ଼ିନାହିଁ । 'ଶାଶୁ ମଲା, ବୋହୂ ଚେଇଁଲା' ଯାହା ଗାଉଁଲି କଥାରେ କୁହାଯାଇଛି ତାହା ହେଉଛି ପ୍ରବହମାନ ଜୀବନ ସ୍ରୋତର ଭିତିରିଆ ପ୍ରକୃତି । ସମୟ ଗର୍ଭରେ ଏହା ଚିରନ୍ତନ ନବୀକରଣ ଓ ଚିରନ୍ତନ ଦ୍ୱନ୍ଦ୍ୱର ସୂଚନା ଦିଏ ।

ସମୟର ଦ୍ୱନ୍ଦ୍ୱ ବସ୍ତୁତଃ ସମାଜର ଦ୍ୱନ୍ଦ୍ୱ, ବିକାଶ ପଥର ଦ୍ୱନ୍ଦ୍ୱକୁ ବୁଝାଏ । ହେଗେଲ୍‌ଙ୍କ ମତରେ ବିନା ଦ୍ୱନ୍ଦ୍ୱରେ ପ୍ରଗତି ଅସମ୍ଭବ । ସମାଜର ଉତ୍ପାଦନ ଶୈଳୀ ମଧ୍ୟରେ ସମୟର ତାଳେତାଳେ ଅହର୍ନିଶ ଦ୍ୱନ୍ଦ୍ୱର ସୂତ୍ରପାତ ହୋଇ ନଥିଲେ, ଆମ ସଭ୍ୟତାର ବିକାଶ ହୁଏତ ଆଜିବି ଅଟକି ରହିଯାଇଥାନ୍ତା ପ୍ରାଚୀନ ପ୍ରସ୍ତର ଯୁଗରେ । ମଣିଷର ଶ୍ରେଣୀ ସଂପର୍କ ଭିତରେ ଅହରହ ଦ୍ୱନ୍ଦ୍ୱ ଲାଗି ଥିବାରୁ ନୂଆସଂପର୍କ ଓ ଉତ୍ପାଦନ ବ୍ୟବସ୍ଥା ସେଥିରୁ ମୁଣ୍ଡଟେକି ବିଜୟୀ ହୋଇ ବାହାରି ଆସିଛି । ଉତ୍ପାଦନର ନୂତନତା ନୂଆ ଏକ ସମାଜ ଗଠନର ପ୍ରତିଶ୍ରୁତି ଦେଇଛି ଓ ତାକୁ କାର୍ଯ୍ୟରେ ରୂପାନ୍ତରିତ କରିଛି । ମାର୍କସ ଏଇ ଦ୍ୱନ୍ଦ୍ୱ ତତ୍ତ୍ୱକୁ ବିଭିନ୍ନ କାଳର ସମାଜର ବାସ୍ତବବାଦୀ ବିକାଶ ସହ ସୁସମଞ୍ଜସ କରି ଗଢ଼ିଲେ ପ୍ରସିଦ୍ଧ ତତ୍ତ୍ୱ ଡାୟଲେଟିକ୍ୟାଲ ଇଣ୍ଟରପ୍ରିଟେସନ୍ ଅଫ୍ ହିଷ୍ଟ୍ରି । ଏଇ ତତ୍ତ୍ୱକୁ ନେଇ ସେ ପାଶ୍ଚାତ୍ୟ ସମାଜରେ ଦାସଯୁଗ, ସାମନ୍ତବାଦୀ ଯୁଗ, ପୁଞ୍ଜିବାଦୀ ଯୁଗ ସମ୍ଭବ ହୋଇଛି ବୋଲି ନିର୍ଣ୍ଣୟ କରି ଦେଖାଇଲେ । ଇତିହାସକୁ ସନ, ମସିହା, ଯୁଦ୍ଧବିଗ୍ରହ, ବଂଶାବଳୀର ଶାସନ ଆଦି କଣ୍ଠିରେ ଜପାମାଳି ପରି ବ୍ୟାଖ୍ୟା କରି ନାହାନ୍ତି ମାର୍କସ୍ । ସେ ଇତିହାସକୁ ପ୍ରଥମେ କଲେ ବସ୍ତୁବାଦୀ ଢାଞ୍ଚାରେ ବ୍ୟାଖ୍ୟା । ଆଜିଯାଏ ଏ ବାଖ୍ୟାକୁ କେହି ଦାର୍ଶନିକ ଯୁକ୍ତି ଓ ବିବେଚନା ବଳରେ କାଟି ପାରିନାହାନ୍ତି ।

ନିଜ ଜୀବନ ଭିତରକୁ ନିଜ ଜୀବନକାଳ ମଧ୍ୟରେ ଚାଲିଥିବା ସାମାଜିକ ବା ଆର୍ଥନୀତିକ ଦ୍ୱନ୍ଦ୍ୱ ସବୁକୁ ଅବଶ୍ୟ ପାଛୋଟି ଆଣିବାକୁ ପଡ଼ିବ । ଆପଣ ଘଟଣାର ପ୍ରବାହରେ ଯଦି ନିଶ୍ଚେଷ୍ଟ ହୋଇ କୁଟାଖିଅଟି ପରି ଭାସିବୁଲନ୍ତି ତେବେବି ଆପଣଙ୍କର ନିସ୍ତାର ନାହିଁ । ଦ୍ୱନ୍ଦ୍ୱଭିତରୁ ହୁଏତ ପରିବର୍ତ୍ତନ ବିଳମ୍ବରେ ଜନ୍ମନେବ - ମାତ୍ର ଦିନ ଆସିବ ଏବଂ କୁଟାଖିଅଟିକୁ ସୁଅ ମୁହଁରେ ହୁଏତ ଭସାଇନେଇ ଯାଇପାରେ । ସ୍ୱାଭାବିକ ଗତିରେ ପରିବର୍ତ୍ତନକୁ ଆମେ ଉଦ୍‌ବର୍ତ୍ତନ ବା ବିବର୍ତ୍ତନ (evolution) କହୁଁ । ସମାଜର ଦ୍ୱନ୍ଦ୍ୱକୁ ବିପ୍ଳବ ବଳରେ ତୁରନ୍ତ ପରିବର୍ତ୍ତନମୁଖୀ କରାଯାଇପାରେ, ସେ ପରିବର୍ତ୍ତନକୁ ବିପ୍ଳବ ବା

revolution କୁହାଯାଏ । ଏହି ତ୍ୱରାନ୍ୱିତ ପରିବର୍ତ୍ତନ ପ୍ରକ୍ରିୟା ଚୂଡ଼ାନ୍ତ ହେବାକୁ ସମାଜର ବିକାଶ ପଥରେ ମନୋନିଷ୍ଠ ଓ ବସ୍ତୁନିଷ୍ଠ ଉପାଦାନ ସବୁର ପରିପୂରକତା ରହିବା ଜରୁରି । ବିପ୍ଳବର ସଂଗଠନ ପାଇଁ ଏକ ଦିଗରେ ଏକ ଲଢୁଆ ବିପ୍ଳବୀ ରାଜନୈତିକ ଦଳ ଯେଉଁପରି ଦରକାର, ସେହିପରି ଦର୍କାର ସମାଜର ଆର୍ଥନୀତକ ଦ୍ୱନ୍ଦ୍ୱ ପରି ବସ୍ତୁନିଷ୍ଠ ଉପାଦନାର ପରିପୃକ୍ତି । ଦୁଇ ସର୍ତ୍ତରେ ଟିକିଏ ଉନିଶ୍-ବିଶ୍ ହେଲେ ବିପ୍ଳବ ସମ୍ଭବିବ ନାହିଁ । ଭାରତର ମହାନ୍ ଆକାଶରେ ଏପରି କେତେଥର ଘମାଘୋଟ ବଜ୍ରବାଦଲ ଘୋଟି ଆସିଛି, ମାତ୍ର ସେ ମେଘ ବର୍ଷିନାହିଁ, କଦାପି - ଥରେହେଲେ ।

ଏବେ ଆମ ଦେଶରେ ବିପ୍ଳବୀ ରାଜନୈତିକ ଦଳ ଗୁଡ଼ିକରେ ସୌଖୀନ ବିପ୍ଳବୀମାନଙ୍କର ବୋରଝାଞ୍ଜି ଦଳ ଭର୍ତ୍ତି ହୋଇଗଲେଣି । ସୌଖୀନ ବିପ୍ଳବୀମାନେ ସ୍ଥିତାବସ୍ଥାର ହଲିଲା ପାଣିରେ ଆଦୌ ହାତ ବୁଡ଼ାନ୍ତି ନାହିଁ । ଯାହା ଯେମିତି ଚାଲିଛି ସେଇମିତି ଚାଲିଥାଉ ବୋଲି ସେମାନେ ରାତିରେ ପ୍ରାର୍ଥନା କରି ପ୍ରତିଦିନ ଶୁଅନ୍ତି । ନିଜ ଗାଡ଼ିଘୋଡ଼ା,. ଇମାରତ୍‌ରେ ଆଞ୍ଚ ଆସିବ ନାହିଁ, ନିଜ ପରିବାରର ଜନସମ୍ବଳ ଓ ଧନ ସମ୍ବଳ କ୍ଷୟ ହେବନାହିଁ ଏହା ତାଙ୍କ କାମନା । ଏହି ଆଚରଣକାରୀଙ୍କ ଦ୍ୱାରା ଅଷ୍ଟମ ପ୍ରହରୀ ସଂକୀର୍ତ୍ତନ ଦଳ ଗଢ଼ା ହୋଇ ପାରିବ ସିନା, ସାମାନ୍ୟ ପ୍ରତିକ୍ରିୟା ବି ସୃଷ୍ଟି ହୋଇ ପାରିବ ନାହିଁ । ଏମାନେ ନିଜ ରାଜନୀତିକ ଦଳକୁ ଶୋଧନବାଦ ଆଡ଼କୁ ଟାଣିନେଇ ଯାଆନ୍ତି । ଏମାନଙ୍କ ମୁହଁ ଇସ୍‌ପାତ ମାତ୍ର ଗାଣ୍ଡି ସନିପାତ । ବଡ଼ ଥିଓରି ଏମାନେ ବଖାଣନ୍ତି, ମାତ୍ର ବାସ୍ତବରେ କାମ ବେଳକୁ ଶୂନ । କର୍ମବୀର ଲେନିନ୍ ତେଣୁ ପ୍ରକୃତ ବିପ୍ଳବୀ ପାର୍ଟିର ନିଉକ୍ଲିଅସ୍‌ରେ କେତେଜଣ ଅଟଳ ଅଥଚ ପେଶାଦାର ବିପ୍ଳବୀ ରହିବାକୁ ପରାମର୍ଶ ଦେଇଥିଲେ । ସେମାନେ ଉପସ୍ଥିତ ସମାଜର ପ୍ରକୃତ ମୁଖ୍ୟ ଦ୍ୱନ୍ଦ୍ୱଗୁଡ଼ାକ କ'ଣ - ତାକୁ ସମାଧାନ କରିବାପାଇଁ କି ପ୍ରକାର ଷ୍ଟ୍ରାଟେଜି ଓ ଟେକ୍‌ଟିସ୍ ଦରକାର ତାକୁ ନିର୍ଣ୍ଣୟ କରିବେ । ପାର୍ଟିର କାର୍ଯ୍ୟକ୍ରମ ସ୍ଥିର କରାଇ ତାକୁ କାର୍ଯ୍ୟାନୁସାରୀ କରିବାପାଇଁ ପ୍ରାଣପଣେ ଉଦ୍ୟମ କରିବେ । ଅକ୍ଟୋବର ବିପ୍ଳବ, ଚୀନାମୁକ୍ତି ଆନ୍ଦୋଳନ, ଭିଏତ୍‌ନାମ ମୁକ୍ତିସଂଗ୍ରାମ- ଏସବୁ ହେଲା ବସ୍ତୁତଃ ଏମିତି କେତେକ ପ୍ରଫେସନାଲ୍ ବିପ୍ଳବୀମାନଙ୍କର ସ୍ୱପ୍ନର ଫଳ ।

ଅତ୍ୟାଧୁନିକ ମାନବର ଗତି ବଢ଼ିଲା ନଦୀ ପରି କୂଳ ଲଙ୍ଘି ଦିଗ୍‌ବିଦିଗ୍ ମାଡି ଯାଉଥିବା ପରି ହେଉଛି । ନିଜକୁ ଆଗୁଆ ବୋଲି ଦାବି କରୁଥିବା ପଶ୍ଚିମା ଦେଶଗୁଡ଼ାକ ଏବେ ବିଶ୍ୱରେ ଏହି ପ୍ରକାର ସୃଷ୍ଟିଛଡ଼ା ବ୍ୟବହାର କରୁଛନ୍ତି । ଆମ ପରି ତୃତୀୟ ବିଶ୍ୱର ବିକାଶଶୀଳ ଦେଶର ଧନଜୀବନକୁ ସେମାନେ ପଣ୍ୟଠାରୁ ହୀନ ମଣୁଛନ୍ତି । ଗାନ୍ଧିବାଦୀ-

ନେହେରୁବାଦକୁ ଜପମାଳି ପରି ପିନ୍ଧି ଆମ ଦେଶର ଯେଉଁ ତଥାକଥିତ ଜନସେବକଗଣ ସେବା କରିବାକୁ ବାହାରିଛନ୍ତି, ସେମାନଙ୍କୁ ପାଶ୍ଚାତ୍ୟ କର୍ପୋରେଟ୍ ଗୃହମାନେ ମଣିଷଜ୍ଞାନ କରୁନାହାନ୍ତି । ଆମେ ଗରିବ ହୋଇଥିବାରୁ ଆମେ ତାଙ୍କ ଆଖିରେ ପୋକମାଛି ପରି ଜଣାପଡୁଛୁ । ଆମ ଜୀବନର ଗୋଟାଏ ମୂଲ୍ୟ ଅଛି- ଏ ଜଗତର ଜାଗତିକ ଉନ୍ନୟନ ପାଇଁ ଆମର ଯତ୍‌ସାମାନ୍ୟ ଅବଦାନ ଅଛି- ସେମାନଙ୍କ ଏକଥାକୁ ଖାତର୍ ନାହିଁ । ପୁଞ୍ଜିର ପ୍ରାବଲ୍ୟ ମଣିଷର ଆଚରଣ ବ୍ୟବହାରକୁ ଏମିତି ପରିବର୍ତ୍ତିତ କରିଦିଏ, ମଣିଷ ସେଠି ପାଲଟିଯାଏ ଟଙ୍କାର ଚାକର । ଏବେ ସାଧାରଣ ମଣିଷ କଥା ଛାଡ଼, ଆମ ପାର୍ଲାମେଣ୍ଟ, କୋର୍ଟ କେଚରି ଏବଂ ରାଷ୍ଟ୍ରମୁଖ୍ୟ ମଧ୍ୟ ବିଦେଶୀ କ୍ଷମତାଧର କର୍ପୋରେଟ୍ ହାଉସ୍‌ଙ୍କ ବୋଲକରା ପାଲଟି ଗଲେଣି । ଏ ଶାସନରେ ସାଧାରଣ ଲୋକଙ୍କ ଧନ ଜୀବନ ସୋଲପରି ସମୟର ଦରିଆରେ ଭାସୁଛି ।

ତେବେ ସମକାଳୀନ ସାଧାରଣ ଜୀବନକୁ ସଂକଟରୁ କେମିତି ରକ୍ଷା କରାଯିବ- ସମସ୍ତେ ବସି ଭାବିଲେଣି । "ସର୍ବେ ହୋଇଣ ଏକ ମୁଖ"ର ଅବସ୍ଥା ଆସିଗଲାଣି । ଏବେ ଗାନ୍ଧି ଆସିଲେ ବି ଆମକୁ ଏଥିରୁ ପାର ଉତାର କରିପାରିବେ ନାହିଁ । ଏବେ ନିଜ ରକ୍ଷାର ଦାୟିତ୍ୱ ନିଜ ମୁଣ୍ଡରେ ପଡ଼ିଲାଣି । ଭାରତୀୟ ମହାଜୀବନକୁ ସଂକଟରୁ ରକ୍ଷା କରିପାରିବ ଏକମାତ୍ର ସମଷ୍ଟିର ମନ୍ତ୍ର- ସମଷ୍ଟିର ଶକ୍ତି । ଯେଉଁ ସମଷ୍ଟି ହୋଇଥିବ ସୁସଂଗଠିତ, ଏକତାର ପତକାତଳେ ରୁଣ୍ଡିଭୂତ, ହୋଇଥିବ ପୁରୋଦ୍ରଷ୍ଟା ଓ ସେଇ ସମଷ୍ଟିର ମନରେ ଥିବ ପରିତ୍ରାଣର ମନ୍ତ୍ର- "ସର୍ବହରାର ଏକନାୟକତ୍ୱବାଦର ସ୍ୱାହା ଧ୍ୱନି"- ସେଇ କେବଳ ଯୁଗର ଏ ସଂକଟରୁ ଏ ମହାନ୍ ମାଟିର ଜନଗଣଙ୍କର ଆରକୂଳରେ ଲଗାଇ ପାରିବ । ଆଜିର ନବ୍ୟ ସାମ୍ରାଜ୍ୟବାଦର ନଗ୍ନ ଶୋଷଣ ଓ ଅତ୍ୟାଚାର ଏମିତି ମୋଡ଼ରେ ଆସି ପହଞ୍ଚିଲାଣି ଯେ, ଏବେ ଅନ୍ୟାୟର ପ୍ରତିବାଦ୍ କରିବା ସାମାନ୍ୟ ଏକ ଇଂଜେକ୍‌ସନ ପରି ଲାଗିବ । ଏଠି ପ୍ରତିବାଦ କି ପ୍ରତିରୋଧ କାର୍ଯ୍ୟ କରିବ ନାହିଁ । ଏଠି କେବଳ କାମ କରିବ ସଶସ୍ତ୍ର ମୁକ୍ତି ଯୁଦ୍ଧ ।

ସଂଗ୍ରାମ ବିନା ଆଜି ସୁସ୍ଥ ନାଗରିକ ଜୀବନ କଳ୍ପନା କରାଯାଇ ପାରେନା । ସଂଗ୍ରାମ ନକଲେ ନ୍ୟସ୍ତସ୍ୱାର୍ଥ ଶୋଷକଗୋଷ୍ଠୀ ଜୀବନବାଦୀମାନଙ୍କୁ ବାଟ ଛାଡ଼ି ଦେବେ ନାହିଁ । ସଂଗ୍ରାମ ନକଲେ ଆମର ଏ କ୍ରୀତଦାସତ୍ୱ କେବେ ହଟିବ ନାହିଁ । ପାଶ୍ଚାତ୍ୟ ପୁଞ୍ଜିବାଦୀ ରାଷ୍ଟ୍ରମାନେ ଚକ୍ରାନ୍ତ କରି ଏ ଯାଏ ଆମର ସ୍ୱାଧୀନତାର ସୂର୍ଯ୍ୟକୁ ଅକାଳ

ବାଦଲରେ ଘୋଡ଼ାଇ ରଖିଛନ୍ତି । ଆମକୁ 'କଞ୍ଚାମାଲର ଦେଶ' ସୋପାନରୁ ସେମାନେ ଉପରକୁ ଉଠିବାକୁ କେବେ ଦେଇନାହାନ୍ତି ବା ଦେବେନାହିଁ । ସଂଗ୍ରାମ କରିପାରିଲେ ବଞ୍ଚି ରହିହେବ । ସଂଗ୍ରାମ ବିନା ତିଷ୍ଠିବା ଅସମ୍ଭବ । ତେଣୁ ଆଜି 'ଯୁଦ୍ଧାୟକୃତ ନିଶ୍ଚୟ'ର ଅବସ୍ଥା ଉପୁଜିଛି ।

ନିଜର ଜୀବନ-ସଂଗ୍ରାମକୁ ଶୋଷଣ ବିରୁଦ୍ଧରେ ଗର୍ଜିଉଠିଥିବା ଜନଯୁଦ୍ଧ ସହିତ ଯୋଡ଼ିବାକୁ ହେବ ଏବଂ ଜନତାର ସଂଗ୍ରାମକୁ ବିଦେଶୀର ଶୋଷଣଖୋରୀ ମନୋବୃତ୍ତି ବିରୁଦ୍ଧରେ ଠିଆ କରିବାକୁ ହେବ । 'ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ ଜାତି ପ୍ରାଣ ସିନ୍ଧୁ ନୀରେ' ବସ୍ତୁତଃ ହେଉଛି ଆଜିର ଆହ୍ୱାନ ।।



# ସାଂପ୍ରତିକ ଜଗତୀକରଣ ପରିପ୍ରେକ୍ଷୀରେ ଲୋକମହୋତ୍ସବ, ଲୋକକଳା, ସାହିତ୍ୟ ଓ ସଂସ୍କୃତି

ଗୋଲକ ବିହାରୀ ନାଥ

ସଂପ୍ରତି ସାରା ଓଡ଼ିଶାରେ ଲୋକମହୋତ୍ସବ ଆୟୋଜନ କରାଯାଉଛି । ରାଜ୍ୟସ୍ତରୀୟ ଲୋକମହୋତ୍ସବ ବ୍ୟତୀତ ଜିଲ୍ଲାସ୍ତରୀୟ, ସବ୍‌ଡିଭିଜନ୍ ସ୍ତରୀୟ ଏପରିକି ବ୍ଲକ୍‌ସ୍ତରୀୟ ଲୋକମହୋତ୍ସବମାନ ପାଳନ କରାଯିବାର ପରମ୍ପରା ଏଇ ଅଳ୍ପ କିଛି ବର୍ଷର । ବେଳେବେଳେ ଏହା ସ୍ଥାନୀୟ ଦେବାଦେବୀ, ଦର୍ଶନୀୟସ୍ଥାନ, ପର୍ଯ୍ୟଟନସ୍ଥଳୀ, ସହରର ନାମାନୁସାରେ ନାମକରଣ କରାଯାଇଥାଏ । ଯେପରିକି ଦେବଗଡ଼ରେ ଏହା ପ୍ରଧାନପାଟ ଉତ୍ସବ, ପୁରୀରେ ବେଳାଭୂମି ଉତ୍ସବ, କୋଣାର୍କରେ କୋଣାର୍କ ଉତ୍ସବ, ଝାରସୁଗୁଡ଼ାରେ ଝାରସୁଗୁଡ଼ା ଉତ୍ସବ, ସମ୍ବଲପୁରରେ ସମ୍ବଲପୁର ଲୋକମହୋତ୍ସବ, ମାଲାକାନଗିରିରେ ମାଲ୍ୟବନ୍ତ ଉତ୍ସବ, କୋରାପୁଟରେ ପରବ ଇତ୍ୟାଦି । ଏ ସମସ୍ତ ଉତ୍ସବଗୁଡ଼ିକର ଆୟୋଜନର ଉଦ୍ଦେଶ୍ୟ ଲୋକକଳା, ଲୋକସାହିତ୍ୟ, ଲୋକଗୀତ, ଲୋକବାଦ୍ୟ, ଲୋକ ସଂସ୍କୃତିର ପୁନରୁଦ୍ଧାର, ସଂରକ୍ଷଣ ଓ ପ୍ରଚାର ପ୍ରସାର ନିମନ୍ତେ ଉଦ୍ଦିଷ୍ଟ ବୋଲି କୁହାଯାଉଛି । ଅବଶ୍ୟ କୋଣାର୍କ ଉତ୍ସବକୁ ଖଜୁରାହୋ ଉତ୍ସବ ଶୈଳୀରେ ପରିବେଷଣ କରି ଓଡ଼ିଶାକୁ ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରିବା ଉଦ୍ଦେଶ୍ୟ ରଖାଯାଇଛି । ଭାରତରେ ଗରିବଙ୍କ ନାଁରେ ନାନାପ୍ରକାର ଯୋଜନା ଚାଲୁଥିବା ପରି ଏଠାରେ ଲୋକଙ୍କ ନାଁରେ ରାଜ୍ୟ ତଥା କେନ୍ଦ୍ର ସଂସ୍କୃତି ବିଭାଗ ପୃଷ୍ଠପୋଷକତାରେ ଲୋକମହୋତ୍ସବ ସବୁ ଆୟୋଜନ କରାଯାଉଛି । ଯୁଗେଯୁଗେ କଳା, ସାହିତ୍ୟ, ସ୍ଥାପତ୍ୟର ପୃଷ୍ଠପୋଷକତା ରାଜା, ମହାରାଜା, ସାମନ୍ତ ଶ୍ରେଣୀମାନେ ହିଁ କରିଆସିଛନ୍ତି । ଆଜି ରାଜାରାଜୁଡ଼ା ଓ ସାମନ୍ତ ଯୁଗର ଅବସାନ ପରେ ସେମାନେ ଗଣତାନ୍ତ୍ରିକ ଅନୁଷ୍ଠାନ ମାନଙ୍କ ମାଧ୍ୟମରେ ସରକାରରେ ରହି ସାହିତ୍ୟ, କଳା ଓ ସ୍ଥାପତ୍ୟର ପୃଷ୍ଠପୋଷକତା କରିବା ସେପରି କିଛି ନୂଆ କଥା ନୁହଁ । ତେବେ ଏଠାରେ ପ୍ରଶ୍ନ ଉଠୁଛି ଯେ କେଉଁ 'ଲୋକ'ମାନଙ୍କ ନାମରେ ଏ ଉତ୍ସବ ସବୁ ପାଳନ କରାଯାଉଛି ? ଯେଉଁ କଳାକାରମାନେ ଉତ୍ସବରେ ଅଂଶଗ୍ରହଣ କରୁଛନ୍ତି ସେ ଲୋକ କଳାକାରମାନେ

କିଏ ? କିଛି ଗବେଷକ କହିଲା ପରି ସତରେ କ'ଣ ଲୋକକଳା ଓ ଲୋକ ସଂସ୍କୃତିର ଅବକ୍ଷୟ ହୋଇଯାଉଛି ଏବଂ ସେ ଅବକ୍ଷୟମୁଖୀ ଲୋକକଳାକୁ ଉତ୍ସବ ଆୟୋଜନ ମାଧ୍ୟମରେ ନୂତନ ଜୀବନ, ନୂତନ ଦିଗ୍‌ଦର୍ଶନ ଦିଆଯାଇପାରିବ ? ସାରାବିଶ୍ୱରେ ଜଗତୀକରଣ, ଉଦାରୀକରଣ ଓ ଘରୋଇକରଣର ଜୟଯାତ୍ରା ଚାଲିଥିବାବେଳେ ହଠାତ୍ ସର୍ବତ୍ର ଲୋକମହୋତ୍ସବର ଆୟୋଜନ ତୃତୀୟ ବିଶ୍ୱର କଳା, ସାହିତ୍ୟ ଓ ସଂସ୍କୃତିକୁ ଏକ ପଣ୍ୟଦ୍ରବ୍ୟରେ ପରିଣତ କରି ଲାଭ ଉଠାଇବାର ଏକ ପୂର୍ବାଭାସ ନୁହେଁତ ? ଯେଉଁ ସାମାଜିକ ତତ୍ତ୍ୱ ବିଭିନ୍ନ ପର୍ଯ୍ୟାୟରେ ଲୋକଗୀତ, ଲୋକନୃତ୍ୟ, ଲୋକକଳା, ସାହିତ୍ୟ ଓ ସଂସ୍କୃତିକୁ ତଣ୍ଟିଚିପି ହତ୍ୟା କରିଥିଲା, ସେ ଆଜି କାହିଁକି ତା'ର ରକ୍ଷଣାବେକ୍ଷଣ ନିମନ୍ତେ ଏତେ ଲାଳାୟିତ ? ସମାଜର ସାଧାରଣ ଲୋକ ଆଜିଏ ପ୍ରଶ୍ନଗୁଡ଼ିକର ଉତ୍ତରରେ ଆଶା ରଖେ ।

ଐତିହାସିକ ବିବରଣୀ ମାନଙ୍କରୁ ଜଣାଯାଏ ଯେ ଓଡ଼ିଶା ଏକଦା ଆଦିମ ଆଦିବାସୀ ମାନଙ୍କର ବାସସ୍ଥଳୀ ଥିଲା । ପରେ ଆର୍ଯ୍ୟମାନେ ଆସି ବର୍ଣ୍ଣାଶ୍ରମ ଧର୍ମ ପ୍ରଚଳନ କରି ସମାଜକୁ କ୍ଷତ୍ରିୟ, ବ୍ରାହ୍ମଣ, ବୈଶ୍ୟ ଏବଂ ଶୂଦ୍ର ଭାବରେ ବିଭାଜନ କରି ଜାତିଭେଦ ପ୍ରଥାର ବୀଜବପନ କରିଥିଲେ । ଆଦିମ ଅଧିବାସୀମାନଙ୍କୁ ମୂର୍ଖ, ଅଶିକ୍ଷିତ, ବର୍ବର ଅନାର୍ଯ୍ୟ କହି ସମାଜର ନିମ୍ନସ୍ଥାନ ଦେଇ ବହିରାଗତ ଆର୍ଯ୍ୟମାନେ ବିଭିନ୍ନ ସ୍ଥାନର ଶାସକ ହୋଇ ଯାଇଥିଲେ । ସେମାନେ ନିଜକୁ ସୋମବଂଶ, ସୂର୍ଯ୍ୟବଂଶ, ଚୌହାନ୍ ବଂଶ, ଗଂଗବଂଶ ଆଦି କ୍ଷତ୍ରିୟ ଗୋଷ୍ଠୀ ଭାବରେ ଉପସ୍ଥାପନ କରି ରାଜନୀତିକ କ୍ଷମତା ବିସ୍ତାର କରିଥିଲେ । ସ୍ଥାନୀୟ କୃଷି ବାଣିଜ୍ୟ ବ୍ୟବସାୟ ପ୍ରଭୃତି ଆର୍ଥନୀତିକ ବ୍ୟବସ୍ଥାକୁ ହାତକୁ ନେଇ ଯାଇଥିଲେ । ସ୍ଥାନୀୟ ତୃଣମୂଳ ଅଧିବାସୀମାନଙ୍କୁ ଶବର, ଗଣ୍ଡ, ଗଣ୍ଡା, ଭୂୟାଁ, କୋହ୍ଲ, ଓରାଂ, ଖଡ଼ିଆ ଆଦି ବିଭିନ୍ନ ଉପଜାତି ମଧ୍ୟରେ ଭାଗଭାଗ କରିଦିଆଗଲା । ତେବେ ଉକ୍ତ ବର୍ଣ୍ଣ ବ୍ୟବସ୍ଥାଟି ଶ୍ରମର ପ୍ରାଚୀନ ସାମାଜିକ ବିଭାଜନ ଥିଲା । କ୍ଷତ୍ରିୟ ଓ ବ୍ରାହ୍ମଣମାନେ ମେହନତୀ ମଣିଷର ଶ୍ରମକୁ ଆତ୍ମସାତ୍ କରିବାର ଏହା ଏକ ସାମାଜିକ ବ୍ୟବସ୍ଥା ମାତ୍ର । ସେ ସମୟରେ କୃଷି ମୁଖ୍ୟ ଜୀବିକା ଥିବାରୁ ଓ ରାଜାଙ୍କର ଆୟର ମୁଖ୍ୟ ଉତ୍ସ ଥିବାରୁ ଜଂଗଲ ସଫାକରି କୃଷିକ୍ଷେତ୍ର ବୃଦ୍ଧି କରିବାର ଆବଶ୍ୟକ ଥିଲା । ତେଣୁ ରାଜା ମହାରାଜାମାନେ ବିଭିନ୍ନ ସ୍ଥାନରୁ ବ୍ରାହ୍ମଣ, କ୍ଷତ୍ରିୟ, କରଣ, ଚଷା, ଅଘରିଆ, କୁଲତାମାନଙ୍କୁ ଆଣି ନିଜ ନିଜ ରାଜ୍ୟରେ ବସତି ସ୍ଥାପନ କରିବାକୁ ଅନୁମତି ଦେଲେ । କାଳକ୍ରମେ ରାଜା ଆଶ୍ରିତ ଏହି ବହିରାଗତମାନଙ୍କୁ, ରାଜା ସ୍ଥାନୀୟ ଗଣ୍ଡ, ଭୁୟାଁ, ଶବର, ଖଡ଼ିଆ,

ଜମିଦାର ଗୌଁତିଆମାନଙ୍କୁ ବିତାଡ଼ିତ କରି ସେମାନଙ୍କର ଜମିଦାରୀ ଓ ଗୌଁତିକୁ ବ୍ରାହ୍ମଣ, କରଣ, କ୍ଷତ୍ରିୟମାନଙ୍କୁ ଦେଲେ । ସମ୍ବଲପୁର ଇତିହାସରୁ ଆମେ ଜାଣୁ ଯେ ରାଣୀ ମୋହନ କୁମାରୀଙ୍କ ସମୟରେ ସ୍ଥାନୀୟ ଗଣ୍ଡା, କନ୍ଧ, କୋହ୍ଲ, ଭୂୟାଁ ଓ କିଶାନମାନେ ଜମିଦାର, ଗୌଁତିଆ ଭାବରେ ସ୍ୱାଧୀନ ଓ ସ୍ୱୟଂଶାସିତ ଥିଲେ । ପରେ ସେମାନଙ୍କ ଗୌଁତି ସବୁ ରାଣୀଙ୍କ ଆଦେଶରେ ବ୍ରାହ୍ମଣ କରଣ ମାନଙ୍କୁ ହସ୍ତାନ୍ତର କରାଯାଇଥିଲା । ଏ ପ୍ରକାର ଆର୍ଥନୀତିକ ଶୋଷଣ ତଥା ଔପନିବେଶିକ ଆଧିପତ୍ୟ ବିସ୍ତାରରେ ସ୍ଥାନୀୟ ଅଧିବାସୀ ଅସନ୍ତୋଷ ପ୍ରକଟ କରି ନାନା ପ୍ରକାର ଜନ ଆନ୍ଦୋଳନ ଗଢ଼ି ତୋଳିଥିଲେ । ଯାହାକୁ ସେ ସମୟରେ କନ୍ଧମେଳି ବୋଲି କୁହାଯାଉଥିଲା । ଉକ୍ତ ଜନ ଅସନ୍ତୋଷକୁ ପ୍ରଶମିତ କରିବା ନିମନ୍ତେ ବହିରାଗତ ରାଜା ମହାରାଜା ଓ ସାମନ୍ତମାନେ ସ୍ଥାନୀୟ ଅଧିବାସୀମାନଙ୍କ ସାଂସ୍କୃତିକ ଭାବଦାରାରେ ନିଜକୁ ମିଶାଇ ଧୀରେଧୀରେ ସଂସ୍କୃତିକରଣ ମାଧ୍ୟମରେ ଆର୍ଯ୍ୟମାନଙ୍କର ବ୍ରାହ୍ମଣବାଦୀ ସଂସ୍କୃତିର ପ୍ରଚାର ପ୍ରସାର କଲେ । ଏପରିକି କେତେକ ସ୍ଥାନୀୟ ଅଧିବାସୀ ରାଜାମାନଙ୍କଠାରୁ ମାନ୍ୟତା ପାଇ ନିଜର ପ୍ରତିପତ୍ତି ବଢ଼ାଇବା ନିମନ୍ତେ ନିଜକୁ ରାଜବଂଶୀୟ ଭାବରେ ଉପସ୍ଥାପନ କରି ବ୍ରାହ୍ମଣବାଦୀ ସଂସ୍କୃତିର ଉପାସକ ହେଲେ । ଏହିପରି ଭାବରେ ପରସ୍ପର ନିଜର ସ୍ୱାର୍ଥକୁ ନେଇ ସମନ୍ୱୟ ଓ ସାମାଜିକ ସହାବସ୍ଥାନ କରିବାକୁ ବାଧ ହେଲେ । ତେଣୁ ରାଜନ୍ୟମଣ୍ଡଳୀ, ବ୍ରାହ୍ମଣ ଓ କ୍ଷତ୍ରିୟମାନେ ସ୍ଥାନୀୟ ଅଧିବାସୀମାନଙ୍କର ପର୍ବପର୍ବାଣୀ, ଦେବାଦେବୀ, କିମ୍ବଦନ୍ତୀ ସାହିତ୍ୟ, ଭାଷା ସଂଗୀତ, ନୃତ୍ୟ ବାଦ୍ୟ ସଂସ୍କୃତି ଆଦିକୁ ଗ୍ରହଣ କରିବାକୁ ଏକପ୍ରକାର ବାଧବାଧକତା ଥିଲା । କିନ୍ତୁ ଏ ବାଧବାଧକତା ମଧ୍ୟରେ ସାଂସ୍କୃତିକ ସାମ୍ରାଜ୍ୟବାଦର ମୂଳଦୁଆ ପଡ଼ିଥିଲା । ପ୍ରାଚୀନ ପୁରାଣ, କିମ୍ବଦନ୍ତୀ ଇତିହାସ, ପର୍ବପର୍ବାଣୀ, ପାଲା, ଦାସକାଠିଆ, ଦଣ୍ଡ ଆଦି ଲୋକଗୀତ ଓ ସାହିତ୍ୟକୁ ଅନୁଧ୍ୟାନ କଲେ ଏହାର ସତ୍ୟାସତ୍ୟ ନିରୂପଣ କରାଯାଇପାରିବ ।

ଊନବିଂଶ ଶତାବ୍ଦୀରେ ଓଡ଼ିଶା ଇଂରେଜ ଶାସନାଧୀନ ହେବାପରେ ତତ୍‌କାଳୀନ ରାଜନ୍ୟମଣ୍ଡଳୀ ଇଂରେଜମାନଙ୍କର ବଶତା ସ୍ୱୀକାର କଲେ । ଏହି ସମୟରେ ଇଂରେଜମାନେ ବିଭିନ୍ନ ଗଡ଼ଜାତର ରାଜାମାନଙ୍କ ମାଧ୍ୟମରେ ଚିରସ୍ଥାୟୀ ବନ୍ଦୋବସ୍ତ ଲାଗୁ କରାଇ ଜମିଜମା ଉପରେ ବ୍ୟକ୍ତିଗତ ସଂପତ୍ତି ଅଧିକାର ସାବ୍ୟସ୍ତ କରାଇଲେ । ଜମିଜମାର ଖଜଣା ଦେବା ନିମନ୍ତେ ମୁଦ୍ରାର ପ୍ରଚଳନ ହେଲା । ମୁଦ୍ରାର ଆବଶ୍ୟକତା ମେଣ୍ଟାଇବା ନିମନ୍ତେ ଜମିର ବନ୍ଧକ ଦେବାନେବାର ଦରକାର ପଡ଼ିଲା । ମୁଦ୍ରାର ପ୍ରଚଳନ ପରେ ଏକ ଋଣ ଦାନକାରୀ ଗୋଷ୍ଠୀ ମଧ୍ୟ ଜନ୍ମଲାଭ କଲା । ଏହିପରି ଭାବରେ ଜମିଜମା

ଉପରେ ବ୍ୟକ୍ତିଗତ ସଂପତ୍ତି ଅଧିକାର ସହିତ ମୁଦ୍ରା ଆକାରରେ ଜମିଜମାର ଖଜଣା ଅସୁଲ ଓ ତତ୍‌ସଂଲଗ୍ନ ମହାଜନୀ କାରବାର ଆଦିବାସୀମାନଙ୍କ ମୁକ୍ତ ଅର୍ଥନୀତି ମୂଳରେ କୁଠାରାଘାତ କଲା । କ୍ରମେ ଅଣଆଦିବାସୀମାନେ ଆଦିବାସୀମାନଙ୍କର ଜମିଜମା ତଥା ଉତ୍ପାଦନ ସାମଗ୍ରୀକୁ ଆତ୍ମସାତ୍ କରିବାକୁ ଲାଗିଲେ । ନୂତନ ଆର୍ଥନୀତିକ ବ୍ୟବସ୍ଥା ସହିତ ଖାପଖୁଆଇ ଚଳିବା ସେମାନଙ୍କ ପକ୍ଷରେ ଅସମ୍ଭବ ହୋଇପଡ଼ିଲା ।

ଏତଦ୍‌ବ୍ୟତୀତ ବିଲାତରେ ଗଢ଼ି ଉଠୁଥିବା ଶିଳ୍ପବିପ୍ଳବ ଜନିତ କଞ୍ଚାମାଲର ଚାହିଦା ବୃଦ୍ଧି ସଂଗେସଂଗେ ଭାରତର ବିଭିନ୍ନ ଖଣି ଖାଦାନରୁ ପ୍ରଚୁର ପରିମାଣର କଞ୍ଚାମାଲ ଚାଲାଣ ଆରମ୍ଭ ହେଲା । କିନ୍ତୁ ନିଘଞ୍ଚ ଜଂଗଲ ମଧ୍ୟରୁ ସେସବୁ କଞ୍ଚାମାଲ ସଂଗ୍ରହ କରିବା ସହଜସାଧ୍ୟ ନ ଥିଲା । ଗମନାଗମନର ଅସୁବିଧା ପ୍ରତିବନ୍ଧକ ହେଲା । ଇଂରେଜ ସରକାର ରେଳଲାଇନ୍ ବିଛାଇବା ଆରମ୍ଭ କଲେ । ପ୍ରଥମେ ରେଳ ଲାଇନ୍‌ରେ କାଠ ବିଛାଇବା ନିମନ୍ତେ ବ୍ୟାପକ ଜଂଗଲ ସବୁକୁ ସରକାରଙ୍କର ନିୟନ୍ତ୍ରଣାଧୀନ କରାଗଲା । ତା' ସହିତ ଜଂଗଲ ମଧ୍ୟରେ ରେଳରାସ୍ତା ଓ ସଡ଼କପଥ ନିମନ୍ତେ ବ୍ୟାପକ ଜଂଗଲ କଟାଗଲା । ସମସ୍ତପ୍ରକାର ଆଧୁନିକୀକରଣ ପ୍ରତ୍ୟକ୍ଷ ତଥା ପରୋକ୍ଷ ଭାବରେ ଆଦିବାସୀମାନଙ୍କ ଅର୍ଥନୀତିକ ବ୍ୟବସ୍ଥା ଉପରେ ସୁଦୂର ପ୍ରସାରୀ ପ୍ରଭାବ ବିସ୍ତାର କଲା । ଯେଉଁ ଜଂଗଲ ଯୁଗଯୁଗ ଧରି ସେମାନଙ୍କର ନିବାସସ୍ଥଳୀ ଥିଲା, ଯା'ର ଫଳମୂଳ, ବୃକ୍ଷଲତା, ଚେରମୂଳ, ଫଳଫୁଲ ଖାଇ ସେମାନେ ସ୍ୱଚ୍ଛନ୍ଦ ଜୀବନଯାପନ କରୁଥିଲେ, ଝରଣାର ଜଳ ପାନ କରୁଥିଲେ, ପ୍ରକୃତି କୋଳରେ ସ୍ୱତଃପ୍ରବୃତ୍ତ ଭାବରେ ଡାଲଖାଇ, କରମା, ରସରକେଳି ଗୀତ ଗାଇ ମାଦଳ, ମହୁରୀ, ଢୋଲ, ନିଶାଣର ତାଳେତାଳେ ନୃତ୍ୟ କରୁଥିଲେ, ସେଥିରେ ପୂର୍ଣ୍ଣଚ୍ଛେଦ ନ ପଡ଼ିଲେ ବି କମାରେ ରହିଗଲା । ତାଙ୍କର ପ୍ରତିବାଦ, ଦାବି, ଆପତ୍ତି ଅଭିଯୋଗକୁ ମେଳି, ଉଲଗୁଲାନ, ବିପ୍ଳବର ଆଖ୍ୟା ଦିଆଯାଇ କଠୋର ହସ୍ତରେ ବଳପ୍ରୟୋଗ କରି ଦବାଇ ଦିଆଗଲା ।

ଔପନିବେଶିକ ଶାସନର ପରବର୍ତ୍ତୀ ପର୍ଯ୍ୟାୟରେ ମଧ୍ୟ ସାମନ୍ତବାଦୀ ବିକାଶଧାରାର କୌଣସି ପରିବର୍ତ୍ତନ ହୋଇନାହିଁ । ବିକାଶର ପଥ ଉନ୍ମୋଚନ କରିବା ନିମନ୍ତେ ଶିଳ୍ପୀକରଣକୁ ପ୍ରାଧାନ୍ୟ ଦିଆଯାଇଛି । ଅଳ୍ପ ସମୟ ମଧ୍ୟରେ ବିକାଶଶୀଳ ଦେଶମାନଙ୍କୁ ଅତିକ୍ରମ କରିଯିବାର ଆଶା ନେଇ ବଡ଼ବଡ଼ ନଦୀବନ୍ଧ ଯୋଜନା, ଇସ୍ପାତ ଓ ଲୌହ କାରଖାନା ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର, ଖଣି ଖାଦାନ ଆଦିରେ ବିପୁଳ ଅର୍ଥ ବିନିଯୋଗ କରାଯାଇଛି । ଏସବୁ ଯୋଜନା ଯେ ଦେଶର ଅର୍ଥନୀତିକ ପ୍ରଗତିରେ ଆବଶ୍ୟକ ନାହିଁ

ଏକଥା ନୁହଁ । ଏସବୁ ପ୍ରକଳ୍ପ ଯେ ଲୋକଙ୍କର କିଛି ବିକାଶ କରିନାହିଁ ତାହା ମଧ୍ୟ ନୁହଁ । କିନ୍ତୁ ସତ କହିବାକୁ ଗଲେ ଏ ସମସ୍ତ ପ୍ରକଳ୍ପର ବଡ଼ ଭାରି ଭାଗ ଲାଭ ସ୍ଥାନୀୟ ରାଜନୀତିକ ନେତା, ଅମଲାତନ୍ତ୍ର, ଉପରସ୍ତରର ଠିକାଦାର, ବଡ଼ବଡ଼ ବ୍ୟବସାୟୀମାନଙ୍କ ହାତକୁ ଚାଲିଯାଇଛି । ଅନ୍ୟପକ୍ଷରେ ତଥାକଥିତ ବିକାଶ ମୂଳକ ପ୍ରକଳ୍ପଗୁଡ଼ିକ ଏକ ସମ୍ବଳହୀନ ଶ୍ରେଣୀ ସୃଷ୍ଟି କରିବାରେ ସାହାଯ୍ୟ କରିଛି । ଆଦିବାସୀ, ହରିଜନ, ଗିରିଜନମାନଙ୍କୁ ସେମାନଙ୍କର ଭିଟାମାଟିରୁ ଉଚ୍ଛେଦ କରି ଜୀବନ ଓ ଜୀବିକା ଅବହରଣ କରିଛି । ରାଜା, ଜମିଦାର, ଗଉଁତିଆ, ବ୍ରାହ୍ମଣ, କୁଲ୍‌ତା, ଚଷା ଜାତିର ଜନସାଧାରଣଙ୍କ ହାତରେ ଜମିର ପଟ୍ଟା ଥିବାରୁ ସ୍ଥାନୀୟ ପ୍ରକଳ୍ପ ଗୁଡ଼ିକରୁ ବିସ୍ଥାପିତ ହେବା ସମୟରେ ସେମାନେ କ୍ଷତିପୂରଣ ପାଇଛନ୍ତି । ପୂର୍ବବର୍ଣ୍ଣିତ ଐତିହାସିକ କାରଣମାନଙ୍କ ଯୋଗୁଁ ତଥା ବ୍ୟକ୍ତିଗତ ସଂପତ୍ତିର ମାଲିକାନା ପ୍ରତି ସଚେତନ ନଥିବାରୁ ସ୍ଥାନୀୟ ଆଦିବାସୀମାନେ ଯଦିଓ ଜମିଗୁଡ଼ିକ ଆବାଦ କରି ଚାଷ କରୁଥିଲେ ତଥାପି ପଟ୍ଟାପତ୍ର ନ ଥିବାରୁ ସେମାନେ କ୍ଷତିପୂରଣ କିମ୍ବା ଥଇଥାନ ହେବାରୁ ବଞ୍ଚିତ ହୋଇଛନ୍ତି । ଓଡ଼ିଶାର ପ୍ରଥମ ଜଳ ବିଦ୍ୟୁତ୍ ଯୋଜନା ମାଛକୁଣ୍ଡଠାରୁ ଆରମ୍ଭ କରି ହୀରାକୁଦ, ବାଲିମେଳା, ଇନ୍ଦ୍ରାବତୀ, ରେଙ୍ଗାଲି, ମନ୍ଦିରା ଆଦି ନଦୀବନ୍ଧ ଯୋଜନା ରାଉରକେଲା, ବୀରମିତ୍ରପୁର, ରାଜଗାଂଗପୁର, ବ୍ରଜରାଜନଗର, ବେଲପାହାଡ଼, ଠେଲକୁଲି, ହୀରାକୁଦ, ସଇଁତଲା, ଦାମନଯୋଡ଼ି, ଅନୁଗୋଳ, ତାଳଚେର, ସୁକିନ୍ଦା ଆଦି ଖଣି ଖାଦାନ ଓ ଶିଳ୍ପାଞ୍ଚଳକୁ ଗଲେ ଏକ ସମ୍ବନ୍ଧହୀନ ଦୀନ ଦରିଦ୍ରଙ୍କ ଦୃଶ୍ୟ ଆଖି ଆଗରେ ନାଚିଯାଏ । ଦେଶର ବିକାଶ ନିମନ୍ତେ ସର୍ବସ୍ୱ ହରାଇ ପେଟପାଟଣା ରୋଟି ରୋଜଗାର ନିମନ୍ତେ ସଂଘର୍ଷରତ 'ଲୋକ' ମାନଙ୍କର ସମୟ, ସାମର୍ଥ୍ୟ, ଶକ୍ତି କାହିଁ ଯେ ସେମାନେ ସେମାନଙ୍କର କଳା ନିପୁଣତାର ପରିପ୍ରକାଶ କରିପାରିବେ ? କାହିଁ ସେମାନଙ୍କର ସେହି ପରିବେଶ, ସେଇ ପ୍ରାକୃତିକ ଦୃଶ୍ୟରାଜି ? ସେମାନଙ୍କର ଅର୍ଥନୀତିକ ବିସ୍ଥାପନ ସହିତ ସାଂସ୍କୃତିକ ବିସ୍ଥାପନ ମଧ୍ୟ ହୋଇସାରିଛି । ତେଣୁ ପ୍ରାଚୀନ କଳା, ସଂସ୍କୃତି, ଲୋକନୃତ୍ୟ, ଗୀତ ବାଦ୍ୟକୁ ସଂରକ୍ଷଣ କରିବାକୁ ହେଲେ ପ୍ରଥମେ ସାମନ୍ତବାଦୀ ପ୍ରତିକ୍ରିୟାଶୀଳ ସାମାଜିକ ବ୍ୟବସ୍ଥା ଯାହାକି ଆଦିବାସୀମାନଙ୍କୁ ଅର୍ଥନୀତିକ ବିସ୍ଥାପନ ସହ ସାଂସ୍କୃତିକ ବିସ୍ଥାପନ କରିଛି ତା' ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଆବଶ୍ୟକ ।

ବିଗତ ୧୫ବର୍ଷ ଧରି ସାରା ଭାରତରେ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବାଣିଜ୍ୟ ସଂସ୍ଥାର ନିର୍ଦ୍ଦେଶକ୍ରମେ ଅର୍ଥନୀତିରେ ଢାଞ୍ଚାଗତ ସୁଧାର କାର୍ଯ୍ୟକ୍ରମ ଚାଲୁରହିଛି । ତେଣୁ ସାରାଦେଶରେ ଅର୍ଥନୀତିର ଜଗତୀକରଣ, ଉଦାରୀକରଣ ଓ

ଘରୋଇକରଣର ହାୱା ବୋହୁଛି । ଜଗତୀକରଣର ମୂଳମନ୍ତ ହେଲା ପୁଞ୍ଜିବାଦୀ ଉତ୍ପାଦନ ସଂପର୍କ, ପୁଞ୍ଜିବାଦୀ ମୂଲ୍ୟବୋଧ, ଆଚାରବିଚାର, ନୈତିକତା ଆଦିର ପ୍ରଚାର ଓ ପ୍ରସାର କରିବା ଇତ୍ୟାଦି । ତେଣୁ ବର୍ତ୍ତମାନ ସମଗ୍ର ଉତ୍ପାଦନ ପ୍ରଣାଳୀକୁ ପୁଞ୍ଜିବାଦୀ ଢାଞ୍ଚାରେ ଗଢ଼ି ତୋଳିବାର ଚେଷ୍ଟା ଚାଲିଛି । ଫଳରେ ବ୍ୟକ୍ତି ପରିବାର ଓ ସମଗ୍ର ସମାଜ ଏକୁଟିଆ ପୁଞ୍ଜିବାଦର ଅଧୀନସ୍ଥ ହୋଇଛି । ସମସ୍ତ ସେବା ସାମଗ୍ରୀ ଓ ଶ୍ରମକୁ ଏକ ପଣ୍ୟଦ୍ରବ୍ୟରେ ପରିଣତ କରିପାରିଛି ଯାହାକି ବଜାରରେ ବିକ୍ରି ଓ ଖରିଦ କରାଯାଇପାରିବ । ଏପରିକି ମନୁଷ୍ୟ କ'ଣ ଖାଇବ, ଅବସରକୁ କିପରି ଭାବରେ କଟାଇବ, କ'ଣ ପିନ୍ଧିବ, ନିଜକୁ କିପରି ସଜାଇବ ଏସବୁ ବହୁଦେଶୀୟ ବ୍ୟବସାୟୀ କମ୍ପାନୀମାନଙ୍କ ଦ୍ୱାରା ପରିଚାଳିତ ଓ ପରିଭାଷିତ ହେଉଛି । ବିଭିନ୍ନ ଅବସର ବିନୋଦନ କେନ୍ଦ୍ର, ପର୍ଯ୍ୟଟନସ୍ଥଳ, ପ୍ରସାଧନ କକ୍ଷ, ହୋଟେଲ, ଟି.ଭି., ରେଡିଓ, ସମ୍ବାଦପତ୍ର ଆଦି ସମସ୍ତ ଜିନିସକୁ ପୁଞ୍ଜିପତିମାନେ ନିୟନ୍ତ୍ରଣ କରୁଛନ୍ତି । ଯେପରିକି ଛୁଆମାନଙ୍କୁ ଲାଳନ ପାଳନ କରିବା, ରୋଗୀର ସେବା କରିବା, ବୃଦ୍ଧ ଓ ଅକର୍ମଣ୍ୟମାନଙ୍କୁ ସେବା କରିବା ନିମନ୍ତେ ବଜାର ଖୋଲାଯାଇଛି । ତେଣୁ ଆଜି ଭୌତିକ ବସ୍ତୁ ଓ ସେବା ସହିତ ମାନବିକ ମୂଲ୍ୟବୋଧ ସ୍ନେହ, ପ୍ରେମ, ନୃତ୍ୟ, ସଂଗୀତ ସବୁକିଛି ବଜାର ମାଧ୍ୟମରେ ପରିଚାଳିତ ହେଉଛି । ସାରା ବିଶ୍ୱରେ ଆଜି ଉପଭୋକ୍ତାବାଦର ଜୟଯାତ୍ରା ଚାଲିଛି । ଲୋକଙ୍କର ଚାହିଦା ଥାଉ ବା ନଥାଉ ନୂଆନୂଆ ଚାହିଦା ସୃଷ୍ଟି କରାଯାଉଛି । ମୌଖିକ ଉପଭୋଗ୍ୟ ସାମଗ୍ରୀର ବିଜ୍ଞାପନରେ ଖାଉଟି ନିଜକୁ ଭୁଲିଯାଉଛି । ନବ୍ୟ ବିତ୍ତବଶାଳୀ ଗ୍ରାହକମାନଙ୍କ ସଂଖ୍ୟା ବୃଦ୍ଧି ଘଟିଛି । ତେଣୁ ନୂଆନୂଆ ପ୍ରଣାଳୀରେ ସେମାନେ ଜୀବନକୁ ଉପଭୋଗ କରିବାକୁ ଚାହୁଁଛନ୍ତି ।

ଉପରୋକ୍ତ ପରିପ୍ରେକ୍ଷୀରେ ଆମକୁ ଲୋକମହୋତ୍ସବଗୁଡ଼ିକୁ ଦେଖିବାକୁ ହେବ । ଯେଉଁ କଳାକାର, ଗବେଷକ ତଥା ବ୍ୟକ୍ତିବିଶେଷ ଲୋକକଳା ଦିନକୁ ଦିନ ଲୋପ ପାଇବାରେ ବସିଛି, ଆଧୁନୀକିକରଣ ଫଳରେ କଳା ଭେଜାଲ ହୋଇ କଳାରେ କଳଙ୍କ ଲାଗିଯାଉଛି, ଅଶ୍ଳୀଳତା ବୃଦ୍ଧିପାଉଛି-ଆଦି ବିଷୟମାନ ଉତ୍ଥାପନ କରି କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି, ସେମାନେ ମନେରଖିବା ଉଚିତ ଯେ କଳା, ସାହିତ୍ୟ, ସଂସ୍କୃତି ସମାଜଠାରୁ ଭିନ୍ନ ନୁହେଁ । ଏକ ନିର୍ଦ୍ଦିଷ୍ଟ ଉତ୍ପାଦନ ପ୍ରଣାଳୀ ମଧ୍ୟରେ ସାମାଜିକ ଆର୍ଥନୀତିକ ପରିବେଶ ମଧ୍ୟରେ ଏହାର ଅବସ୍ଥିତି । ପୁଞ୍ଜିବାଦୀ ଉତ୍ପାଦନ ପ୍ରଣାଳୀ ଏକ ପୁଞ୍ଜିବାଦୀ ସଭ୍ୟତା, କଳା, ସାହିତ୍ୟ ଓ ସଂସ୍କୃତିକୁ ଜନ୍ମ ଦେଇଥାଏ । ଅର୍ଥନୀତି ଭିତ୍ତିଭୂମି ହେଲେ କଳା, ସାହିତ୍ୟ ସଂସ୍କୃତି ଏହାର ବାହ୍ୟ ଗଠନ । ସାମାଜିକ ଆର୍ଥନୀତିକ ଗଠନ ଏକ ଜଟିଳ

ବିଷୟ । ଉତ୍ପାଦନ ପ୍ରଣାଳୀ ଓ ଉତ୍ପାଦନ ସଂପର୍କକୁ ନେଇ ସାମାଜିକ ଭିତ୍ତି ଗଠନ କରାଯାଏ ଏବଂ ଏହି ଭିତ୍ତି ଉପରେ ବାହ୍ୟଗଠନ ଗଢ଼ିଉଠେ । ତେଣୁ ଏକ ନିର୍ଦ୍ଦିଷ୍ଟ ସାମାଜିକ ଆର୍ଥନୀତିକ ଭିତ୍ତିଭୂମି ଉପରେ ଅର୍ଥାତ୍ ଉତ୍ପାଦନ ପ୍ରଣାଳୀ ଓ ଉତ୍ପାଦନ ସଂପର୍କ ଉପରେ ସାହିତ୍ୟ, କଳା, ସଂସ୍କୃତି ଆଦି ଅନୁଷ୍ଠାନ ଗଢ଼ିଉଠେ । ତେଣୁ ଯେତେବେଳେ ରାଜନୀତିକ ଅର୍ଥନୀତି ଏକ ନବ୍ୟ ସାମ୍ରାଜ୍ୟବାଦୀ, ସାମନ୍ତବାଦୀ, ଶୋଷଣକାରୀ ଅପସଂସ୍କୃତିର ଭିତ୍ତିଭୂମି ଠିଆହୋଇଛି ସେଠାରେ ବାହ୍ୟଗଠନ ମଧ୍ୟ ସେହିପରି ରୂପରେଖ ନେବ । ଅର୍ଥାତ୍ କଳା ସାହିତ୍ୟ ଓ ସଂସ୍କୃତିର ମଧ୍ୟ ବଜାରୀକରଣ ଓ ଘରୋଇକରଣ ହେବ । ତେଣୁ ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ଯେ ଲୋକଗୀତ ଲୋକନୃତ୍ୟ ଆଜି ବଜାରୀକରଣ ହୋଇଛି । ଅର୍ଥାତ୍ ଏହା ବଜାରର ଚାହିଦାକୁ ଆଖି ଆଗରେ ରଖି ନିଜକୁ କାଟତି କରିବାରେ ସକ୍ଷମ ହୋଇଛି । ସହରୀ ମଧ୍ୟବିତ୍ତ ଗ୍ରାହକମାନଙ୍କ ନିମନ୍ତେ ମନୋରଂଜନର ଏହା ଏକ ମାଧ୍ୟମ ହୋଇପାରିଛି । ଜଗତୀକରଣ, ଉଦାରୀକରଣ ଓ ସହରୀକରଣର ଗତି ଯେତିକି କ୍ଷିପ୍ରତର ହେବ ଲୋକଗୀତ ସେତିକି ସହରାଭିମୁଖୀ ହୋଇ ମଧ୍ୟବିତ୍ତ ଶ୍ରେଣୀର ମନୋରଂଜନର ବିଷୟବସ୍ତୁ ହେବ, ଏଥିରେ ସନ୍ଦେହ ନାହିଁ । ଯେଉଁ ସାଂସ୍କୃତିକ ପରିଷଦ, କଳାକାର, ଅମଲାତନ୍ତ୍ରୀ ଲୋକସଂସ୍କୃତି ଲୋକକଳାକୁ ଲୋକ ମହୋତ୍ସବ ମାଧ୍ୟମରେ ଲୋକସଂସ୍କୃତିର ପୁନରୁଦ୍ଧାର ଓ ସଂରକ୍ଷଣ କରିବାରେ ଠିକାଦାର ସାଜିଛନ୍ତି ସେମାନେ ପ୍ରକୃତରେ କଳାକୁ ଏକ ପଣ୍ୟଦ୍ରବ୍ୟରେ ପରିଣତ କରିବାରେ ସାହାଯ୍ୟ କରୁଛନ୍ତି । ପ୍ରକୃତରେ ଲୋକକଳାକୁ ବଞ୍ଚାଇ ରଖିବାକୁ ହେଲେ ଏକ ଶ୍ରେଣୀହୀନ, ଶୋଷଣ ବିହୀନ ସାମାଜିକ ବ୍ୟବସ୍ଥା ନିମନ୍ତେ କଳା ଓ ସାହିତ୍ୟକୁ ବିନିଯୋଗ କରିବାକୁ ହେବ । ଯେପରିକି ଆନ୍ଧ୍ରପ୍ରଦେଶରେ ଗଦର ପରି କଳାକାର ଓ ବରାବରା ରାଓଙ୍କ ପରି କବି ନବ୍ୟ ସାମ୍ରାଜ୍ୟବାଦ ବିରୁଦ୍ଧରେ ଲୋକକଳା ଓ ସାହିତ୍ୟକୁ ବିନିଯୋଗ କରିଛନ୍ତି । ଆମେ ରାଜନୀତି କରିବାକୁ ଚାହୁଁନାହିଁ କହି ଅର୍ଥନୀତିରେ ଜଗତୀକରଣ ହେଉ, ଉଦାରୀକରଣ ହେଉ, ଘରୋଇକରଣ ହେଉ, ସହରୀକରଣ ହେଉ, ଶିଳ୍ପସଂସ୍ଥା ସବୁ ଗଢ଼ିଉଠୁ, ଲୋକେ ଉଦ୍‌ବାସ୍ତୁ ହୁଅନ୍ତୁ, ସାମ୍ରାଜ୍ୟବାଦ କାୟାବିସ୍ତାର କରୁ, କିନ୍ତୁ ତା' ସହିତ ଲୋକକଳା ସାହିତ୍ୟ, ସଂସ୍କୃତି ବଞ୍ଚିରହୁ ପରି ଉଦ୍‌ଭଟ ଚିନ୍ତାଧାରା ପୋଷଣ କରିବା ଲୋକମାନଙ୍କୁ ପ୍ରତାରିତ କରିବା ଛଡ଼ା ଅନ୍ୟ କିଛି ନୁହଁ ।



# ଏକ ପାବନୀ ଉଲ୍ଲଂଘନ ପର୍ବ

ସମରେଂଦ୍ର ନାୟକ

୧୯୯୨ ମସିହା ଡିସେମ୍ବର ମାସ; ସେବେ ବାଲେଶ୍ୱରରେ ରହୁଥାଏ । ମାଲକାନଗିରି ଜିଲ୍ଲା ଆଦିବାସୀ ସଂଘର ନିମନ୍ତ୍ରଣ କ୍ରମେ ମୁଁ ଅତିଥି ଭାବେ ଯୋଗ ଦେଇଥାଏ ତାଙ୍କର ଦ୍ୱିତୀୟ ସମ୍ମିଳନୀରେ । ସମ୍ମିଳନୀ ଅନୁଷ୍ଠିତ ହୁଏ ତାର୍ଲାକୋଟା ରାସ୍ତାପାଖ ଗାଁ ମଥାନରେ, ସେଠାରେ ଥାଏ ଆମ୍ବ ତେନ୍ତୁଳିର ଏକ ବିସ୍ତୃତ ତୋଟା । ବଂଗଳା, ଆନ୍ଧ୍ରରୁ ଅତିଥି ହୋଇ ଯୋଗ ଦେଇଥାନ୍ତି ବାଘା ଆଦିବାସୀ ନେତାମାନେ । ଅବିଭକ୍ତ କୋରାପୁଟ ତଥା ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଆସିଥାନ୍ତି ଜଣାଶୁଣା ସଂଗ୍ରାମୀ ସାଥୀ । ଆନ୍ଧ୍ରର ସାଂସ୍କୃତିକଦଳ ଦ୍ୱାରା ଗହଗହ ହଉଥାଏ ତୋଟାଖଣ୍ଡକ । ରାତିରେ ଚାଲିଥାଏ ବୀର ସହିଦ ଆଲୁରୀ ସୀତାରାମ ରାଜୁଙ୍କ ସଶସ୍ତ୍ର ମୁକ୍ତି ଯୁଦ୍ଧର ନାଟକ । ଆଉ ଏହାର ଆୟୋଜକ ଥାନ୍ତି ସାଥୀ ବିଜୟ ଉପାଧ୍ୟାୟ ।

ହେଇପାରେ ଶେଷଦିନର ସକାଳ । ମୁଁ ରହୁଥାଏ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳ, ୧୯୬୪ରେ ନିର୍ମିତ ଗାଁର କମ୍ୟୁନିଟି ସେଣ୍ଟରରେ । ଆଜିକି ଅବଶ୍ୟ ତାହା ସଂଘର ଜିଲ୍ଲା କାର୍ଯ୍ୟାଳୟ । ସେଦିନ କିନ୍ତୁ ତାର ବାସିନ୍ଦା ଥିଲେ ଜଣେ ଶିକ୍ଷକ ବନ୍ଧୁ । ଦୁଃଖର କଥା ଗଲାସନ ତାଙ୍କର ଅକାଳ ବିୟୋଗ ଘଟିଗଲା । ନାମ ପ୍ରକାଶ ଚନ୍ଦ୍ର ମହାନ୍ତି । କିନ୍ତୁ ଘରଟିର ଅବସ୍ଥା ଥାଏ ବୀଭତ୍ସ ଓ ଶୋଚନୀୟ । ଭୂତକୋଠି ଠାରୁବି ଅଧିକ । ଚାଟଣ ଓ କାନ୍ଥ ଫାଳଫାଳ ହୋଇ ଫାଟିଥାଏ । ହଲ୍ ଘରଟିର କବାଟ ଝର୍କା ତଡ଼ା ହୋଇଥାଏ । ପାହାଚ ପାଖରେ ଏକ ଘନ କୁନ୍ଦୁରି ମଞ୍ଚା । ଆଣ୍ଠୁଏ ବହଳର ଅନାବନା ଘାସଲଟା । ନାଗ, ରଣା, ଇଡ଼ିପଡ଼ା (ଚିତି)ର ଥାଏ ଚାରଣ ଭୂଇଁ । ଭାବିଦେଲେ ଭୟ ଲାଗିବ । ରାତିରେ ଉଠିଲେ ତଳକୁ ଓହ୍ଲାଇବାର ପ୍ରଶ୍ନ ନାହିଁ । ତଡ଼ା ହୋଇଥିବା କବାଟ ଧାରିରେ ଛିଡ଼ାହୋଇ ତଳକୁ ପରିଶ୍ରା କରିବାକୁ ପଡ଼ିବ । ଏଇ ଥାଏ ଘରର ଅବସ୍ଥା । ସେଠାରେ ବଂଗଳାର ପ୍ରଖ୍ୟାତ ଆଦିବାସୀ ନେତା ତଥା ଦେଭ୍ରା କୃଷକ ସଂଗ୍ରାମର ମହାନାୟକ ଗୁଣ୍ଡଧର ମୁର୍ମୁଙ୍କ ସହ କଥାବାର୍ତ୍ତା ଚାଲିଥାଏ । ପାଖରେ ଥାନ୍ତି ତାଙ୍କର ପ୍ରିୟ ସହଯୋଗୀ ସାଥୀ ସୁକୁମାର ସିକ୍‌ଦାର । ବ୍ୟସ୍ତ ଭାବେ ବିଜୟ ପହଞ୍ଚିଲା ଆମ ପାଖରେ ।

ଆଜି ଏତେଦିନ ପରେ ମନେପଡୁନି, ସେ କ'ଣପାଇଁ ଆସିଥିଲା । ଯାହାହେଉ ଠିଆଠିଆ କଥାବାର୍ତ୍ତା ଭିତରେ ସେ ଗୁଣୁଦା'ଙ୍କୁ କହିଥିଲା - ଗୁଣୁଦା' ! ଆପଣ ସମରକୁ କହୁନାହାନ୍ତି କାହିଁକି, ସେ ଏଠାରେ ରହୁ, ସାଥି ହେଇ କାମ କରିବା । ଆମେ ଦୁଇଜଣ ହେଲେତ ନହବା କାମ ସବୁ ସହଜରେ ହେଇଯିବ । ଆପଣ ତାକୁ କହନ୍ତୁନା ସେ ମୋ କଥା ଶୁଣୁନି । ବରଂ ମୋ ମୁହଁରେ କାଳି ଲାଗିଗଲାଣି ।

ପ୍ରସ୍ତାବଟି ମୋତେ ବିରକ୍ତ କଲା । ତାର କାରଣ ଥିଲା ଅତୀତର ଦୁଇଟି ତିକ୍ତ ଅନୁଭୂତି । ଏହା ୧୯୭୧ ମସିହାର କଥା । ସେତେବେଳେ ବୟସ କେତେକି ଏକୋଇଶି ମାତ୍ର । ପୁଣି ନକ୍‌ସଲ୍ କ୍ରାନ୍ତିର ମଣିଷ । ଅତ୍ୟନ୍ତ ଭାବପ୍ରବଣ ହୋଇ ପ୍ରକାଶ କରିଦେଲି ଏକ କବିତା ପୁସ୍ତକ - 'ବାରୁଦ ସ୍ତୂପର କବିତା' । ପରେପରେ ମୋ ଉପରେ ଘନେଇ ଆସିଲା ବିପଦ । ଦେଖାହେଲା ମାତ୍ରେ ସେ ପୁସ୍ତକ ସଂପର୍କରେ ସାଥୀ ସନ୍ତୋଷ ରଣା ମୋତେ କଠୋର ସମାଲୋଚନା କରି କହିଲେ - ସାଥୀ, ତମର ଏଇ କବିତା ପ୍ରେମ ଆମ କୃଷିକ୍ରାନ୍ତିର ବିରୋଧୀ । ଏହାଦ୍ୱାରା ମୌଳିକ ଜନଗଣଙ୍କ କାର୍ଯ୍ୟ ବାଧାପ୍ରାପ୍ତ ହୁଏ । ଏହା ଲାଇନ୍‌ର ବିରୁଦ୍ଧାଚରଣ କରୁଚି । ଆଉ ଆଗକୁ ନୁହେଁ । ଏବେ ତମ ଦାୟିତ୍ୱରେ ଥିବା ସମସ୍ତ ସାଂଗଠନିକ ଦିଗ ମୋତେ ବୁଝାଇ ଦବାକୁ ପଡ଼ିବ । ମୁଁ ହତଚକିତ ହେଲିନାହିଁ । କାରଣ ଅନୁରୂପ ଏକ ଫତୁଆ ୧୯୬୭/୬୮ରେ ମୋ ଉପରେ ଜାରି ହୋଇଥିଲା । ସେଥିପାଇଁ ବର୍ଷାଧିକ କାଳ ମୁଁ କବିତା ଲେଖା ଛାଡ଼ିଥିଲି । ଏଥର କିନ୍ତୁ ମୁଁ କାଳବିଳମ୍ବ ନକରି ବେଶ୍ ନମ୍ରତାର ସହ ଉତ୍ତର ଦେଇଥିଲି - ସାଥୀ, ଆପଣଙ୍କ କଥାରେ ମୋର ଅମତ ହବାର କିଛିନାହିଁ । ଚାଲନ୍ତୁ, ମୁଁ ସବୁକିଛି ବୁଝାଇ ଦଉଛି । ମୁଁ କେବେବି ସାହିତ୍ୟବିହୀନ କ୍ରାନ୍ତିରେ ନିଜକୁ ସାମିଲ କରିପାରିବି ନାହିଁ । ମୁଁ ନିଶ୍ଚୟ ଭାରତୀୟ କୃଷିକ୍ରାନ୍ତିରେ ଗଭୀର ଆସ୍ଥା ରଖେ । କିନ୍ତୁ ସାହିତ୍ୟ ସଂସ୍କୃତି ବିହୀନ ତାହା ଉଲଂଗ ନୁହେଁ । ମୁଁ ସେଭଳି କ୍ରାନ୍ତିର କଳ୍ପନା କରିନାହିଁ, ଯୋଉଠି ସାହିତ୍ୟ ବଳି ପଡ଼ିବ କବିର ସ୍ୱାଧୀନତା ସମର୍ପଣ କରିବାକୁ ହବ । ଦ୍ୱିତୀୟ ଘଟଣାଟି ଘଟିଥିଲା ସମ୍ଭବତଃ ୧୯୮୦ ମସିହାରେ । 'ଗଣମୁକ୍ତି ଲେଖକ ସାମ୍ମୁଖ୍ୟ'ର ପ୍ରତିଷ୍ଠା ପରେ । ଏକ ଆଲୋଚନାରେ ମୁଁ ମୋର କିଛି ଯୁକ୍ତିଯୁକ୍ତ ଦିଗ ରଖିଥିଲି । କିନ୍ତୁ ସାଥୀ ଗଣନାଥ ପାତ୍ର ସେଥିର ଓଜନ ନଦେଇ ତାଙ୍କର ଇଚ୍ଛା ବାରମ୍ବାର ଦୋହରାଇବାରେ ଲାଗିଲେ । ରାତି କାବାର୍ ହୋଇଗଲା କିନ୍ତୁ କୌଣସି ସମାଧାନ ହେଲାନି । ଶେଷପର୍ଯ୍ୟନ୍ତ ମୋତେ ଚାଲିଆସିବାକୁ ହିଁ ପଡ଼ିଥିଲା । ସେଦିନ ସେଇ ଆଲୋଚନାରେ ଉପସ୍ଥିତ ଥିଲେ ସାଥୀ ବିଜୟ ଉପାଧ୍ୟାୟ । ଏଠାରେ କହି ରଖିବା ଉଚିତ୍ ଯେ, ମୋ ଲେଖନୀ ନିଶ୍ଚିତ ଭାବେ ଭାରତର କୃଷିକ୍ରାନ୍ତି ପାଇଁ

ଉତ୍ସର୍ଗୀକୃତ । କିନ୍ତୁ ସାହିତ୍ୟକୁ ବଳି ପକାଇ, କବିକୁ ଦ୍ୱିତୀୟ ଶ୍ରେଣୀ ନାଗରିକ କରି ତାହା ସମ୍ଭବ ନୁହେଁ । ସେଥିପାଇଁ ଗଣନାଥ ବାବୁଙ୍କର ପର ଥରର ନିମନ୍ତ୍ରଣ ମଧ୍ୟ ମୁଁ ରଖିନଥିଲି । ଏଇ ଦୁଇଟି ଘଟଣା ମୋ ଜୀବନକୁ ଭୀଷଣ ଭାବେ ଆନ୍ଦୋଳିତ କରିଥିଲା । ମୁଁ ମୋ ବିଶ୍ଳେଷଣରୁ ବୁଝିଥିଲି, ଆଜିବି ବୌଦ୍ଧିକ ବିଚାର ବିମର୍ଷରେ ଚାଲିଛି କ୍ରାନ୍ତି । ଜଣେ ସ୍ୱପ୍ନଦର୍ଶୀ କବି - ଜଣେ ସ୍ୱଳ୍ପ ପାଠୁଆ ଗ୍ରାମ୍ୟଯୁବକ ପାଇଁ ସେଠିକାର ପଥ ଭାରି ସଂକୀର୍ଣ୍ଣ । ସତ କହିଲେ, ସେଠାରେ ମୋ ଭଳି ଲୋକମାନଙ୍କର ବିଶେଷ କିଛି ଗୁରୁତ୍ୱ ନାହିଁ । ତେଣୁ ସିଦ୍ଧାନ୍ତ ନେଇ ସାରିଥାଏଁ ଆଉ ମୌଳିକ ଜନଗଣଙ୍କ ଭିତରେ ନୁହେଁ; ବରଂ ସାହିତ୍ୟ ସଂସ୍କୃତିର ସଂଗଠନ; ଗଣତାନ୍ତ୍ରିକ ଅଧିକାର ଓ ମାନବିକ ଅଧିକାର ଭଳି ସଂଗଠନରେ ରହି ବିପ୍ଳବ ସହ ବାହ୍ୟିକ ସଂପର୍କ ଭିତରେ କାମ କରିଯିବି । ତେଣୁ ବିଜୟର ପ୍ରସ୍ତାବରେ ହସିଦେଇ ଶ୍ଳେଷାତ୍ମକ ଭାବେ କହିଥିଲି - "ଗୁଣ୍ଡୁଦା' ! ମୁଁ ଏମାନଙ୍କ ସହ ଆଦିବାସୀ ଜନଗଣଙ୍କ ଭିତରେ ପୁଣିଥରେ କାମ କରିବାକୁ ଚାହୁଁନି । ମୋର ଏମାନଙ୍କୁ ଦୂରୁ ଜୁହାର । ମୁଁ ଯିମିତି ଚାଲିଛି ଶେଷପର୍ଯ୍ୟନ୍ତ ସିମିତି ଚାଲିବି । ଆମ ଭିତରେ ଅନ୍ତତଃ ଭଲ ସଂପର୍କ ଟିକକ ଥାଉ ।"

ଏହା ଶୁଣିବା ପରେ ଗୁଣ୍ଡୁଦା' ଅତି ଅମାୟିକ ଭାବେ ତାଙ୍କର ମତାମତ ଶୁଣାଇଥିଲେ । "ବିଜୟ ! ସମରକୁ ବାଧ୍ୟ କରିବା ଠିକ୍ ନୁହେଁ । ସେ ତ ଖୋଲାଖୋଲି ତାର ମତ ରଖିଚି । ବରଂ ଏଠିକି ଆସିବା ନ ଆସିବା ସିଦ୍ଧାନ୍ତ ତା ଉପରେ ଛାଡ଼ିଦିଅ । ଜଣେ ନିଜକୁ ପ୍ରସ୍ତୁତ କଲେ ସିନା ଏଠିକି ଆସି ପାରିବ । ସେତ ଏବେ ପ୍ରସ୍ତୁତ ନୁହେଁ ।"

"ଠିକ୍ ଅଛି ଗୁଣ୍ଡୁଦା' ଆପଣଙ୍କ ପରାମର୍ଶ ମାନି ମୁଁ ତା' ସିଦ୍ଧାନ୍ତକୁ ଅପେକ୍ଷା କରିବି । କିନ୍ତୁ ସେ ପୁନର୍ବିଚାର କରିବା ଉଚିତ ।" ସେତେବେଳେ କଣ ଭାବିଥିଲି ମୋତେ ଖୁବ୍ ଶୀଘ୍ର ମାଲକାନଗିରି ଆଦିବାସୀଙ୍କ ଭିତରେ କାମ କରିବାକୁ ପଡ଼ିବ ? ନୁହେଁ । ସତରେ ଆନ୍ତରିକ ଭାବେ ମୁଁ ଚାହୁଁନଥିଲି । ସେଥିପାଇଁ ୧୯୯୩ ମଇ ଦିବସ କାର୍ଯ୍ୟକ୍ରମରେ ଅତିଥି ଥାଇ ମଧ୍ୟ ମୁଁ ଯୋଗଦେଇ ନଥିଲି । କିନ୍ତୁ ଅବଚେତନ ଓ ଅଚେତନ ସ୍ତରର ମନସ୍ତତ୍ତ୍ୱକୁ ପଢ଼ିବା ସବୁବେଳେ ଦୁରୂହ ବ୍ୟାପାର !

୧୯୯୩ ଫେବୃଆରୀରୁ ଆସ୍ତେଆସ୍ତେ ବସ୍ ବ୍ୟବସାୟର ପ୍ରେକ୍ଷାପଟ ପରିବର୍ତ୍ତିତ ହବାରେ ଲାଗିଲା । ଏପ୍ରିଲ୍-ମେ ବେଳକୁ ସ୍ପଷ୍ଟ ହୋଇଗଲା ଯେ ବସ୍ କାରବାର ବନ୍ଦ ହବାକୁ ଯାଉଚି । ଏବଂ ଶେଷ ପର୍ଯ୍ୟନ୍ତ ଜୁନ୍ ପହିଲା ଦିନ ମୋତେ 'ଚନ୍ଦନେଶ୍ୱର ବସ୍ ସର୍ଭିସ୍'କୁ ଷ୍ଟେଣ୍ଡ୍‌ରୁ ଆଣି ଛିଡ଼ା କରିଦବାକୁ ପଡ଼ିଥିଲା 'ଅନନ୍ତ ଗୋପାଳ କରତକଲ' ଭିତରେ । ମୋର ବସ୍‌ଟି ସହଥିଲା ଆତ୍ମିକ ସଂପର୍କ । ମୁଁ ନିରବରେ ଅନେକ ସମୟ

ଛିଡ଼ା ହେଇ ରହିଲି । ସେତେବେଳେ ମୋ ପାଖରେ ଖଣ୍ଡେ ପଚାଶଟଙ୍କିଆ ନୋଟ୍, ଅଳ୍ପ କିଛି ଖୁଚୁରା । ମିଲ୍‌ରୁ ବାହାରି ଆସି ମୁଁ ବାଲେଶ୍ୱର ବିଚରଗଞ୍ଜଫାଣ୍ଡି ଛକରେ ଛିଡ଼ାହୋଇ ଗୋଧୂଳିର ଆକାଶକୁ ଚାହିଁଲି । କିଛି ସମୟ ପରେ ପାଦର ଚପଲକୁ ଦେଖିଲି । ବେଶ୍ ଘୂରି ଗଲାଣି, ଅଳ୍ପଦିନ ଭିତରେ ଛିଣ୍ଡିଯିବ । ଘରର ଅବସ୍ଥା ଯାହା, ପରେ ହୁଏତ ଚପଲ ଆଉ ପାଦକୁ ଉଠିବ ନାହିଁ ! ଏଇ ଟଙ୍କାରେ ହଳେ ଚପଲ କିଣିନେବି କି ? ହେଇପାରେ ଜୀବନରେ ଶେଷଥର ପାଇଁ । ଛାତି ଫାଟିଗଲା ପରି ଲାଗୁଥାଏ, କୋହ ଉଠି ଆଖିରୁ ଲୁହ ଗଡ଼ିପଡ଼ିଲା । ଯାହାବି ହଉ କମ୍ପାନୀ ବାଲେଶ୍ୱରରେ ପାଦ ଥାପିବାର ମାଟି ଟିକିଏ ଦେଇଥିଲା । ଦେଇଥିଲା କବି ପରିଚିତି । ସମସ୍ତଙ୍କ ଭଳି ଦରମା ସ୍ୱଳ୍ପ ହେଲେ ମଧ୍ୟ ନିଜ କମ୍ପାନୀ ବୋଲି ଥିଲା ଆତ୍ମସନ୍ତୁଷ୍ଟି, ଥିଲା ସ୍ୱାଧୀନତା । କିଛିକିଛି ପିଲାଛୁଆଙ୍କ ପଢ଼ାପଢ଼ି କଥା ମଧ୍ୟ ବୁଝି ହଉଥିଲା । କିନ୍ତୁ ବାହାର ଲୋକେ ଆମକୁ ପଞ୍ଚାରୁ ବିଚାର କରୁଥିଲେ । ଅନ୍ୟ ଦଶଜଣ ମାଲିକ ପରି ବଜାରରେ ଆମର ଖାତିର ଥିଲା । ଆଗକୁ ରାସ୍ତା କ'ଣ ? ଦିଶା ନିରୂପଣ ସମ୍ଭବ ନଥାଏ । ମୁଁ ଧୀରେଧୀରେ ପାଦ ବଢ଼ାଇଲି ବି.ଏସ୍.ସି. ଜୋତା ଦୋକାନକୁ । ୪୫ଟଙ୍କା ଦେଇ ହଳେ ସଞ୍ଚୀ କିଣିଲି । ବଳକା ପଇସାରେ ମୁଁ ଏଠିସେଠି ଚା ପିଇଲି, ସିଗାରେଟ୍ ଶୋଷିଲି । ପଇସା ସରିଯିବା ପରେ ଶୂନ୍ୟ ଆଖିରେ ରାତିର ଆକାଶକୁ ଅନାଇ ପୋଷ୍ଟଅଫିସ୍ ସାମନାରେ ତାରା ଗଣିବାକୁ ଲାଗିଲି । ଏଇଭଳି ସେଦିନ ମୋ ଜୀବନରେ ଏକ ଯୁଗର ଅବସାନ ଘଟିଥିଲା । ଯୋଉ ଜୀବନ ଆଗକୁ ଥାଏ ତାର କୂଳକିନାରା କିଛି ନଥାଏ । ଏଣେ ବାପା ଅଧିକରୁ ଅଧିକ ରୋଗଗ୍ରସ୍ତ ହଉଥାନ୍ତି । କମ୍ପାନୀର ପାର୍ଟନର ଭିତରୁ ଜଣେଜଣେ ବିଦାୟ ନେଲେଣି । ଯୋଉମାନେ ଅଛନ୍ତି ସମସ୍ତେ ଜରାଗ୍ରସ୍ତ, ନିଷ୍କ୍ରିୟ । ମୁଖ୍ୟମାନେ କେବଳ ନିଜର ପିଲାପିଲିଙ୍କ କଥା ଭାବିବାକୁ ଲାଗିଲେଣି । ଆମ ପିଲାମାନଙ୍କ ଭିତରେ ମଧ୍ୟ କମ୍ପାନୀ ବ୍ୟବସାୟ ନେଇ କୌଣସି ଆଗ୍ରହ ନଥାଏ । ବରଂ ଅର୍ନ୍ତଦ୍ୱନ୍ଦ୍ୱ ବଢ଼ିବଢ଼ି ଚାଲିଥାଏ । ଏଇଥାଏ କମ୍ପାନୀର ଅବସ୍ଥା । ଏଣେ କାଠ ବ୍ୟବସାୟର ଆଉ ଭବିଷ୍ୟତ ନଥାଏ । ବସ୍‌କୁ ଛିଡ଼ା କରିଆସିବା ପରେ ପୁଣି କୋଉ ଆଶା ? ଜୁନ୍‌ରୁ ଡିସେମ୍ବର ଏଇ ସାତମାସ ମୋ ଜୀବନରେ ଭୟାବହ ଘଡ଼ିସନ୍ଧିର ସମୟ । ପ୍ରତି ମୁହୂର୍ତ୍ତ ମନେ ହେଉଥାଏ ମୁଁ ଯେପରି ଶେଷହୀନ ଘୂର୍ଣ୍ଣିବଳୟ ଭିତରେ ପଡ଼ିଯାଇଛି । କୋଉ ଜଳଡୁବି ପର୍ବତ ଚୂଳରେ ଯେ କେତେବେଳେ ଜୀବନ ଜାହାଜ ପିଟିଯିବ କିଛି ଠିକଣା ନଥାଏ । ସେତେବେଳେ ଚିନ୍ତାର ଅବିରତ ଲାଭା ସ୍ରୋତ- ଗତି ଥାଏ ଅତ୍ୟନ୍ତ ବେଗଗାମୀ । କିନ୍ତୁ ବିକଳ୍ପ ଦିଶୁନଥାଏ । କେତେବେଳେ ଭାବୁଥାଏ କୁଲି ସର୍ଦ୍ଦାର ହେଇ ଚାଲିଯିବିକି ହାଇଦ୍ରାବାଦ କି ସୁରଟ୍ ? କେତେବେଳେ ଭାବୁଥାଏ ବାଲେଶ୍ୱରର ପୁରୁଣା

ମାଲିକ ବନ୍ଧୁମାନଙ୍କ ପାଖରେ ଚାକିରି ଖଣ୍ଡେ ଯୋଗାଡ଼ କରିବା କଥା । କିନ୍ତୁ କୌଣସି କିଛିରେ ମନ ବୁଝୁନଥାଏ । ଅବସନ୍ନ ହୋଇ ଭାବୁଥାଏ ପୈତୃକ ଜମିବାଡ଼ି ତ ଅଛି, ଏତେ ବ୍ୟସ୍ତ ବିବ୍ରତ କାହିଁକି ? ଏଇଭଳି ମନକୁ ମୁଁ ସାନ୍ତ୍ୱନା ଦଉଥାଏ । କିନ୍ତୁ ଏକଥା ମଧ୍ୟ ବୁଝୁଥାଏଁ, ଏହା ମୁହୂର୍ତ୍ତକର ସାନ୍ତ୍ୱନା ହୋଇପାରେ, ଅଧିକ କିଛି ନୁହେଁ । ମୋ ପାଇଁ ଦରକାର ଥିଲା ପ୍ରଶସ୍ତ କ୍ଷେତ୍ର । ବସ୍‌ରେ ଅନ୍ତତଃ ମୋତେ ତାହା ମିଳି ଯାଉଥିଲା । ରାତିରୁ ରାତି ପର୍ଯ୍ୟନ୍ତ ଶହ ହଜାର ଯାତ୍ରୀଙ୍କ ସହ ସାକ୍ଷାତ୍ । ବହୁ ବିଚିତ୍ର କଞ୍ଚାମାଲ୍ ମିଳି ଯାଉଥିଲା ତା' ଭିତରେ । ମୋର ସୃଷ୍ଟି ସାଧନାର ଚିତ୍ର ସାବ୍‌ଜା ହୋଇ ବଂଚି ରହିଥିଲା । ଭାରାକ୍ରାନ୍ତ ଚାଷୀର ଜୀବନରେ କିପରି ତାହା ସମ୍ଭବ ହବ ? କୋଉଠୁ ଆସିବ ସେ ଦମ୍ଭ ? ସମଧର୍ମାର ସମାଜ କିପରି ବା ମିଳିପାରିବ ? ସେଦିନ ମୁଁ ବେଶ୍ ବୁଝି ପାରୁଥାଏ, ମୁଁ ଯଦି ଖୁବ୍ ଶୀଘ୍ର ଶେଷ ସିଦ୍ଧାନ୍ତରେ ପହଞ୍ଚି ନପାରେ, ମୋତେ କେହିବି ରକ୍ଷା କରିପାରିବେନି । ଏଇ ସମୟରେ ବ୍ରଜବାବୁଙ୍କ ଆଡୁ ପ୍ରସ୍ତାବ ମିଳିଲା । ନିକଟରେ ଡ. ନରେନ୍ଦ୍ର ମିଶ୍ରଙ୍କ ଘର ଖାଲି ହବାକୁ ଯାଉଛି । ସେ ଚାହୁଁଛନ୍ତି ବିଶ୍ୱାସୀ ଜଣେ କେହି ମିଳିଲେ ତାଙ୍କ ଘରର ତତ୍ତ୍ୱାବଧାନ ନବ । ତାହା ହୋଇପାରିଲେ ସେଠାରେ ତମେ ବହି ଦୋକାନଟିଏ କରି ଚଳି ଯାଇ ପାରିବ । ମୁଁ କିଛିଦିନ ଧାଁ ଦଉଡ଼ କଲି । ଏଣେ କପର୍ଦ୍ଦକ୍ ଶୂନ୍ ଲୋକକୁ କିଏ କାହିଁକି ବା ସାହାଯ୍ୟ କରିବ ? ତଥାପି ବହୁ କଷ୍ଟରେ ବ୍ୟବସାୟ ପାଇଁ ଅଳ୍ପ କିଛି ଅର୍ଥ ଯୋଗାଡ଼ ହେଲା । କିନ୍ତୁ ଯୋଉ ଆତ୍ମୀୟଙ୍କ ପାଖରୁ ସାହାଯ୍ୟ ମିଳିଲା, ସେ ପ୍ରତିନିଧି ଦବାକୁ ଚାହିଁଲେ । ଅଥଚ ଅଂଶୀଦାରୀ ବ୍ୟବସାୟର ବିଷଜ୍ୱାଳାରେ ମୁଁ ସେତେବେଳେ ଅସ୍ଥିର ଜର୍ଜର । ଏଣେ ନରେନ୍ଦ୍ର ବାବୁଙ୍କ ଘରକଥା ଆଗକୁ ନବଢ଼ି ଅଟକି ରହିଲା । ଆଉ ଶେଷପର୍ଯ୍ୟନ୍ତ ମୋତେ ଧାରଟଙ୍କା ଫେରସ୍ତ ଦବାକୁ ହିଁ ପଡ଼ିଥିଲା ।

ମୋର ଏଇ ଜୀବନ ସଂକଟ ଲକ୍ଷ୍ୟକରି ବ୍ରଜବାବୁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ । ବହି ଦୋକାନକୁ ଲାଗିଥିବା ତାଙ୍କ ଘରଟିରେ ଅନ୍ତତଃ ରେଡିମେଡ୍ ଭଳି କିଛି ବ୍ୟବସାୟ କରିବାକୁ ପ୍ରବର୍ତ୍ତାଇଥିଲେ । ସେତେବେଳକୁ କିନ୍ତୁ ମୋ ମନ ଭାଂଗି ଯାଇଥିଲା । ପ୍ରବୃତ୍ତିକୁ ସାହାଯ୍ୟ କରୁ ନଥିବା ବୃତ୍ତିନେଇ ମୁଁ ଭୀଷଣ ଅଖୁସି ରହିଥାନ୍ତି । ପୁଣି ଏକକ ବ୍ୟବସାୟର ସମସ୍ତ ବୋଝ । ଇମିତି ଦେଖିଲେ ତ ମୁଁ ପ୍ରଚଣ୍ଡ ଭାବପ୍ରବଣ । କିଛିଟା ଯାଯାବରୀ । ସେତେବେଳେ ମୋର ଗାଁରେ କରିଥିବା ବ୍ୟବସାୟର ଚରମ ବିଫଳତା କଥା ମନେ ପଡ଼ିଲା । ଏସବୁ ମିଶିଯିବା ପରେ ମୁଁ ଆଉ ଉତ୍ସାହୀ ହୋଇପାରିଲି ନାହିଁ ।

ସେତେବେଳେ ମୁଁ ଦିନରେ ସ୍ଥିର ରହିପାରୁନି । ରାତିରେ ବି ଶୋଇପାରୁନି । ଚିନ୍ତା ସ୍ରୋତର ତୋଫାନ୍ ଡେଇଁଡେଇଁ ଛୁଟିଥାଏ । ବୁଡ଼ିବା ଆଗରୁ ଥରେ ଶେଷ ଚେଷ୍ଟା

କଲା ଯଦି କଥା ? ମୁଁ ନିରେଖେଇ ନିଜ ଭିତରକୁ ଚାହିଁଲି । ଅନ୍ତର୍ଲୋକରେ ଉତ୍ତର ଖୋଜିଲି । ଭାରି କ୍ଷୀଣ ସେ ସ୍ୱର ସବୁଟା ବି ସ୍ପଷ୍ଟ ନୁହେଁ । ହୃଦୟ ଗୁଣୁଗୁଣୁଉଚି "ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂତ୍ୟଜନ୍ତି ପଣ୍ଡିତାଃ..." ଏହା କ'ଣ ବହୁ ଗହୀରରେ ଛପିଥିବା ମଣିଷର ଗୋପନ ଅଭିଳାଷ ? ଜୀବନର ସଂକଟକାଳରେ ଯାହା ଆତ୍ମପ୍ରକାଶ କଲା ? ଭିନ୍ନ କୌଣସି ଗତିନାହିଁ । ମୁଁ ଧୀରେଧୀରେ ନିଜ ସହ ବୁଝାମଣା କରିନେଲି । ଭାବିଲି, ଯେକୌଣସି ପରିସ୍ଥିତିରେ ମୋତେ ତିଷ୍ଠି ରହିବାକୁ ପଡ଼ିବ । ରକ୍ଷା କରିବାକୁ ପଡ଼ିବ କାବ୍ୟଦୁନିଆ । ସେଥିପାଇଁ ଜୀବନର ଯାହା ମୂଲ୍ୟ ଦବାକୁ ପଡୁନା କାହିଁକି । ଗଡ଼ଜାତ ମିଶ୍ରଣ ପରେ ବିପଜ୍ଜନକ ରାଜବନ୍ଦୀ ବୋଲି ବାପାଙ୍କୁ ତ କୋରାପୁଟ ଜେଲ୍‌ରେ ରଖାଯାଇଥିଲା । ମୋର ମଧ ଆଦିବାସୀଙ୍କ ଭିତରେ କାମ କରିବାର ପୂର୍ବ ଅନୁଭୂତି ରହିଛି । ମୁଁ ନିଶ୍ଚୟ ମାଲକାନଗିରିରେ କାମ କରିପାରିବି ।

ଦିନେ ରାତିରେ ବିଶ୍ୱଶ୍ରୀ ପ୍ରେସ୍‌ରେ ବିଜୟ ସହ ଦେଖାହେଲା । ମୁଁ ତାକୁ ବାହାରକୁ ଡାକିଲି । ଆମେ ହସ୍ପିଟାଲର ଶିବମନ୍ଦିର ଗେଟ୍ ତଳକୁ ଛିଡ଼ାହେଲୁ । କୌଣସି ଗୌରଚନ୍ଦ୍ରିକା ନକରି ମୁଁ କହିଲି - ମୁଁ ମାଲକାନଗିରିରେ କାମ କରିବି । କାରଣ ପାଖରେ ଏବେ କିଛି ବଳକା ସମୟ ରହୁଛି । ମୁଁ ତାହା ବିନିଯୋଗ କରିବାକୁ ଚାହେଁ । ଧରିନିଅ ଅବଶିଷ୍ଟ ଜୀବନର ପ୍ରାୟ ଅଧାଅଧି ସମୟ । କିନ୍ତୁ ସେଠାରୁ ଫେରିବା ପରେ ଯେତେଦିନ ମୁଁ ଘରେ ରହିବି, ସେ ସମୟତକ ମୋ ପରିବାରର, ମୋ ସାହିତ୍ୟର । ଲେଖକୀୟ ସ୍ୱାଧୀନତା ମୋର ରହିବ । ମୋତେ ସଂଘର କାମ ବ୍ୟତୀତ ଅଧିକ କାମରେ ଜଡ଼ାଇବ ନାହିଁ । ସେଠାରେ ବଳକା ସମୟ ଯେପରି ମୁଁ ଲେଖାଲେଖି କରିପାରିବି । ତମେ ତ ଜଣେ କବି, ମୋ କବିସତ୍ତା ଯେପରି ବିପନ୍ନ ନହୁଏ । ଏତିକି କେବଳ ଆଶା ରଖୁଚି । ଏଥିରେ ରାଜିଥିଲେ, ମୁଁ ମାଲକାନଗିରିରେ କାମ କରିବା ସୁନିଶ୍ଚିତ । ଉତ୍ତର ମାତ୍ର ଗୋଟିଏ ଶବ୍ଦ । ଅଳ୍ପ ସମୟ ଭିତରେ ତାହା ତୁଟିଗଲା । ୧୯୯୩ ମସିହା ଡିସେମ୍ବର ଶେଷ ସପ୍ତାହରେ ମୁଁ ମାଲକାନଗିରି ଯାତ୍ରା କଲି । ରାଉରକେଲାରୁ ସାଥିରେ ଡାକ୍ତର ଫକୀର ଚରଣ ହୋତା । ବସ୍‌ରେ କଟିଥିଲା ଶେଷ ତେୟାନବେ । ଆଉ ଚୌରାନବେର ସୂର୍ଯ୍ୟ ଉଠିଥିଲା ଚିତ୍ରକୋଣ୍ଡାରେ ।

ମୁଁ ଆଜି ସ୍ୱୀକାର କରୁଛି, ସେଦିନର ଝଡ଼ ବିକ୍ଷୁବ୍ଧ ଜୀବନ ସାଗରରେ ମୁହୂର୍ତ୍ତକର ସେଇ ସିଦ୍ଧାନ୍ତ ଜୀବନକୁ ଏତେଦୂର ପ୍ରତିଭାବାନ୍ କଲା ଯେ, ତା ସହ କୌଣସି କିଛିର ତୁଳନା ହୁଏନି । ଆଜିବି ମୁଁ ତାହାକୁ ବିସ୍ମୟରେ ଚାହୁଁଛି ।

ତାହାଥିଲା ମୋ ଜୀବନର ଏକ ମହାନ ଉଲଂଘନର ପର୍ବ । ରାଜ୍ୟର ଏକବାରେ ଉତ୍ତରାଞ୍ଚ, ଏକାନ୍ତରେ ବର୍ଷାଏ । ଏକାନ୍ତରେ ସମ୍ପୃକ୍ତ ଅଣ ଆଦିବାସୀ ଜୀବନରୁ

ଏକବାରେ ଆଦିବାସୀ ସମାଜ ଭିତରକୁ । ଏଇ ଉଲଂଘନରେ ମୋତେ ଏକାଥରକେ ମାଟି କାମୁଡ଼ିବାକୁ ପଡ଼ିଥିଲା । ଆଜିବି ମାଟି କାମୁଡ଼ି ପଡ଼ିଚି । ମାଲକାନଗିରିରେ ମୁଁ ପ୍ରତିପାଦିତ କରି ପାରିଚି ଜୀବନକୁ । ଜୀବନରେ ଯେତେବେଳେ ତାହା ମନକୁ ଆସିଥାଏ, ହୃଦୟର ଏକ ପାଗଳ ସୁଗନ୍ଧି ମୋତେ ଆତ୍ମହରା କରେ । ଏଠିକାର ଆପଣାପଣରେ ମୁଁ ନିଜକୁ ଲୀନ କରିଦିଏ । ଅଟଳ ଆତ୍ମବିଶ୍ୱାସ ମୋତେ ବାଟ ଚଳାଇ ନିଏ ।

ମାଲକାନଗିରି ହେଲା ଦଣ୍ଡକାରଣ୍ୟର ଅଂଶ, ପୂର୍ବଘାଟର ଅଂଶ; ଅଂଶ ମହାକାନ୍ତରର । ୧୯୯୬ ଜେଲରୁ ବାହାରିବା ପରେ ଜୟପୁରରେ ଏକ ଘୃଣିତ ଓ ଦୁଃଖଦ ଘଟଣାକ୍ରମରେ ଏଠିକା ସାହିତ୍ୟ ଜଗତ ସହ ମୁଁ ସଂପର୍କ ରଖିନାହିଁ । କାରଣ ଭବିଷ୍ୟତରେ ମୋତେ ଅନ୍ତତଃ କେହି ଦୋଷାରୋପ ନକରୁ ଯେ, ମୁଁ ତାଙ୍କ ପାଇଁ ବିପଦର କାରଣ ହେଲି । ମୁଁ ଭଲଭାବେ ବୁଝେଁ, ଛଦ୍ମ ଆବରଣରେ ଥିବା ତଥାକଥିତ ସାଧାରଣ ସାହିତ୍ୟ ଓ କ୍ରାନ୍ତି ସାହିତ୍ୟ-ଯା ଭିତରେ ଦୁସ୍ତର ଦୂରତା । କେହି କାହାରି ପରିପୂରକ ନୁହଁନ୍ତି ।

ଆସିବାବେଳେ ଭାବୁଥିଲି ମାଲକାନଗିରିରେ ମୋ ସାହିତ୍ୟ ତିଷ୍ଠି ରହିପାରିବ ତ ? ପୁଣିଥରେ ସାରସ୍ୱତ ଠିକଣା ପ୍ରତିଷ୍ଠା କରି ପାରିବି ତ ? ଘୋଡ଼ାଦୌଡ଼ ଜୀବନ ଭିତରେ ଭାରତର ସବୁଠୁ ପଛୁଆ ଆଦିବାସୀ ଜୀବନ ଭିତରୁ ବାଣୀ ଉପାଦାନ ସଂଗ୍ରହ କରିବା ଭଳି ଅବକାଶ ରହିବ ତ ? ଆଜି କିନ୍ତୁ ସେ ସଂଶୟ ଦୂର ଅସ୍ତ । ମୁଁ ଏଠି 'ଗୀତକୁଡ଼ିଆ' ନିର୍ମାଣି ପାରିଚି ।

ମାଲକାନଗିରି ମୋ ହୃଦୟ ଉପତ୍ୟକାରେ ସବୁଠୁ ସାବକା ଭୂଇଁ । ଏଇଠି ମୁଁ ସାଥି ଭାବେ ପାଇଚି ସୁକୁମାର ଦା, ବାଲରାଜୁ ଗେମେଲ, ଦ୍ୱୈମତୀ ହନ୍ତାଲ, କମଲ ସାଇ ମାଝୀ, ସମାରୁ ଦୁରୁଆ, ସଦାଶିବ ହନ୍ତାଲ, ବିଦେଶୀ ଗଉଡ଼, ସମାରୁ ମାଡ଼କାମୀ, ସହଦେବ ଅନୁଗୁଳିଆ, ଶୁକ୍ରା ମାଢ଼ୀ, ମୂଳିଆ ଖରା, ବନ୍ଧୁ ମୁଦୁଲି, ନନ୍ଦ ପାଙ୍ଗୀ ଓ ଆଇତା ମାଢ଼ୀ ଇମିତି ଅନେକଙ୍କୁ । ୨୦୦୨ ପର୍ଯ୍ୟନ୍ତ ଏଇଠି ମୁଁ କାମ କରିଥିଲି ଗୁଣ୍ଡୁଦା ସହିତ । ଏଇଠି ବିଜୟ ସହିତ ଏକ ଜୀବନ୍ତ ପ୍ରାଣବନ୍ତ ସଂପର୍କ । ଯାହା ଚାରି ଦଶନ୍ଧି ପୂରଣ ପଥରେ ଚାଲିଛି । ଏଠାରେ ଅଗଣିତ ସଂଗ୍ରାମୀ ମଣିଷ ଭିତରେ ମୋର ଜୀବନ, ଯାହା ଗଭୀର ଆତ୍ମବିଶ୍ୱାସରେ ମୋତେ ଆଗକୁ ବାଟ କଢ଼ାଇ ନିଏ । ଏଇଠାରେ ହିଁ ମୁଁ ଆଦିବାସୀର କବି ଲେଖକ- 'ରୁକୁ ଡୋକ୍ରା' ଅଧିକ କ'ଣ ଚାହିଁବି ? କିନ୍ତୁ ଏସବୁ କେବଳ ସେଇ ଗୋଟିଏ ମୁହୂର୍ତ୍ତର କରିସ୍ମା, ତାହା ଜୀବନର ଅନ୍ତିମ ମୁହୂର୍ତ୍ତକୁ ସ୍ପର୍ଶ କରିଯାଉ । ଆଜି ଏତିକି ମାତ୍ର କାମନା ।



# ଆତ୍ମାଭୋଗ

ଅରୂପ ଅଭିଷେକ

ଜୀବନ । କେବେ ଜିଇଁବାକୁ ପଡ଼େ, କେବେ ପୁଣି ଜିଇଁ ହୋଇଯାଏ । ଜୀବନ- ଏକ ଆହ୍ୱାନ । ଜୀଇଁବା ଏକ କଳା । ସେ କଳାକୁ ଶିଖିବାକୁ ପଡ଼େ । ତାକୁ ଆୟତ୍ତ କରିପାରିଲେ କେତେ ସ୍ୱଚ୍ଛନ୍ଦ ହୋଇଯାଏ ଜୀବନର ଗତିପଥ । ଜୀବନ, ସୃଷ୍ଟିର ସମସ୍ତ ପ୍ରାଣୀମାନଙ୍କୁ ଈଶ୍ୱରଙ୍କର ସର୍ବୋତ୍ତମ ଓ ମହତ୍ତମ ଉପହାର । ଜୀବନିକାର ପ୍ରବାହରେ ପ୍ରବାହିତ ହୋଇ ଜୀବନଧାରା ହୁଏ କ୍ରମେକ୍ରମେ ସ୍ପଷ୍ଟ, ସ୍ୱଚ୍ଛ, ମାର୍ଜିତ ଓ ଆକାଂକ୍ଷିତ । ଯେହେତୁ ଜିଇଁବାଟା ଏକ କଳା, ଯିଏ ଯେଉଁ ମତେ ଜିଇଁପାରେ ଜୀବନକୁ । ସୃଷ୍ଟିର ସମସ୍ତ ପ୍ରାଣୀଙ୍କର ଜୀବନ ଜିଇଁବାର କଳା ଅଲଗା ଅଲଗା । ସେଇ କଳା ଜୀବନକୁ କେମିତି ପରିମାର୍ଜିତ କରିହେବ, ସେଇଥିରେ ରଂଗବୋଳେ, ତାକୁ ରାହା ଦେଖାଏ, ତାକୁ ବାଟ କଢ଼ାଏ, ତାର ପଥକୁ କରିଚାଲେ କୁସୁମିତ । ଏମିତି ଚାଲୁଚାଲୁ ସମୟର କଷଟି ପଥରରେ ଘଷିହୋଇ ଜୀବନ ହୁଏ ପରିପୁଷ୍ଟ । ଆହ୍ଲାଦିତ ମନଟେ ନେଇ ଅନୁଶୀଳନ କରାଯାଏ କେଉଁବାଟ ଦେଇ ଆଗେଇ ଆସିଲା ସେ ଏତେ ବାଟ, ପ୍ରତ୍ୟେକ ପ୍ରାଣୀ ଜୀବନକାଳରେ ଅନ୍ତତଃ ଥରଟେ ଏଇ କାମ କରନ୍ତି ।

ଜୀବନ ବି ଜମା ସହଜ ନୁହଁ । ଏତେ ଭଙ୍ଗୁର ପଥ, କଣ୍ଟକିତ ଉପବନ, ଅଣଚାଶ ପବନକୁ ଅତିକ୍ରମ କରି ଜୀବନ ତରୀକୁ ବାହିନେବା କେତେ କଷ୍ଟକର । ଜୀବନ ଯେବେ ଥାଏ ସହଜ, ଲାଗେ ବେଶ ମତୁଆଲା ମତୁଆଲା, ଆଉ ଜୀବନ ହୁଏ ଯେତେ ଅସହଜ ବୋହି ପାରେନା ତାକୁ ଏ ଶରୀର, ପାଲଟିଯାଏ ଯନ୍ତ୍ରଣା । ଏମିତି ତ ଜୀବନ ।

ଜୀବନ ଏକ ନଈପରି । ଦୁଇଟି ତାର ଧାର । ଗୋଟିଏ ବୋହିଯାଏ ଏପଟେ ତ ଅନ୍ୟଟି ସେପଟେ । ସୁଅରେ ଭାସିଗଲା ପରି ଭାସିଯାଏ ଜୀବନ, ତାକୁ ଠିକ୍ ଭାବରେ ଆୟତ୍ତ କରି ଆଗେଇ ନେବାକୁ ହୁଏ ଲକ୍ଷ୍ୟସ୍ଥଳ ଆଡ଼କୁ । ସେଥିରେ ପୁଟ ଦିଆଯାଏ ଆନ୍ତରିକତାର, ରଂଗ ଭରାଯାଏ ରଂଗିନ୍ କରାଯାଏ ଜୀବନକୁ । ଯିଏ ଯେମିତି ଭରିପାରିଲା । ରଂଗ, ସେଇ ରଂଗ ଭରିବାରେ ହିଁ ସମସ୍ତଙ୍କର ପୃଥକତ୍ୱକୁ ବାରିହୁଏ ।

ହେଲେ ଖାଲି ଜୀବନକୁ ଜିଇଁଲେ ହୋଇଯିବ ନାହିଁ । ପୁଣି ସେ ଯଦି ହୋଇଥାଏ ମଣିଷ ଜୀବନ, କେତେ ତ୍ୟାଗ, ପୁଣ୍ୟ, ଉଦ୍ୟମର ଉପହାର ଗୋଟିଏ ଥର ମଣିଷ ଜୀବନ । ଏହାକୁ ଏମିତି କରି ଜିଇଁବାକୁ ହେବ ଯେ ଅନ୍ୟମାନେ ତାକୁ ଯେମିତି ଅବଲୋକନ କରିପାରିବେ । ନିଜକୁ ତୃପ୍ତ କରିବା ସହ ଅନ୍ୟ ସମସ୍ତଙ୍କ ପାଇଁ ଏକ ଖୋଲାଫର୍ଦ୍ଦ କରି ଦେବାକୁ ହେବ ତାକୁ ।

ନିଜପାଇଁ କେବଳ ନୁହଁ, ନିଜ ବାହାରର ପୃଥିବୀ ଏବଂ ସେଥିରେ ଚଳପ୍ରଚଳ କରୁଥିବା ପ୍ରତ୍ୟେକଟି ମଣିଷ ପାଇଁ ଅନ୍ତତଃ ଥରେ ଦୃଷ୍ଟି ପହଁରାଇ ନେଲାଭଳି କିଛି ଭଲ ଉପାଦାନ ଧରି ରଖିବାକୁ ହେବ ଜିଉଜିଉ । ନିଜ ପରିବାର, ତା ବାହାରର ସମାଜ ସମସ୍ତଙ୍କ ପ୍ରତି ଥାଏ ପ୍ରତ୍ୟେକ ମଣିଷର କିଛି କର୍ତ୍ତବ୍ୟ । ଜୀବନଶୈଳୀକୁ ଏମିତି ଏକ ନିଆରା ପଣର ସ୍ପର୍ଶ ଦେଇ ସମାଜ ପାଇଁ କିଛି ଗୋଟେ ଭଲକାର୍ଯ୍ୟଟେ କରିଯିବାକୁ ଥାଏ ପ୍ରତ୍ୟେକ ମଣିଷର ଏକ ଇପ୍‌ସିତ ଇଚ୍ଛା । ହୁଏତ ସମୟ ସହ ଘୋଷରା ହୋଇ ସେଇ ଇଚ୍ଛା କେତେବେଳେ ଅନିଚ୍ଛାରେ ପରିଣତ ହୋଇ ହିତ ନହୋଇ ସମାଜ ପ୍ରତି ଘଟାଇ ଦିଆଯାଏ ଅହିତଟେ । ସମାଜ ବି ଚାହେଁ ସବୁ ମଣିଷ ଯେଉଁମାନେ ତା ଭିତରେ ଅଛନ୍ତି, ସେମାନେ ସମସ୍ତେ ସମଷ୍ଟିଗତ ଭାବେ ଏମିତି କିଛି କାମ କରନ୍ତୁ ଯାହା ସମାଜର ବିଶେଷକିଛି କଲ୍ୟାଣକର ହୋଇପାରିବ । ଏମିତି ଅନେକ ଭଲ ମଣିଷ ଏ ସୃଷ୍ଟିକୁ ଆସିଛନ୍ତି, ନିଜ ଜୀବନକୁ ଅଧିକ କଳାତ୍ମକ ଭାବେ ଜିଇଁ ସେମାନେ ଉତ୍ସର୍ଗୀକୃତ ଭାବେ ସମସ୍ତ ସମାଜର ଉନ୍ନତି ପାଇଁ ଅନେକ କିଛି କରି ଯାଇଛନ୍ତି । ଶତାବ୍ଦୀ ଶତାବ୍ଦୀ ଧରି ଏ ସମାଜ ତାଙ୍କୁ ମନେରଖିବ । କିଛି ଲୋକ ନିଜ ଜୀବନକୁ ନେଇ ବଞ୍ଚିଛନ୍ତି, ସିଧାସଳଖ ଭାବେ ସମାଜ ପାଇଁ କିଛି କରିନାହାନ୍ତି । କିନ୍ତୁ ସବୁ ପ୍ରତିକୂଳତା ସତ୍ତ୍ୱେ ତାଙ୍କ ବଞ୍ଚିରହିବା ପାଇଁ ସଂଗ୍ରାମ ସମାଜର ଦୃଷ୍ଟିକୁ ତାଙ୍କ ଆଡ଼କୁ ଆକର୍ଷିତ କରିଛି । ଆଉ କିଛି ଲୋକ ସମାଜ ପାଇଁ ପାଲଟି ଯାଇଛନ୍ତି ଅଭିଶାପ । ସୁସ୍ଥ ସମାଜକୁ ନଷ୍ଟ କରିବାକୁ ସେମାନେ କୌଣସି ନା କୌଣସି ପଦକ୍ଷେପକୁ ଆଦରି ନେଇପାରନ୍ତି । ଯେଉଁମାନେ ସମାଜକୁ ନେଇ ସିଧାସଳଖ କ୍ଷତି ପହଞ୍ଚାନ୍ତି, ସେମାନେ ତ ଗୋଟିଏ ପ୍ରକାରର, ଆଉ ତାଙ୍କଠୁ ବହୁଗୁଣରେ ମାରାତ୍ମକ କିଛି ମଣିଷ ଜୀବନ ଜିଉଁଜିଉଁ ଛଳନାର ପୋଷାକ ପିନ୍ଧି, ହିଂସା ଅସୂୟାର ବୀଜ ବୁଣିବୁଣି କଳୁଷିତ କରୁଥାନ୍ତି ସମାଜକୁ । ଦେହରେ ପିନ୍ଧିଥାନ୍ତି ଗୋଟେ ପୋଷାକ, କହୁଥାନ୍ତି ମୁହଁରେ ମଧୁର କଥା, କିନ୍ତୁ ତାଙ୍କ ଭିତରେ ଭରି ରହିଥାଏ ବିଷାକ୍ତ କଣିକା ସବୁ, ଯାହା ପ୍ରତି ମୁହଁରେ ସମାଜର ଅପୂରଣୀୟ କ୍ଷତି କରି ଚାଲିଥାଏ । ସେମାନେ ବିଶ୍ୱାସଘାତକତା,

ସମାଜଦ୍ରୋହ ସହ ଅକଳନୀୟ ହୋଇ ସମଗ୍ର ମଣିଷ ସମାଜ ପାଇଁ ଶତାବ୍ଦୀର ଶ୍ରେଷ୍ଠ ଅଭିଶାପ ପାଲଟି ଯାଇଥାନ୍ତି ।

ଏ ଭିତରେ ବାଛିବାଇ ହେବ ପ୍ରତ୍ୟେକ ପ୍ରାଣୀକୁ କେଉଁ ଜୀବନ ଶ୍ରେଷ୍ଠ । ତାକୁ ଆପଣାଇବାକୁ ହେବ କେଉଁଧାରା । ସେଇଟା ନିଜ ନିଜର ପସନ୍ଦର । କିଛି କାଳ ପରେ ସମାଜ ଗୋଟିଗୋଟି କରି ଚିହ୍ନାଇ ଦେବ କିଏ ଜିଉଁଥିଲା କେଉଁ ଜୀବନ, କେଉଁଟା ଥିଲା ସମାଜ ପାଇଁ ସେତୁବନ୍ଧରେ ବାଲିମୁଠାଏ ଓଜାଡ଼ି ଦେବାର ସୁଉଦ୍ୟମ ନା ବୋମା ଖଞ୍ଜି ବନ୍ଧକୁ ନଷ୍ଟ ବିଧ୍ୱସ୍ତ କରିବାର ହୀନ କଳ୍ପନା ମୁଖା ମାନଙ୍କ ତଳେ ଲୁଚି ରହିଥିଲା । ସବୁତକ ସମୟର କଷଟି ପଥରରେ ପରଖି ହୋଇଯିବ । ଜୀବନ ମଣିଷକୁ ନାନା ସମ୍ଭାରରେ ସୁସଜ୍ଜିତ କରେ, ହେଲେ ମୃତ୍ୟୁ ? ମୃତ୍ୟୁ ଜୀବନ ପାଇଁ ଏକ ସାଂଘାତିକ ଅସହାୟତା । ସବୁ ଘଟଣାର ଏକ ବିରାଟବଡ଼ ପୂର୍ଣ୍ଣଚ୍ଛେଦ । ଜନ୍ମଠୁ ମୃତ୍ୟୁପର୍ଯ୍ୟନ୍ତ ସମୟ, ଏ ଭିତରର ଜୀବନକୁ ଯିଏ ଯେତେ ଭଲକରି ସଜାଇ ପାରିଲା, ପୂର୍ଣ୍ଣଚ୍ଛେଦ ଟାଣିବା ପରେ ବି ଆଉ ଏକ ପ୍ରବାହ ବାକିଥାଏ ଶେଷ ପୂର୍ଣ୍ଣଚ୍ଛେଦ ଟାଣିବା ପର୍ଯ୍ୟନ୍ତ । ସେଇଟା ସମଗ୍ର ଜୀବନ କାଳରେ ଘଟିଥିବା ସମସ୍ତ ଘଟଣାଠାରୁ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ ହୋଇଥାଏ । ନିରୋଳା ଜୀବନ ଜିଇଁଥିବା ମଣିଷମାନେ ଛାଣି ହୋଇଯାଇ ଅନ୍ୟମାନଙ୍କ ପାଇଁ ଆଦର୍ଶ ବନିଯାଆନ୍ତି । ମୃତ୍ୟୁ ସହ ଜୀବନର ଶେଷ ହୋଇଯାଏ, ହେଲେ ପୁଣି ଏକ ଜିଇଁବା ଆରମ୍ଭ ହୁଏ, ଭାରୀ କୀର୍ତ୍ତିପୂର୍ଣ୍ଣ, ଭାରି ଇପ୍‌ସିତ, ଭାରି ଆକାଂକ୍ଷିତ ସେଇ ବଂଚିରହିବା । ସମଗ୍ର ଜୀବନକାଳର ଅର୍ଜିତ ନିଷ୍ଠାପର ଓ ନିଃସ୍ୱାର୍ଥପର ଉଦ୍ୟମ କାଳକାଳ ଧରି ବଂଚାଇ ରଖିଥାଏ ସେଇ ଭଲମଣିଷମାନଙ୍କୁ, ସୁଆତ୍ମାମାନଙ୍କୁ ଆତ୍ମାଭୋଗ କରିବା ପାଇଁ ନିଜ ଅଲିଭା ପାଦଚିହ୍ନର ଅମଳିନ କୀର୍ତ୍ତିରାଜିର ।



# ଜୀବନ... ଗୋଟିଏ ଅସମାହିତ ପ୍ରଶ୍ନବାଚୀ !

ପଲ୍ଲିଶ୍ରୀ ପଟ୍ଟନାୟକ

ମଣିଷର ବଞ୍ଚିବାଟାକୁ ଯଦି ଜୀବନ ଆଖ୍ୟା ଦିଆଯାଏ, ତା ହେଲେ ସତରେ କ'ଣ ତା'ପାଇଁ କିଛି ନିର୍ଦ୍ଦିଷ୍ଟ ନୀତି-ନିୟମ, ଶୃଙ୍ଖଳା ଅଛି, ଯେଉଁ ରାସ୍ତାରେ ଗଲେ ସଭିଏଁ ସୁଖୀ ହୋଇପାରିବେ ? ବୋଧହୁଏ ନାହିଁ । କାହିଁକି ନା ପ୍ରତ୍ୟେକ ମଣିଷର ଜୀବନଦର୍ଶନ ଓ ଜୀବନ ଜିଇବାର ଧାରା ପ୍ରତ୍ୟେକଙ୍କ ଠାରୁ ଅଲଗା । ଆଜି ମୋ ଜୀବନରାସ୍ତାର ଅନେକ ଉଠାଣି-ଗଡ଼ାଣି ପରେ ମୁଁ ଯେଉଁଠି ପହଞ୍ଚିଛି ଓ ଆଗକୁ ଯେତେବାଟ ମଧ୍ୟ ଯିବାର ସମ୍ଭାବନା ଅଛି, ସବୁକିଛି ହୁଏତ ବିଧିନିର୍ଦ୍ଦିଷ୍ଟ ଥାଇପାରେ । ମାତ୍ର ମୁଁ ତ କହିବି ଜୀବନପ୍ରତି ସକାରାତ୍ମକ ଦୃଷ୍ଟିଭଙ୍ଗୀ ଓ ନିଜର ଦୃଢ଼ ଇଚ୍ଛାଶକ୍ତି ଥିଲେ ମଣିଷ ଅସାଧ ସାଧନ କରିପାରେ । ଏ ବିଶ୍ୱରେ ଯେତେ ସୃଜନାତ୍ମକ ଜିନିସ, ପୁଣି କଳା, ବିଜ୍ଞାନ ଓ ସଂସ୍କୃତି ଯାହାକିଛି ମଣିଷ ସୃଷ୍ଟ, ସବୁତ ତା'ର ଏଇ ମସ୍ତିଷ୍କ, ହୃଦୟ, ମନର କେନ୍ଦ୍ରୀଭୂତ ଆବେଗର ସମାହାର । ନୁହେଁ କି ? ତାହାହେଲେ ଆମେ ବି ଆମ ମଣିଷଭାବେ ଜନ୍ମିବାର ଅବଦାନ ଟିକକ ଏଇ ସଜଳ ସୁନ୍ଦର ପୃଥିବୀକୁ ନ ଦେବା କାହିଁକି ? ମୋ ନିଜକଥା ଲେଖୁଛି, ପ୍ରତ୍ୟେକ ଅବସ୍ଥାରେ ମୁଁ ନିଜକୁ କହେ- ଇଭେନ୍ ଦିସ୍ ସେଲ୍ ପାସ୍ ଏୱେ । ଏହି ଅବସ୍ଥା ରହେ ନାହିଁ । ସୁଖ ହେଉ କିମ୍ବା ହେଉ ଦୁଃଖ, ଏହା କ୍ଷଣସ୍ଥାୟୀ । "ନୋଥିଙ୍ଗ ଇଜ୍ ଅବ୍‌ସୁଲେଟ୍"- ଆଇନ୍‌ଷ୍ଟାଇନ୍ କହିଛନ୍ତି । "ମା' କୁରୁ ଧନଜନ ଗୌରବମ୍ ଗର୍ବମ୍, ହରତି କାଳ ନିମିଷକେ ସର୍ବମ୍" । ସଭିଁଏ କାଳର ଅଧୀନ । ତେଣୁ ଏହି ଅନ୍ଧପୁରୁଷାକାରକୁ ନେଇ ଗର୍ବ କରିବା ଅପେକ୍ଷା ଜୀବନର ପ୍ରତ୍ୟେକଟି ସମୟରେ କିଛି ଭଲକାମ ଅନ୍ୟ ପାଇଁ କରିଦେବା । କିଛି ମୂଲ୍ୟବୋଧ ଏହି ଜୀବନରେ ଭରିଦେବା । ସଫଳ ଜୀବନର ଏହା ହିଁ ରହସ୍ୟ । ଗଳି ଭିତରେ କୁକୁର ଛୁଆ ଗୁଡ଼ାଙ୍କୁ ପିଲାଟିଏ ଟେକାମାରି ଆନନ୍ଦ ପାଉଥିଲା, ଅଥଚ ସେଇ ନିରୀହ ପଶୁଗୁଡ଼ିକଙ୍କର ଯନ୍ତ୍ରଣା ମୋ ଶିରାପ୍ରଶିରାକୁ ଉଚ୍ଛନ୍ନ କରି ପକାଉଥିଲା । ସେମାନଙ୍କର ବିକଳ ଚିତ୍କାର ପିଲାଟିକୁ ଦେଉଥିଲା ନିର୍ଯାତନାରୁ ଉଦ୍ଭବ ଏକ ପୈଶାଚିକ ନିଷ୍ଠୁର ଆନନ୍ଦ । ସେଠି କୁକୁରମାନଙ୍କୁ ଉଦ୍ଧାର କରି ଛୋଟ ଶିଶୁଟିର କଅଁଳ ମନ ଭିତରୁ ସେଇ ପୈଶାଚିକ ପ୍ରବୃତ୍ତିଟିକୁ ବାହାର କରିବାକୁ ମୁଁ ଚେଷ୍ଟାକରିଥିଲି । ସମୟ ଗଡ଼ିଚାଲିଛି, ଚାଲିବ । ସେ କାହାରି ଅଧୀନ ନୁହେଁ । ଆମେ ଆମ ଜୀବନକାଳ

ତା' ସହ ତାଳ ଦେଇ କେମିତି ଆଗକୁ ନେବା ତାହାହିଁ ପ୍ରଧାନ । ଆଜି ସବୁଆଡ଼େ ଅନ୍ଧ ପ୍ରତିଯୋଗିତା । ସାହିତ୍ୟରେ ପୁରସ୍କାରକୁ ନେଇ ତ, ଜୀବନରେ ଧନ ଓ ପ୍ରତିପତ୍ତିକୁ ନେଇ । ତଥାପି ତାରି ଭିତରେ ବି ପ୍ରତ୍ୟାଶା ନ ରଖି ଅନେକ ଲୋକ ଅନେକ କିଛି ସମାଜର ଉନ୍ନତି ପାଇଁ କରିଥାନ୍ତି । ମୋ ଜୀବନରେ ମୁଁ ଡ.ଅବଦୁଲ୍ କାଲାମ୍, ମୋ ପିତାମାତା ଓ ସ୍ୱାମୀଙ୍କ ସହ ମୋର ଗୁରୁଦେବ ସ୍ୱାମୀ ଶ୍ରୀ ନିଜାନନ୍ଦ ସରସ୍ୱତୀଙ୍କୁ ଆଦର୍ଶ ଭାବେ ଗ୍ରହଣ କରିଛି । ଜୀବନକୁ କେମିତି ବଞ୍ଚିଲେ ଆମେମାନେ ଆନନ୍ଦର ସହ ଜିଇ ସମାଜକୁ ଉନ୍ନତିପଥରେ ନେଇପାରିବା । ମୋର ବି କିଛି ଅବଦାନ ରହିବ ଏ ଦୁନିଆଁ ପାଇଁ, ହେଉପଛେ ଗୁଣ୍ଡୁଚିମୂଷା ପରି ସବୁବେଳେ ତାହା ହିଁ ଚିନ୍ତା କରୁଥିଲି । ହେଲେ ଚଉଦବର୍ଷରେ ମାଟ୍ରିକ୍ ଫାଷ୍ଟକ୍ଲାସ୍ ପାଇଲା ପରେ ସେତେବେଳେ (୧୯୮୬) ଆଜିପରି ପିଲାଙ୍କର ମ୍ୟାଚୁୟୋଡ୍ ମାଇଣ୍ଡ ମୋର କି ଆମ ଘରେ କାହାର ନଥିବାରୁ +୨ ବିଜ୍ଞାନ ପଢ଼ିଲି ଏଫ୍.ଏମ୍. କଲେଜ ବାଲେଶ୍ୱରରେ । ବେଙ୍ଗଟିଏ କାଟିନପାରି ହାତ ଥରିବା, ତାର ଯନ୍ତ୍ରଣାକାତର ଦେହ କେମିତି ଆମ ଲାବୋରେଟୋରୀର ବିଷୟବସ୍ତୁ ହେବାପାଇଁ ହିଁ ନିଥର ହୋଇଯିବା ଇତ୍ୟାଦି ଭାବୁଥିଲି । ପଦାର୍ଥବିଜ୍ଞାନ ବା ରାସାୟନିକ ବିଜ୍ଞାନର ଶ୍ରେଣୀ ଠାରୁ ମୋତେ ପ୍ରହ୍ଲାଦସାର୍‌ଙ୍କର ଓଡ଼ିଆ କ୍ଲାସ୍ ଭଲ ଲାଗୁଥିଲା । ଅଥଚ ହାଏ ! ସେତେବେଳେ ଥ୍ରୀ ଇଡ଼ିୟଟସ୍ ଫିଲ୍ମ ଦେଖିଥାନ୍ତି କି ମୋ ଜୀବନର ମୂଲ୍ୟବାନ ଗୁଡ଼ାଏ ବର୍ଷ ନିଜକୁ ଆବିଷ୍କାର କରିବାପାଇଁ ହିଁ କଟିନଥାନ୍ତା । ମୋର ମନେହୁଏ, ଏ ସଂସାରର ସକଳ ଜୀବ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ହିଁ ଜନ୍ମ ନେଇଥାନ୍ତି । ଯାହାକି ତାକୁ ନିଜକୁ ଓ ତା' ପରିବାର, ପରିବେଶକୁ ଖୋଜି ବାହାର କରିବାକୁ ହେବ । ସେଇ କାମଟି ଯଦି ସେ କରିପାରେ ସେ ତ ନିଜେ ଆନନ୍ଦରେ ବଞ୍ଚେ, ତା' ସହ ଆନନ୍ଦ ବି ବାଣ୍ଟିପାରେ । ମାତ୍ର ଯଦି ବାଧ୍ୟବାଧକତାରେ ସେ କୌଣସି ପ୍ରଫେସନ୍‌ରେ ପଶେ ? ସାରା ଜୀବନ ତା'ର ଗୋଡ଼େଇ ଚାଲିବା ହିଁ କ'ଣ ଏ ଜୀବନର ଉଦ୍ଦେଶ୍ୟ ? ମୁଁ ଇଲେକ୍‌ଟ୍ରୋନିକ୍‌ସ ଟେଲିକମ୍ ଇଂଜିନିୟରିଂ ଡିପ୍ଲୋମା କଲି, କମ୍ପ୍ୟୁଟର ସାଇନ୍‌ସରେ ପୋଷ୍ଟ ଡିପ୍ଲୋମା କଲି, ମାତ୍ର ପାଠରୁ ମୋତେ ସେ ମଜା ଆନନ୍ଦ ମିଳୁନଥିଲା, ଯେତେ କବି ମାନସିଂ ବା ବ୍ରଜରଥଙ୍କ କବିତାରୁ ମିଳୁଥିଲା । ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ହେଲା ଯେବେ ପ୍ରେମର ଫଲ୍‌ଗୁରେ ମୋତେ ବି ହୋଲି ଖେଳିବାର ସୁଯୋଗ ମିଳିଲା । ପାଠ ଶେଷ ହେଲା । ମୋର ପ୍ରେମବିବାହ ହେଲା, ଆଉ ମୁଁ ଖୋଜିଲି ମୋତେ... । ଗୋଟେ ନୂତନ ଯାତ୍ରାର ଅୟମାରମ୍ଭ । ଗୋଟିଏ ସାଧାରଣ ସ୍ତ୍ରୀଲୋକର ଜୀବନ ଜିଇଁବାର ମାନସିକତା ମୋର କେବେ ବି ନଥିଲା । ଗୋଟିଏ ସ୍ୱାଧୀନ ଚିନ୍ତାଧାରାର ଯେଉଁ ବୀଜ ମୋ ବାପା-ମା' ମୋ ଭିତରେ ବୁଣିଦେଇଥିଲେ, ତା'ର ଅଙ୍କୁରୋଦ୍‌ଗମ୍‌ରେ ସାହାଯ୍ୟ

କଲେ ମୋ ସ୍ୱାମୀ ଏବଂ ତାହା କ୍ରମେ କାୟାବିସ୍ତାର କରି ମହାଦ୍ରୁମରେ ପରିଣତ ହେଲା । ମୋର ଏକମାତ୍ର ଝିଅ ଜନ୍ମହେଲା । ତା'ପୂର୍ବରୁ ସେ ଯେତେବେଳେ ଗର୍ଭରେ ଥିଲା ମୁଁ +୩ କଳା ଓଡ଼ିଆ (ଅନର୍ସ) ପ୍ରିଡିଗ୍ରୀ ପରୀକ୍ଷା ଦେଇଥିଲି । ବି.ଏ. ପାସ୍ କଲି, ଏମ୍.ଏ.ରେ ନାମଲେଖା... କେତେ ଯନ୍ତ୍ରଣା, ବେଦନା, ହା-ହତାଶରେ କଟିଛି ସେ ଦିନସବୁ... ଛୋଟଛୁଆ, ଯୌଥପରିବାର, କାମ... କାମ ଆଉ କାମ.... ନିଶ୍ୱାସ ନେବାକୁ ଫୁରସତ୍ ନାହିଁ... ପାଠ ପଢ଼ିବି କେତେବେଳେ ? ତଥାପି ମୋର ସ୍ୱପ୍ନ, ମୋ ସ୍ୱାମୀଙ୍କ ପ୍ରେରଣା, ସବୁ ବହି ଜେରକ୍ସ, ନୋଟ୍... ଯୋଗାଇଦେବା । ମୋତେ କେବେ ଧୈର୍ଯ୍ୟହରା କରିନାହିଁ । ହଁ... ମୁଁ କେତେଥର ଭାଙ୍ଗିପଡ଼ିଛି ମାତ୍ର କେବେ ଭାବିନାହିଁ ନାଁ... ମୁଁ ଆଉ ପାରିବିନି । ସବୁବେଳେ ଭାବିଛି... ହଁ.... ମୁଁ ପାରିବି... ନିଶ୍ଚୟ ପାରିବି । ଝିଅ ବଡ଼ହୋଇଛି, ଶାଶୁ ଶଶୁର ଅଧିକ ଅଧିକ ଜରାଗ୍ରସ୍ତ ହୋଇଛନ୍ତି, ସ୍ୱାମୀ ପ୍ରମୋସନ୍ ପାଇ ବାହାରକୁ ଯାଇଛନ୍ତି । ଘରର ସବୁ ଦାୟିତ୍ୱକୁ ବଡ଼ବୋହୂ ଭାବରେ ନିଜର କାନ୍ଧକୁ ଉଠାଇ ନେଲାବେଳେ ମୋର ସାମାଜିକ ପ୍ରତିବଦ୍ଧତାକୁ, ମୁଁ କିନ୍ତୁ କେବେ ବି ଭୁଲିପାରିନି... ମୋ ସ୍ୱପ୍ନ ମୋତେ ସଞ୍ଜୀବିତ କରିଛି । ଏମିତି ଗୋଟିଏ ରାତିନାହିଁ ଯେଉଁ ରାତିରେ ମୁଁ ମୋର ଶସ୍ୟଶ୍ୟାମଳିତ ଶିକ୍ଷିତ ଉନ୍ନତ ଓଡ଼ିଶା କଥା ନ ଭାବିଛି । ହେଲେ କେମିତି... ? ମୁଁ ଯେ ସାଧାରଣ ଘରୋଇ ସ୍ତ୍ରୀଲୋକଟିଏ । ଅନେକ ଝଡ଼ଝଞ୍ଜା ସହି ବି ଯିଏ ଧୈର୍ଯ୍ୟ ନ ହରାଏ, ତା'ରି ପାଇଁ ହିଁ ସୁନେଲି ସକାଳର ଅନେକ ସମ୍ଭାବନା ଥାଏ... । ମୁଁ ସର୍ବଭାରତୀୟ ସ୍ତରରେ ୟୁଜିସି ନେଟ୍ ଜେ.ଆର୍.ଏଫ୍.ଏସ୍.ଆର୍.ଏଫ୍ ପାଇଲି । ପିଏଚ୍.ଡି କଲି, ଡକ୍ଟରେଟ୍ ପାଇଲି । ପୁଣି ଆଉ ଏକ ଜାତୀୟ ବୃତ୍ତି ବି ଲାଭ କଲି । କେତେଗୁଡ଼ାଏ ଦେଶ ବିଦେଶ ବୁଲିଲି । ଇଗ୍ନୁରେ ପି.ଜି.ଡି.ଆର୍.ଡି, ପି.ଜି.ଜେ.ଏମ୍.ସି. କଲି ଲ' ପଢ଼ିଲି । ଓଡ଼ିଶା ଲୋକସେବା ଆୟୋଗର ସିଭିଲ୍ ସର୍ଭିସ୍‌ରେ ଭାଇଭାରେ କଟି ବାସ୍ତବିକ୍ ଭାଙ୍ଗିପଡ଼ିଥିଲି । ମାତ୍ର ପୁଣି ପ୍ରଚେଷ୍ଟା ମୋର ସ୍ୱାମୀଙ୍କର ବିଶ୍ୱାସ ମୋ ଛୁଆର ସେ ନିରୀହ ପ୍ରଶ୍ନ । ମମ୍ମୀ ତୁମର ପରୀକ୍ଷା କେବେ ସରିବ ? ଏଥର ତମେ ପାସ୍ କରିବ ନାଁ... ଫେଲ୍.... ? ଏବେ ବି ଭାବିଲେ ଏ ସମାଜକୁ ଗଢ଼ିବାରେ ମୋର କ'ଣ କିଛି ଅବଦାନ ରହିବ ନାହିଁ... OPSCର Jr.Lect ପରୀକ୍ଷାରେ ଓଡ଼ିଶା ଟପ୍ପର ହୋଇ ଆଜି ମୋ ଘର ପାଖରେ Govt.Autonomous College, (NAAC acredited B++-Centre of Excellence ମାନ୍ୟତା ପ୍ରାପ୍ତ)ରେ ମୁଁ ଓଡ଼ିଆ ଅଧ୍ୟାପିକା । ମୋ ଆଖି ଆଗରେ ଶ୍ରେଣୀଗୃହରେ ଉତ୍ତାଳ ସମୁଦ୍ରର ତରଙ୍ଗପରି ଉଚ୍ଛ୍ୱସିତ ଯୁବସମାଜ... ହଷ୍ଟେଲର ତତ୍ତ୍ୱାବଧାରିକା ମୁଁ... ୨୬୫ ଝିଅଙ୍କର ମା' । କଳାହାଣ୍ଡି ପରି ଏକ ଅନୁନ୍ନତ ଜିଲ୍ଲା, ଯେଉଁଠି ରାସ୍ତାଘାଟ, ଶିକ୍ଷା, ସ୍ୱାସ୍ଥ୍ୟ ପ୍ରାୟ ସବୁକିଛିରେ ପଛୁଆ, ସେଠି ମୋ ମନରେ

ସଂକଳ୍ପ-ମୁଁ କିଛି ପିଲାଙ୍କୁ ଗଢ଼ିବି ସେମାନଙ୍କୁ ନୂତନ ଭାରତ, ନୂତନ ଓଡ଼ିଶା ନୂତନ କଳାହାଣ୍ଡି ଗଢ଼ିବା ପାଇଁ ପ୍ରେରଣା ଦେବି । ସେମାନେ ମୋର ମାନସ ପୁତ୍ର କନ୍ୟା । ଏ ବୃହତ୍ତର ସମାଜର ଅଂଶବିଶେଷ । ଆଉ କ'ଣ ଲୋଡ଼ା ଏ ଜୀବନରେ ? ମୋର ପିଲାମାନେ ମୋତେ ଭାରି ଭଲପାଆନ୍ତି, ମୁଁ ବି ସେମାନଙ୍କୁ । ମୁଁ ଏକ ଆଦର୍ଶ ଶିକ୍ଷୟିତ୍ରୀ ହେବାକୁ ଚେଷ୍ଟା କରୁଛି । ମୋ ଜୀବନ ମୋତେ ଏତିକି ଶିକ୍ଷା ଦେଇଛି, କେବେ କେଉଁ ପରିସ୍ଥିତିରେ ଭାଙ୍ଗି ପଡ଼ିବାନାହିଁ । କାରଣ ସେଇ ସମୟ ପରେ ଆସେ ପୁଣି ଏକ ଭଲସମୟ । ଧୈର୍ଯ୍ୟ ଧରିବା, ସ୍ୱପ୍ନ ଦେଖିବା ଆଉ ଦେଖିବା ସ୍ୱପ୍ନଗୁଡ଼ିକ ସମ୍ଭାବନାରୁ କେମିତି ସତ୍ୟରେ ପରିବର୍ତ୍ତିତ ହେଉଛି ତା'ର ପ୍ରକ୍ରିୟାଟିକୁ ଲକ୍ଷ୍ୟ କରିବା । ଜୀବନ ସବୁବେଳେ ମଧୁର ନଥାଏ । ପୁଣି ଅନେକ ସମୟରେ ଆମ ଇଚ୍ଛାରେ ବି ଅନେକ କିଛି ହୁଏନା । ତଥାପି ଆଶା ନେଇ ଆମେ ବଞ୍ଚିବା । ଏ ସମାଜ, ଏ ଜଗତ ଏ ପରିବାର ସବୁ ମୋର, ମୋର, ମୋର । ମୁଁ ଏକ ପରିବାରର ପ୍ରତ୍ୟେକଟି ଛୋଟବଡ଼ ସଦସ୍ୟଙ୍କର ଖିଆଲ୍ ରଖେ । ମୋ ସ୍ୱାମୀ, ଝିଅ, ଶାଶୁଘର, ମୋ ବାପଘର, ପଡ଼ା ପଡୋଶୀ, କୁକୁର, ବିଲେଇ, ଭିକାରୀ ବୃଦ୍ଧ, ଶିଶୁ ପୁଣି ମୋ କଲେଜ ହଷ୍ଟେଲ... ଆଃ... କି ଆନନ୍ଦ ନିଜକୁ ବାଣ୍ଟିବାରେ ! ଆଉ 'ବା' ମଣିଷ କ'ଣ ଋହେଁ ? ମୋ ପାଖରେ ବେଶି ଧନ ନାହିଁ- ଋହେଁ ନା । ଜନ ନାହିଁ- ଋହେଁନା । ଖାଲି ବାସ୍ ଏ ଜୀବନ.... ସର୍ମପିତ ହେଉ ଏ ଜାତି ଉଦ୍ଦେଶ୍ୟରେ... ପ୍ରତି ମୁହୂର୍ତ୍ତ କଟୁ ଭଲ କାମରେ । ପ୍ରତିଟି ଛୋଟବଡ଼ ଦାୟିତ୍ୱକୁ ମୁଁ ଉଠାଇ ନିଏ ମୋ କାନ୍ଧରେ... ମୋତେ କଷ୍ଟହୁଏ, ଯନ୍ତ୍ରଣା ହୁଏ ମାତ୍ର ମୁଁ ହାରିଯାଏନା । ମୋ ସ୍ୱାମୀ ମୋ ଠାରୁ ବହୁଦୂରରେ । ହଷ୍ଟେଲରେ ରହି ଏବେ ସେ ପାଠ ପଢୁଛନ୍ତି । ଘର ପରିବାରକୁ, ମୋତେ- ଝିଅକୁ ଝୁରୁଛନ୍ତି । କାନ୍ଦୁଛନ୍ତି । ମୋର ଯନ୍ତ୍ରଣା ବେଦନା ଋପି ମୁଁ ତାଙ୍କୁ ପ୍ରବୋଧନା ଦେଉଛି, ସାହସ ଦେଉଛି, ତୁମେ ଆଇ.ଆଇ.ଟି.ରୁ ପିଏଚ୍.ଡି ନେଇ ଆସିବ । ଏ ସମାଜରେ ଶିକ୍ଷାର ନୂତନ ରାସ୍ତା ଖୋଲିଦେବ । ଆଉ କ'ଣ ଦରକାର ? ଦିନେ ସେ ମୋତେ ରାହାଦେଇଥିଲେ, ଏବେ ମୁଁ ତାଙ୍କୁ ରାହା ଦେଉଛି । ଆମେ ଦୁହେଁ ସାଥି ହୋଇ ଏ ସମାଜକୁ ଅକ୍ଷୟ ଅବଦାନ ଦେବୁ । ନିରବଚ୍ଛିନ୍ନ ଭାବେ ଏକ ଶାଶ୍ୱତ ଆନନ୍ଦ ଉପଲବ୍ଧି କରୁଛି ମୁଁ ।

ଦୃଢ଼ ଇଚ୍ଛାଶକ୍ତି, ମନୋବଳ ଆଗରେ ସବୁ ପରିସ୍ଥିତି ହାରମାନେ । ମାନିବାକୁ ବାଧ୍ୟ । ଜନ୍ମଦିନକୁ କିଏ କେମିତି ପାଳୁଛନ୍ତି । ଏଇ ନିଆରା ଜନ୍ମଦିନ ପାଳନ ପାଇଁ ପ୍ରକାଶକଙ୍କୁ ଅନେକ ଶୁଭେଚ୍ଛା ଓ ଧନ୍ୟବାଦ ।



# ଜୀବନ

**ହୃଷୀକେଶ ସାହୁ**

ମଣିଷ ଜନ୍ମନେବା ଓ ମୃତ୍ୟୁବରଣ କରିବା ଏକ ଚିନ୍ତରନ ପ୍ରକ୍ରିୟା । ମଣିଷ ଜୀବନକୁ କିଏ କେତେ ମାର୍ଗରେ ଚିନ୍ତନ କରେ, ଏହାର କଳନା ନାହିଁ । ଜୀବନ ଯାତ୍ରାରେ ମଣିଷର କର୍ତ୍ତବ୍ୟ କଣ, ସମାଜ ପାଇଁ ତାର ଭୂମିକା କଣ ହେବା ଉଚିତ, ଦେଶ ଓ ଜାତିପାଇଁ ଅବଦାନ କିଛି ଅଛି କି ନାହିଁ, ଏହାକୁ ଚିନ୍ତା କରିବାର ବେଳ ପ୍ରାୟ ସାଧାରଣ ମଣିଷଟିର ମାନସିକତାରେ ଆଦୌ ଅଙ୍କୁରିତ ହଏନାହିଁ ବା ହେବାର ପରିବେଶ ନଥାଏ । ତେବେ ଏହା ନିଶ୍ଚିତ ଯେ, ଜୀବନ ଏକ ବହୁମୂଲ୍ୟବାନ ପଦାର୍ଥ । ଏହାକୁ ସଦୁପଯୋଗ କରିବା ନିଶ୍ଚିତ ଜରୁରି, କାରଣ କେତେବେଳେ ଏହି କ୍ଷଣଭଂଗୁର ଦୁନିଆରେ କ୍ଷଣସ୍ଥାୟୀ ଜୀବନଟିର ଅବସାନ ଘଟିବ, କିଏ ଜାଣେ ?

ଏହି ପରିପ୍ରେକ୍ଷୀରେ ଜୀବନକୁ ସଠିକ ମାର୍ଗରେ ପରିଚାଳିତ କରିବା ସହ ସର୍ବଦା ଏକ ସକାରାତ୍ମକ ଚିନ୍ତାଧାରା ଭିତରେ ନିଜକୁ ଅଗ୍ରସର କରାଇନେବା ଉଚିତ ହେବ । ଏଥିପାଇଁ ପ୍ରଥମ ପର୍ଯ୍ୟାୟରେ ଖୁସିକୁ ଆପଣେଇବାକୁ ପଡ଼ିଥାଏ । ଖୁସି ବା ସୁଖରେ ଜୀବନ ବିତାଇବାର କ୍ଷମତା ଜୀବଜଗତରେ ବିଶେଷକରି ମଣିଷକୁହିଁ ମିଳିଥାଏ । ଦ୍ୱିତୀୟରେ ସକାରାତ୍ମକ ଚିନ୍ତନର କ୍ଷମତା ମଧ୍ୟ ମଣିଷକୁ ଜନ୍ମରୁ ମିଳିଛି । ତା ସତ୍ତ୍ୱେ ମଣିଷ ନିଜକୁ ସଠିକ ମାର୍ଗରେ ପରିଚାଳିତ କରିବାର କ୍ଷମତା ହରାଇ ବସିବାର ନଜିର ଅଛି । ଏଥିପାଇଁ ପରିବେଶ ଓ ସାଂପ୍ରତିକ ପରିସ୍ଥିତିର ପ୍ରତିକୂଳ ପ୍ରଭାବ ଦାୟୀ ହୋଇପାରେ ।

ଜୀବନ ଏକ ସଂଘର୍ଷ । ଜୀବନ ସଂଘର୍ଷରେ ହତୋତ୍ସାହିତ ହେଲେ ଜୀବନର ବ୍ୟର୍ଥତା ପରିଲକ୍ଷିତ ହୁଏ । ଜୀବନର ଚଲାପଥରେ ବହୁ ଦୁଃଖ, ଯନ୍ତ୍ରଣା ଓ ଦୁର୍ଘଟଣା ଆସିବା ନିତିଦିନିଆ ଘଟଣା । ଯେଉଁ ମଣିଷର ଦୁଃଖ ନାହିଁ, କି ସେ ଯନ୍ତ୍ରଣା ଅନୁଭବ କରିନି, ଅଭାବ ଅନାଟନକୁ ଉପଲବ୍ଧି କରିନି, ସେ ମଣିଷ ମଣିଷ ପଦବାଚ୍ୟ ହୋଇପାରେନା । ଦୁଃଖ ବିନା ବଞ୍ଚିବା ପ୍ରକୃତ ବଞ୍ଚିବା ନୁହେଁ । ଯେଉଁ ମଣିଷ ଦୁଃଖ ଯନ୍ତ୍ରଣା ମଧ୍ୟରେ ଗତିକରି ଆସିଛି ସେହିଁ ପ୍ରକୃତ ମଣିଷ । ସମସ୍ତ ଝଡ଼ଝଞ୍ଜା ମଧ୍ୟରେ

ସଂଘର୍ଷ କରି ଜୀବନ ବିତାଇବା, ସେ ସବୁକୁ ଧୈର୍ଯ୍ୟର ସହ ମୁକାବିଲା କରିବା ଓ ତାକୁ ଅତିକ୍ରମ କରିପାରିଲେ ମଣିଷ ଏକ ପରିପକ୍ୱ ଜୀବନର ଉପଲବ୍ଧି କରିପାରେ । ସର୍ବଦା ସମସ୍ତ ପ୍ରତିକୂଳ ଅବସ୍ଥାକୁ ସକାରାତ୍ମକ ଚିନ୍ତା ସହ ମୁକାବିଲା କରିବା ଉଚିତ ।

ଏହାର ଅନ୍ୟ ଏକ ସହଜ ସମୀକରଣ ହେଲା ମଣିଷର ନିଜର ବର୍ତ୍ତମାନର ସ୍ଥିତିରେ ସନ୍ତୁଷ୍ଟ ହେବା ଉଚିତ । ଅତୀତକୁ ଭୁଲିବା ଉଚିତ ନୁହେଁ । ମାତ୍ର ଅତୀତକୁ ମନେପକାଇ ବାହୁନି ହେବା ଏକ ପାଗଳାମି । ବର୍ତ୍ତମାନକୁ ନେଇ ସନ୍ତୁଷ୍ଟ ରହିବା ଓ ଭବିଷ୍ୟତକୁ ନେଇ ସକାରାତ୍ମକ ଓ ସମ୍ଭାବ୍ୟ ସ୍ୱପ୍ନ ଦେଖିବା ଉଚିତ । ବିଶେଷକରି ଜଣେ ନିଜର ସମୃଦ୍ଧିକୁ ଅଧିକରୁ ଅଧିକ ବୃଦ୍ଧିର ପ୍ରୟାସ କରି ଯାତନା ପାଉଥିବା ବେଳେ ତାର ସହଯୋଗୀ, ସହପାଠୀ ବା ସମଭାବାପନ୍ନ ଯେ କୌଣସି ବ୍ୟକ୍ତିର ଦୁଃଖଦ ପରିସ୍ଥିତି କଥା ଚିନ୍ତା କରିବା ଦରକାର । ଫଳତଃ ଜଣେ ଅଧିକ ସ୍ୱାର୍ଥପର ହେବାର ଆକାଂକ୍ଷା ହୁଏତ ହ୍ରାସ ପାଇବ ।

ମଣିଷ ଜୀବନରେ ଯେତେ ଝଡ଼ଝଞ୍ଜା ଆସୁ ପଛକେ, ତାକୁ ଅତିକ୍ରମ କରିବା ହେଲା ମନୁଷ୍ୟତାର ପ୍ରକୃତ ଲକ୍ଷ୍ୟ । ତତ୍‌ସହିତ ସମାଜ, ଜାତି ଓ ଦେଶର ଉନ୍ନୟନରେ ମଣିଷର କିଛି କର୍ତ୍ତବ୍ୟ ରହିଛି । ମଣିଷ ମଣିଷ ମଧ୍ୟରେ ଦ୍ୱେଷ ଓ ମନୋମାଳିନ୍ୟକୁ ଏଡ଼ାଇବା ମାନବିକତାର ପରିଚୟ । ଅନ୍ୟର କିଛି ଭଲ ନ କରି ପାରିବା କିଛି ଅପରାଧ ନୁହେଁ । କିନ୍ତୁ କାହାର କ୍ଷତି କରିବା ନିଶ୍ଚୟ ଏକ ଅକ୍ଷମଣୀୟ ଅପରାଧ ।



# ମୃତ୍ୟୁ-ଜନ୍ତାରୁ- ମୁକ୍ତିର ସନ୍ଧାନ ପଥେ

ଶମ୍ଭୁନାଥ ମହାନ୍ତି

ମହାପ୍ରଳୟ କଥା ପୁରାଣରୁ ପଢ଼ିଛେ । ମାଳିକାର ବାଣୀ ସୁବର୍ଣ୍ଣ ମୁଖରିତ । ଦୁଇଦୁଇଟି ବିଶ୍ୱଯୁଦ୍ଧ ଥିଲା ବିଂଶ ଶତାବ୍ଦୀର ସବୁଠାରୁ ବଡ଼ ବିଘଟଣ । ଏକବିଂଶ ଶତାବ୍ଦୀ ଧ୍ୱଂସର ଆହୁରି ଦୁର୍ଦ୍ଦିନର ସମୟକୁ ଟାଣି ଆଣିଛି । ଆଫ୍‌ଗାନିସ୍ଥାନ, ଇରାକ, ଲିବିୟା ଯୁଦ୍ଧ, ମିଶର ଏବଂ ଆରବ ଜଗତ, ପାଲେଷ୍ଟାଇନ୍, ଇସ୍ରାଏଲ, ଉତ୍ତର କୋରିଆ ଓ ଦକ୍ଷିଣ କୋରିଆର ପରିସ୍ଥିତି ମଣିଷ ସମାଜ ପାଇଁ ଭୟଙ୍କର ପରିସ୍ଥିତି ସୃଷ୍ଟି କରିଛି ।

ପୃଥିବୀରେ ମହାବିନାଶରେ ପୂର୍ବସୂଚନା ଦେଖା ଦେଇଛି । ସୃଷ୍ଟିର ଶ୍ରେଷ୍ଠତ୍ୱ ଦାବି କରୁଥିବା ମଣିଷ ସମାଜ ତାର ବୁଦ୍ଧି, ବିବେକ ହରାଇଛି । ମାନବିକତାକୁ ଉଲ୍ଲଙ୍ଘନ କରିଚାଲିଛି । ପଶୁବିବେକିତା ଠାରୁ ଆହୁରି ତଳକୁ ଖସିଯାଇଛି । ନିଜର ଅପକର୍ମ ପାଇଁ ନିଜର ଧ୍ୱଂସକୁ ଆହ୍ୱାନ କରିଚାଲିଛି । ପୃଥିବୀର ପ୍ରାଣୀଜଗତ, ଉଦ୍ଭିଦ ଜଗତ ଏବଂ ବସ୍ତୁଜଗତ ମଣିଷକୃତ ଧ୍ୱଂସର କରାଳ ଗ୍ରାସରେ । ମଣିଷ, ପଶୁ-ପକ୍ଷୀ, କୀଟପତଙ୍ଗ ଆଦି ଜୀବଜଗତ ତୃଣରୁ ମହାଦାରୁ ପର୍ଯ୍ୟନ୍ତ ସମଗ୍ର ଉଦ୍ଭିଦ ଜଗତ, ପୃଥିବୀର ଜଳ, ସ୍ଥଳ, ଆକାଶ ଏବଂ ପୃଥିବୀ ଗର୍ଭରେ ଥିବା ତୈଳ, ଗ୍ୟାସ ଏବଂ ସମସ୍ତ ଧାତୁ ଆଦି ବସ୍ତୁଜଗତ ସହ ମହାକାଶକୁ ବିସ୍ତାରିତ ହୋଇଛି । ମଣିଷକୃତ ଧ୍ୱଂସ ଓ ସଂହାରର ଲୀଳା, ଯୁଦ୍ଧ, ଧ୍ୱଂସ, ବିନାଶ ଏବଂ ମହାବିନାଶର ସୃଷ୍ଟିକାରକ ହୋଇଛି ମଣିଷ । ବୌଦ୍ଧିକ ଚେତନାର ବିପରୀତମୁଖୀ ହୋଇଛି । ବୋଧିଦ୍ରୁମ ଅବଲୁଣ୍ଠିତ । ଅବଲୁଣ୍ଠିତ ବିଭ୍ରାନ୍ତ ମଣିଷର ଚିନ୍ତା ଓ ଚେତନା । ପରିଣାମ ମହାବିନାଶ !! ବଣ ସରିଚାଲିଛି । କଳ କାରଖାନା, ଖଣିଖାଦାନ, ଏବଂ ବ୍ୟକ୍ତିର ବିଳାସ ଓ ଉପଭୋଗ ପାଇଁ । ଅମ୍ଳଜାନ କମୁଛି । ଅତ୍ୟନ୍ତ ଭୟାବହ ଯୁଦ୍ଧାସ୍ତ୍ର ପରୀକ୍ଷଣ, ଲଗାତର ଯୁଦ୍ଧ, ବିସ୍ଫୋରଣ, ମହାକାୟ କଳଖାନା, ଗାଡ଼ିମୋଟର ଆଦିରୁ ନିର୍ଗତ ଅଙ୍ଗାରକାମ୍ଳ, ଘଟିଚାଲିଥିବା ପାରମାଣବିକ ବିକିରଣ, ଅହର୍ନିଶ ଖଣିଖନନ ଇତ୍ୟାଦି । ମଣିଷ ସମାଜର ସଭ୍ୟତା, ସମୃଦ୍ଧି ଏବଂ ବିଜ୍ଞାନର ଅଗ୍ରଗତି ନାମରେ ଜୀବନ ବିନାଶୀ ପ୍ରଦୂଷଣ ସୃଷ୍ଟି କରିଚାଲିଛି । ତାର ପରିଣାମ ଅତ୍ୟନ୍ତ ଭୟାବହ । ଏହା ସାଙ୍ଗକୁ

କୃଷିଉତ୍ପାଦନ ବୃଦ୍ଧି ନାମରେ କେମିକାଲ ସାର ଓ ବିଷାକ୍ତ ଔଷଧ ପ୍ରୟୋଗ ଖାଦ୍ୟରେ ବିଭିନ୍ନ କେମିକାଲ ପ୍ରୟୋଗ, ଖାଦ୍ୟ ଅପମିଶ୍ରଣ, ରୁଚିକର ବିଷାକ୍ତ ଖାଦ୍ୟ, ମଦ ଓ ବିଷାକ୍ତ ମଦ, ଗଞ୍ଜା, ଚରସ ପାଇଁ ସମସ୍ତେ ପାଗଳ । ସାମାଜିକ ଚଳଣି, ଧର୍ମ, ଶିକ୍ଷା ସଂସ୍କୃତି, ରାଜନୀତି, ପ୍ରଶାସନ ଓ ସରକାରମାନେ ଏହି ବିଧ୍ୱଂସର ପ୍ରଚଳନ ଏବଂ ସୁରକ୍ଷା ପାଇଁ ନିୟୋଜିତ । କ୍ଷମତା, ସଂପତ୍ତି, ପ୍ରତିପତ୍ତି ଓ ଉପଭୋଗ ପାଇଁ ପ୍ରତିଟି ମଣିଷ ପାଗଳ ହୋଇ ଏ ସମସ୍ତ ବିଲକ୍ଷଣର କାରଣ ସାଜୁଛି । ପୃଥିବୀର ସବୁକ୍ଷେତ୍ର ଭାରସାମ୍ୟ ବିହୀନ ଏବଂ ଅସାମ୍ୟରେ ଭରପୂର ହୋଇଚାଲିଛି । ଏହି ମହାବିନାଶୀ ପରିବେଶ, ପରିସ୍ଥିତି ଓ ପରିଣାମରୁ ସୃଷ୍ଟି ହୋଇଛି ପୃଥିବୀ ପୃଷ୍ଠରେ ଘଟିଚାଲିଥିବା ସମସ୍ତ ପ୍ରାକୃତିକ ଏବଂ ମଣିଷକୃତ ବିପର୍ଯ୍ୟୟ । ବିଘଟଣ, ଦୁର୍ଘଟଣା, ରୋଗ, ମହାମାରୀ, ମଡ଼କ ଏବଂ ଆସନ୍ନ ମହା-ମଡ଼କ ।

ବିଂଶ ଶତାବ୍ଦୀର ଦ୍ୱିତୀୟଭାଗରେ କର୍କଟ ରୋଗ, ଏଡସ୍ ଇତ୍ୟାଦି ନୂଆ ନୂଆ ରୋଗ ସୃଷ୍ଟିର ମୁଖ୍ୟ କାରଣ ଉପଭୋଗବାଦ । ଆହୁରି ବହୁ ନୂଆନୂଆ ଅଚିହ୍ନା ରୋଗ ସବୁ ଦେଖାଦେଉଛି । ବହୁମୂତ୍ର, ରକ୍ତଚାପ, ଅମ୍ଳରୋଗ, (ପିତ୍ତକୋଷ, ଲିଭର, ଅନ୍ତକୋଷ) ବିଭିନ୍ନ ପେଟରୋଗ, ପିତକୋଷ ଓ ଲିଭାରର ରୋଗ, ହାଟ୍‌ରୋଗ, ରକ୍ତ ଓ ସ୍ନାୟୁରୋଗ, ଆଖି, କାନ, ଗଳା ଓ ଦାନ୍ତ ରୋଗ, ହାଡ଼, ମଜ୍ଜା, ରକ୍ତ, ମଳ, ମୂତ୍ର ସଂପର୍କୀୟ ବହୁ ରୋଗ, ନାନା ସଂକ୍ରାମିତ ରୋଗ ଓ ଚର୍ମରୋଗ ତଥା ନୂଆନୂଆ ଜ୍ୱର ଦେଖାଦେଉଛି ।

ମଣିଷ ବହୁସଂଖ୍ୟାରେ ବହୁ ଜଟିଳ ରୋଗରେ ଆକ୍ରାନ୍ତ ହେଉଛି । ଅନେକ ମରୁଛନ୍ତି- ଅଧିକ ଭୋଗୁଛନ୍ତି- କିଛି ଆଂଶିକ ସୁସ୍ଥ ହେଉଛନ୍ତି ଓ ଅତି ଅଳ୍ପ ସଂପୂର୍ଣ୍ଣ ସୁସ୍ଥ ହେଉଛନ୍ତି ।

କ୍ଷମତା, ସଂପତ୍ତି, ପ୍ରଭୁତ୍ୱ ଏବଂ ଉପଭୋଗର ପ୍ରବୃତ୍ତି ବଢ଼ିଚାଲିଛି । ତାର ନିୟନ୍ତ୍ରଣ ନାହିଁ, ଅଛି ପ୍ରୋତ୍ସାହନ । ଯାହା ବଢ଼ିଚାଲିଛି ସବୁସ୍ତରରେ । ସମାଜ ସ୍ୱୀକୃତି ଦେଉଛି- ସମ୍ମାନ କରୁଛି ଓ ତାହା ସଂକ୍ରମିତ ହେବାରେ ଲାଗିଛି । ବୁଦ୍ଧଙ୍କ ଭାଷାରେ ଦୁଃଖର କାରଣ ଥିଲା- କାମନା । ଆଜି ତାହା ବିନାଶର କାରଣ ହେବାରୁ ଅଧିକରୁ ଅଧିକ ଭୟାବହ । ଜୀବନ ବିଧ୍ୱଂସୀ ହୋଇଛି । ବଢ଼ିଚାଲିଥିବା ଭୟାବହ ରୋଗ ସହ ମଣିଷକୃତ ଯୁଦ୍ଧ, ଅସ୍ତ୍ର ପ୍ରତିଯୋଗିତା, ପାରମାଣବିକ ବିସ୍ଫୋରଣ, ଗୋଷ୍ଠୀଯୁଦ୍ଧ, ସନ୍ତ୍ରାସ, ମାଡ଼ଗୋଳ, ରାସ୍ତା ଦୁର୍ଘଟଣା, ଯାନବାହନ ଦୁର୍ଘଟଣା, କଳକାରଖାନା ଓ ଖଣି ଖାଦାନ ଦୁର୍ଘଟଣା,

ଅପମିଶ୍ରିତ ଖାଦ୍ୟ, ପାନୀୟ, ମଦ ଜନିତ ମୃତ୍ୟୁ, ସୁନାମୀ ଇତ୍ୟାଦିରେ ମଣିଷ ଜୀବନ ପାଇଁ ଯେଉଁ ମହାବିପତ୍ତି ଦେଖାଦେଇଛି ତାର ଚିରସ୍ଥାୟୀ ପ୍ରତିକାର ନିକଟ ଭବିଷ୍ୟତରେ ସମ୍ଭବ ନୁହେଁ । ତାହା ନିୟନ୍ତ୍ରଣ ବାହାରେ ଏବଂ କ୍ରମବର୍ଦ୍ଧନମୁଖୀ । ଏହି ମହାବିପତ୍ତିର ଏକମାତ୍ର ରକ୍ଷାକବଚ ହୋଇ ପାରିବ ଆଶୁ ଚିକିତ୍ସା ଓ ଉଚ୍ଚମାନର ଚିକିତ୍ସା ବ୍ୟବସ୍ଥା ।

ମାତ୍ର ଦୁଃଖର କଥା ଆମ ରାଜ୍ୟରେ ସ୍ୱାସ୍ଥ୍ୟସେବାରେ ବିପର୍ଯ୍ୟୟ ବଢ଼ିଚାଲିଛି । ଗାଁ ଗହଳିରେ ବହୁ ଡାକ୍ତରଖାନାରୁ ଡାକ୍ତର ନାହାନ୍ତି । ପ୍ରାୟ ସବୁ ଡାକ୍ତରଖାନାରେ ନିର୍ଦ୍ଧାରିତ ସଂଖ୍ୟକ ଡାକ୍ତର ନାହାନ୍ତି । ଅଧିକାଂଶ ସ୍ଥାନରେ ଅବସରପ୍ରାପ୍ତ ତଥା ଅକ୍ଷମ ଡାକ୍ତରଙ୍କୁ ଆମଜୀବନ ସୁରକ୍ଷାର ଦାୟିତ୍ୱ ଅର୍ପିତ । ତେଣୁ ଅନେକ କ୍ଷେତ୍ରରେ ରୋଗଠାରୁ ନିଦାନ ଓ ଚିକିତ୍ସା ଆହୁରି ବିପଦ ସଂକୁଳ ହୋଇଉଠିଛି । ଏସବୁ ପ୍ରତିକାର ପାଇଁ ସାମାଜିକ ଚିନ୍ତା-ଚେତନା-ଆଲୋଡ଼ନ, ଆନ୍ଦୋଳନ ନାହିଁ । ଏହା ଏକ ଅଶୁଭଙ୍କରୀ ଓ ବେଦନା ଦାୟକ ଘଟଣା । କ'ଣ ହେବ ଆମ ବୁଢ଼ା/ବୁଢ଼ୀ ବାପା, ମା, ଆମ ଜୀବନ ପ୍ରତିମ ପୁଅ / ଝିଅ, ନାତି/ନାତୁଣୀଙ୍କ ଅବସ୍ଥା ? ହଁ, ଆପଣଙ୍କର ବହୁଟଙ୍କା ଅଛି, ପରିଚୟ ଅଛି, ବମ୍ବେ, ଦିଲ୍ଲୀ ନେଇ ଚିକିତ୍ସା କରିବାର ସୁଯୋଗ ଅଛି । କିନ୍ତୁ ହୃଦରୋଗରେ ଆଘାତ କି ଦୁର୍ଘଟଣା ଗ୍ରସ୍ତ ଆପଣଙ୍କ ପୁଅ ନାତିର ଜୀବନ କେତୋଟି ସେକେଣ୍ଡ କି ମିନିଟ୍ କି ଘଣ୍ଟା ଉପରେ ନିର୍ଭରଶୀଳ ଅବସ୍ଥା ଥାଏ । ତେବେ ? ସେଇଥିପାଇଁ ଆମକୁ ନିକଟତମ ଉତ୍ତମ ସ୍ୱାସ୍ଥ୍ୟସେବାକୁ ସୁନିଶ୍ଚିତ କରିବା ଅପରିହାର୍ଯ୍ୟ ନୁହେଁ କି ?

ଏହା ଦିନେ କି ବର୍ଷକରେ ସମ୍ଭବ ହେବନି । ଅଧିକରୁ ଅଧିକ ଡାକ୍ତର ସୃଷ୍ଟି କରିବାକୁ ହେଲେ ବହୁସଂଖ୍ୟକ ଡାକ୍ତରୀ ମହାବିଦ୍ୟାଳୟ (ମେଡ଼ିକାଲ କଲେଜ), ବିଜ୍ଞାନାଗାର, ଗବେଷଣା ସଂସ୍ଥା ପ୍ରତିଷ୍ଠା କରିବା । ଅତ୍ୟାଧୁନିକ ଯନ୍ତ୍ରପାତି, ଏବଂ ଚିକିତ୍ସା ବିଶାରଦ, ଅଧ୍ୟାପକ, ବୈଜ୍ଞାନିକ, ଟେକ୍ନୋଲୋଜିଷ୍ଟମାନଙ୍କୁ ସ୍ଥାନିତ କରିବାକୁ ହେବ । ଏହି ମହାବିଦ୍ୟାଳୟରୁ ଡାକ୍ତରମାନେ ବାହାରିଲେ ଆମର ଅଭାବ ପୂର୍ଣ୍ଣ ଓ ଆମର ଜୀବନ ବିପତ୍ତି ଲାଘବ ହେବ । ଏଥିପାଇଁ ଆମକୁ ଭାଗ୍ୟ, ଭଗବାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବନି । ଔଷଧ ଖାଇଲେ ଓ ଚିକିତ୍ସିତ ହେଲେ ରୋଗ ଉପଶମ ହେଲା ଭଳି ଆମକୁ ନିଦାନ ଦେବାପାଇଁ ଡାକ୍ତର ସୃଷ୍ଟିକାରୀ ସଂସ୍ଥା ସୃଷ୍ଟି ପାଇଁ ସଂଗଠିତ ହେବାକୁ ହେବ-ଗଣତାନ୍ତ୍ରିକ ପଦ୍ଧତିରେ ଆନ୍ଦୋଳନ ଓ ଦାବି ଉପସ୍ଥାପନ କଲେ ଆମେ ସୁଫଳ ପାଇ ପାରିବା ।

ଆଜି ଆମେ ଉତ୍ତର ଓଡ଼ିଶାର ପ୍ରାୟ ଏକକୋଟି ମଣିଷ ସ୍ୱାସ୍ଥ୍ୟ କ୍ଷେତ୍ରରେ ଘୋର ଅବହେଳିତ । ଏ ଅଞ୍ଚଳରୁ ପ୍ରତିଦିନ କଟକ ଅଭିମୁଖୀ ଏକାଧିକ ରୋଗୀ ଯିବା ବେଳେ ରାସ୍ତାରେ ମରୁଛନ୍ତି । କଟକସ୍ଥିତ ବଡ଼ମେଡ଼ିକାଲରେ ବେଡ୍ ଓ ସ୍ଥାନ ଅଭାବରୁ ପିଣ୍ଡାରେ ରୋଗୀ ପଡୁଛନ୍ତି । ଏ ଅଞ୍ଚଳର ଅଧିକାଂଶ ରୋଗୀ ତଳେ ଓ ପିଣ୍ଡାରେ ପଡ଼ି ଉଚିତ ଚିକିତ୍ସା ପାଇ ପାରୁନାହାନ୍ତି । ଅଧିକାଂଶ ମରୁଛନ୍ତି । ଘରୋଇ ଡାକ୍ତରଖାନାରେ ଲକ୍ଷଲକ୍ଷଟଙ୍କା ଖର୍ଚ୍ଚ କରିବାର ସମ୍ବଳ ବା କେତେ ଜଣଙ୍କର ? ଏ ଦୁର୍ଭାଗ୍ୟ ଓ ଦୁର୍ଦ୍ଦିନକୁ କେତେଦିନ ସହିବା ? ଆଞ୍ଚଳିକତା ଭୁଲି ଜିଦ୍‌ଖୋର ମନୋବୃତ୍ତି ଛାଡ଼ି ଉତ୍ତର ଓଡ଼ିଶାର କେନ୍ଦ୍ରସ୍ଥଳରେ, ଯେଉଁଠି ସବୁସ୍ତରର ଅଧିକ ସୁବିଧା ହେବ ସେଇଭଳି ସ୍ଥାନରେ ପ୍ରଥମେ ଗୋଟିଏ ମେଡ଼ିକାଲି କଲେଜ କରାଯାଉ । ଢୋକେ ପିଇ ଦଣ୍ଡେ ଜିଇବା ପରେ ଆମର ଦାବି ବଢ଼ାଇବା । ସାରା ଓଡ଼ିଶାରେ ଆଗେ ଗୋଟିଏ, ପୁଣି ପରେ ଗୋଟିଏ ତାହା ବଢ଼ିବଢ଼ି ଛ'ସାତୋଟି ହୋଇଛି । ପ୍ରତି ଜିଲ୍ଲାରେ ମେଡ଼ିକାଲ କଲେଜ ସ୍ଥାପନ ପାଇଁ ତାମିଲନାଡୁ ସରକାର ସ୍ଥିର କଲାଣି । ଓଡ଼ିଶାରେ ତାହା କାହିଁକି ନହେବ ?



# ଜୀବନ ସଂପର୍କରେ...

**ହରିଶଙ୍କର ବଡ଼ପଣ୍ଡା**

ଜୀବନ ସଂପର୍କରେ ଅନେକ ପ୍ରଶ୍ନ ଏବେବି ମୋ ପାଇଁ ଅସମାହିତ । ବିଶ୍ୱଜୀବନଙ୍କ ଅପାର କରୁଣାରୁ ରକ୍ତ, ମାଂସର ଶରୀରଟିଏ ଜୀବନ ଧରି ବଞ୍ଚିଛି, ତା' ସହିତ ପଞ୍ଚଭୂତର ଆତ୍ମା ମୋର ସଦୈବ ତାଙ୍କ କରୁଣାର କୈବଲ୍ୟରେ କାକୁସ୍ଥ !! ମୋତେ ଯଦି କିଏ ଜୀବନ ସଂପର୍କରେ କିଛି ପଚାରେ ତା'କୁ ମୁଁ ଅତି ଆଦରର ସହିତ ଉତ୍ତରିବି । କିଛି ଉତ୍ତର ଦେବା ପୂର୍ବରୁ ମନେ ପଡ଼ିଯାଏ ସେଇ ବୈଦିକ ଉଚ୍ଚାରଣ 'ଜାତସ୍ୟ ହି ଧ୍ରୁବଂ ମୃତ୍ୟୁ' । ଜନ୍ମ ସତ ଏବଂ ଜନ୍ମ ହେଲେ ମୃତ୍ୟୁ ବି ସତ ତଥାପି ଜନ୍ମରୁ ମୃତ୍ୟୁ ମଧ୍ୟରେ ମୁଁ ଯେଉଁ ଜୀବନଟିଏ ନେଇ ବଞ୍ଚିଛି ତାର ରଂଗରାଗ, ଚଢ଼ାଉତରା, ଆଲୁଅ ଅନ୍ଧାର ଭିତରେ ଧାଇଁ ଧାଇଁ ଏବେ ଉତ୍ତରାୟଣରେ ପହଞ୍ଚି ଯାଇଛି । ଜନ୍ମକୁ ନେଇ ପାଗଳ ପରି ନାଚିଛି ତ ମୃତ୍ୟୁକୁ ସ୍ୱପ୍ନରେ ବି ଦେଖିନି ! ଅତଃ ଜୀବନ ସଂପର୍କରେ କିଛି ଲେଖିବା ପୂର୍ବରୁ ସେଇ ଗୀତଟି ମନେପଡ଼େ 'ଜୀବନ ଯମୁନାରେ ଜୁଆର ଉଠେରେ...' ସତରେ ଜୀବନଟା ଯମୁନା ପରି ଏକ ନଈ ନୁହେଁ ତ ଆଉ କ'ଣ ? ତାରି ତରଙ୍ଗରେ ତଲ୍ଲୀନ ହେଲେ ଅସୁମାର ଆବେଗକୁ ଧରି ହୁଏ; ତାରି କାଚକେନ୍ଦୁ ଜଳସ୍ପର୍ଶରେ ଅନନ୍ୟ ପ୍ରେମର ପ୍ରାଣ ସଞ୍ଚରି ଉଠେ !!

ମୁଁ ମୂଳରୁ କହିରଖେ ଯେ ମୁଁ ଜନ୍ମରୁ ମାଟିମନସ୍କ । ମୋର ଜନ୍ମ ଗୋଟିଏ ଅଜଣା ଅଶୁଣା ନିପଟ ଗାଉଁଲି ଗାଁରେ । ସେ ଜନ୍ମମାଟିର ଆକର୍ଷଣ; ଏବେବି ସତୁରିପର ବୟସରେ ମୋର ମନ, ମୁନ ଚଇତନକୁ ଆକର୍ଷଣ କରେ । ସବୁ ସକାଳରେ ସୂର୍ଯ୍ୟଟିଏ ଉଇଁ ଆସିବ ବୋଲି ଅପେକ୍ଷା କରେ; କଅଁଳ ପତ୍ରଗହଳରେ କୋଇଲି ଗାଇବ ବୋଲି କାନ ଡେରିଥାଏ; ମହୁମାଛି ଆସିବ ବୋଲି ପାଖୁଡ଼ା ମେଲୁଥିବା ଗୋଲାପଫୁଲ, ମନ୍ଦାର ଫୁଲ, ବନଫୁଲକୁ କୁହେ ଯେ, ମହୁମାଛି ଆସିଲାଣି ଏବେ ପାଖୁଡ଼ା ଖୋଲ । କଜଳପାତି, କୁମ୍ଭାଟୁଆର ଗୀତ ଶୁଣିବି ବୋଲି ଘରର ବନ୍ଦ ଝରକା ଖୋଲିଦିଏ । ସୂର୍ଯ୍ୟ ସକାଳର ପ୍ରଥମ ଆଲୋକ ଗତ ମୋର ମନପ୍ରାଣରେ ଯେପରି ଆଣେ ଏକ ଅନନ୍ତ ଶିହରଣ, ଯାହାକୁ ଆଡ଼େଇ ଦେବାର ଶକ୍ତି ହିଁ ମୋର ନାହିଁ । ସଂଧ୍ୟା ଆରତିବେଳରେ ଶ୍ରୀମନ୍ଦିର

ତୋରଣ ଖୋଲିଲେ ସେତେବେଳେ ଘଣ୍ଟାସ୍ୱନରେ ମୋର ମନ ତଲ୍ଲୀନ ହୋଇଯାଉଛି ବୋଲି ଅନୁଭୂତ ହୁଏ । ଆକାଶକୁ ରାତ୍ରିବେଳେ ଅନାଇଲେ ଲାଗେ ଅସଂଖ୍ୟ ଧ୍ରୁବତାରା ଆହ୍ୱାନରେ ମୋର ସ୍ୱପ୍ନସବୁ ଜାଗରିତ ହୋଇ ଉଠୁଛି !!

ଉପରୋକ୍ତ ଭାବାବେଶରୁ ଏତିକି ବୁଝିହେବ ଯେ ମୁଁ ମୋର ଜ୍ଞାନ ପାଇବା ବେଳରୁ ହିଁ ଜଣେ କବିର ଜୀବନ ନେଇ ଜିଇଁଛି । ସିଏ ଲୋଡ଼ା ହେଉ କି ଅଲୋଡ଼ା, ସେଇ ଜୀବନକୁ ନେଇ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଏମିତି ବଞ୍ଚିବି । ମୁଁ ଜାଣେ ଯେ କବିର ଜୀବନ ନେଇ ବଞ୍ଚିବା ଏତେ ସହଜ ନୁହେଁ, କିନ୍ତୁ ଏହାଛଡ଼ା ମୋର ଗତ୍ୟନ୍ତର ବା କାହିଁ ? କବିଟିଏ ହୋଇ, ମୁଁ ଜାଣିଛି ଯେ ସମାଜ, ମଣିଷ ଓ ଜୀବନର ଅନ୍ତସଂପର୍କ କଣ । ଏପରି ଜିଇଁବାରେ କ'ଣ ମିଳେ । ଏହାର ଅଛି ଏକଇ ଉତ୍ତର । ତାହା ପରମାନନ୍ଦ । ଏଥିପାଇଁ ରୋମାଞ୍ଚିତ ହୋଇଛି, ସମାଜର ସଂସ୍କାର ପାଇଁ ଆଜୀବନ ସତ୍‌ବିଚାର, ସତ୍‌ଆଚାରର ଉଚ୍ଚାରଣ କରିଛି । ଜୀବନକୁ ସତ୍ୟପଥରେ ଆଗେଇନେବାକୁ ଚେଷ୍ଟା କରିଛି । କେବଳ ସେତିକି ନୁହଁ ଏଇ ଆଗେଇବାବେଳେ ଯାହାବି ଅନ୍ୟପାଇଁ ଉଚ୍ଚାରଣ କରିଛି ସେସବୁକୁ ନିଜସ୍ୱ ଆଚରଣରେ ସ୍ୱୟଂସିଦ୍ଧ କରିଛି । ଏହାହିଁ ମୋତେ ପରମାନନ୍ଦ ଦେଇଛି ।

ମୁଁ ସତ୍ୟପଥରେ ଚାଲିବାକୁ ନିରନ୍ତର ଚେଷ୍ଟାକରି ବଞ୍ଚିଛି । କେବେ ଖାଲଖମାରେ ପାଦ ଖସାଇଛି ତ କେବେ ଅନ୍ଧକାରର ବ୍ୟୂହରେ ପଥଭ୍ରଷ୍ଟ ହୋଇଛି । ଏପରି ଦ୍ୱନ୍ଦ୍ୱର ମୁହୂର୍ତ୍ତରେ ସତ୍ୟାଶ୍ରିତ ହେବାରୁ ମୋର ଚଲାପଥ ପୁନଶ୍ଚ ଆଲୋକିତ ହୋଇ ଉଠିଛି । ମୋତେ ଚାଲିବାକୁ ଶକ୍ତି ସଂଯୋଜିତ କରିଛି । ମୋର ସାହିତ୍ୟ, ସଂସ୍କୃତି ଓ ସଂସ୍କାରର ଅନୁସନ୍ଧାନ କରୁକରୁ ମୋତେ ଏତିକି ପ୍ରତୀୟମାନ ହୋଇଛି ଯେ', ଏ ସତ୍ୟପଥର ସଂଜ୍ଞା କଣ ? ତାକୁ ନେଇ ବଞ୍ଚିହୁଏ କିପରି ?? ଏହାର ଉତ୍ତରରେ ମୁଁ ଏତିକି କହିବି ଯେ' ସତ୍ୟକୁ ଆପଣାଅ, ସତ୍ୟାଶ୍ରିତ ହୁଅ, ଚଲାପଥ ସୁଗମ ହେଉ, ସାହିତ୍ୟ, ସଂସ୍କୃତି ଓ ସଂସ୍କାରକୁ ଆପଣେଇବାରେ ଜୀବନ ଆଲୋକିତ ହେବ ।

ମୁଁ କେବେବି ଜୀବନର ଅର୍ଥକୁ ଖୋଜିବାକୁ ଚେଷ୍ଟା କରିନି । ଏହା ଏପରି ଏକ ଛାୟାପଥ, ଯେଉଁଠି ପ୍ରଶ୍ନସବୁ ତାରକା ରାଜ୍ୟରେ ନିଜେନିଜେ ନିଶ୍ଚିହ୍ନ ହୋଇଯାଆନ୍ତି । ତେଣୁ ଅର୍ଥ ଖୋଜିଲେ ମନସ୍ତାପ ଛଡ଼ା କିଛି ମିଳେନି । ଅନ୍ୟପକ୍ଷରେ ଜୀବନକୁ ନେଇ ଜିଇଁଲେ ଶାନ୍ତି, ସତ୍ୟ, ସଂପର୍କ ବଢ଼େ । ମୁଁ ଅନେକ ହଜିଯାଉଥିବା ଲୋକଙ୍କୁ ଦେଖିଛି ଯେଉଁମାନେ ମାଟିରେ ଜନ୍ମଲାଭ କରି, ମାଟିରେ ବଢ଼ି, ମାଟିରେ ମିଶି ଯାଇଥାନ୍ତି । ସମାଜର ସେବାରେ ସେମାନେ ଦିନରାତି ଶସ୍ୟ ଉପୁଜାନ୍ତି, ଅନ୍ନସଂସ୍ଥାନ କରନ୍ତି ଏବଂ

ଅନନ୍ୟ ଆବେଗରେ ସମସ୍ତଙ୍କୁ କୋଳାଇ ନିଅନ୍ତି । ସେମାନଙ୍କୁ ନା ଆଜିର ସମାଜ ପଚାରେ ନା' ତାଙ୍କୁ ଏ ସମାଜ କିଛି ନିଃସ୍ୱାର୍ଥ ସହଯୋଗ କରିବାକୁ ହାତ ପ୍ରସାରେ । ସେମାନେ ହିଁ ସମାଜର ଦୃଶ୍ୟପଟ୍ଟରୁ ହଜିଯାଉଥିବା ଲୋକ । କବି ଓ କଥାକାର ହୋଇ ମୁଁ ସେମାନଙ୍କୁ ସଂଖୋଳିବାକୁ ଜୀବନରେ ଚେଷ୍ଟା କରିଛି । ସେମାନଙ୍କୁ ସ୍ନେହଶ୍ରଦ୍ଧାରେ ଆଦରି ମୋର ସୃଜନଶୀଳ ସାଧନାକୁ ପରିପୁଷ୍ଟ କରିଛି ।

ଜୀବନ ଓ ମୃତ୍ୟୁର ପ୍ରଶ୍ନ ଭିତରେ ମୋର ସ୍ପଷ୍ଟୀକରଣ ଦେବାର ଆବଶ୍ୟକତା ନାହିଁ ବୋଲି ମୁଁ ସଦୈବ ଭାବମୟ ! ମୁଁ ସତ୍ୟପଥରେ ପଥିକ ହେଲେ ବି ଦେବାକୁ ମୋର କିଛି ବି ନାହିଁ । ମୁଁ ଧନ/ମାନରେ ନିଃସ୍ୱ, ଗୁଣଗ୍ରାମରେ ଦରିଦ୍ର ଅଥଚ ସ୍ୱାଭିମାନ / ଦେଶପ୍ରେମରେ ଆତ୍ମବିଭୋର । ମୋଠାରୁ ଦାନ ଭିକ୍ଷା କଲେ ମିଳିବ କେବଳ ଶବ୍ଦବ୍ରହ୍ମଙ୍କ ସାହଚର୍ଯ୍ୟ, କାବ୍ୟନିଧିଂକ ପ୍ରାକୃତ !! ଅତଃ ଦେବାକୁ ମୋର କିଛି ନଥିଲେ ବି ମୁଁ ଅକୁଣ୍ଠରେ ଶବ୍ଦ / ଶବ୍ଦ କାବ୍ୟକୁ ଅକାତରେ ଦାନ କରିପାରିବି । ଏବେ ଯିବାବେଳ ପାଖେଇ ଆସୁଛି । ଏଥର ପରୀକ୍ଷାର ବେଳ ଉପଗତ ଯେ ମୋର ପ୍ରତିଶ୍ରୁତି, ଉଚ୍ଚାରଣ, ଶପଥକୁ ସାକାର କରିପାରିଛି ନା ନାହିଁ । ଯେତେ ବାଧାବିଘ୍ନ ଆସିଲେ ବି ଏ ଯାତ୍ରା ମୋର ଜାରି ରହିବ । ଜୀବନ ଯେଉଁ ରୂପରେ ଆସିଲେ ବି ମୁଁ ସ୍ୱୟଂ ଶପଥ ନେଇ ଏପରି ଆଗକୁ ପାଦ ବଢ଼ାଇବି ।

କବିର ଜୀବନଯଜ୍ଞରେ ସତ୍ୟର ଆହୁତି ଦେବା ଆବଶ୍ୟକ । ସମାଜକୁ ଜୀବନମୁଖୀ କରିବାକୁ, ବ୍ୟକ୍ତି ହିସାବରେ ନିଜର ଭୂମିକା ନିର୍ବାହ କରିବାକୁ, ବୁଭୁକ୍ଷୁର ଭିକ୍ଷାଥାଳରେ ମୁଠାଏ ଅନ୍ନଦେବାକୁ, ଲଙ୍ଗଳା ଶରୀରରେ କନା ଖଣ୍ଡିଏ ଗୁଡ଼ାଇ ଦେବାକୁ, ଅସତ୍‌ଗାମୀ ମଣିଷକୁ ସତ୍‌ପଥର ଚଲାପଥଟିଏ ଦେଖାଇ ଦେବାକୁ ମୋର ସତ୍ୟାଶ୍ରିତ ଏ ସଂଗ୍ରାମ ଜୀବନସାରା ଜାରି ରହିବ । ଏହି ଲକ୍ଷ୍ୟ ନେଇ ମୁଁ ଏତେବେଳ ପର୍ଯ୍ୟନ୍ତ ବଞ୍ଚିଛି । ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ବଞ୍ଚିବି । ମୋର ଜୀବନ ସର୍ବସ୍ୱ ସଂଗୀତର ଇମନ୍ କଲ୍ୟାଣ ଏମିତି ଏସ୍‌ରାଜରେ ନିନାଦିତ ହୋଇ ଚାଲିବ । ଏ ଲକ୍ଷ୍ୟକୁ ପାଇବାକୁ ମୁଁ ସଦୈବ ଜୀବନଟିଏ ଧରିବି !! କବିର ଭାବନା ଏପରି କି ବିଶ୍ୱଜୀବନଙ୍କ ଯଦି କରୁଣା ମିଳେ ତାଙ୍କୁ ଏତକ ଶେଷ ପ୍ରାର୍ଥନା କରିବି ଯେ, ଯଦି କବି ହିସାବରେ ମୋତେ ଜନ୍ମଟିଏ ଦେଲେ ତେବେ ଆସନ୍ତା ଜନ୍ମରେ ପୁଣି କବିଟିଏ କରି ଜନ୍ମ ଦିଅନ୍ତୁ । ତାଙ୍କଠାରେ ମୋର ଏତିକି ମାଗୁଣି, ଏତିକି ପ୍ରାର୍ଥନା । ଏତକ ପାଇଲେ ଏ ଜୀବନ ଜିଇଁବାର ଲକ୍ଷ୍ୟ, ପଥ, ପାର୍ବଣ, ମୁକ୍ତି ସବୁ ମୋତେ ମିଳିଯାଇଛି ବୋଲି ତାଙ୍କଠାରେ କୃତଜ୍ଞ ରହିବି ।



# ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିଭଂଗୀ

ଭଗବାନ ପଟେଲ

ପୁରାଣରେ ବର୍ଣ୍ଣିତ ଅଛି ଯେ, ୮୪ଲକ୍ଷ ଯୋନି ଅତିକ୍ରମ କଲାପରେ ଜୀବ ମନୁଷ୍ୟ ଜନ୍ମଲାଭ କରିଥାଏ । ଏଣୁ ସମଗ୍ର ସୃଷ୍ଟି ମଧ୍ୟରେ ମନୁଷ୍ୟ ଶ୍ରେଷ୍ଠ ତଥା ପ୍ରଥମ ଶ୍ରେଣୀର ଜୀବଭାବରେ ସ୍ୱୀକୃତ ତଥା ଗୃହୀତ ହୋଇଅଛି । ଯେଉଁମାନଙ୍କର ଜୀବନ ଅଛି ସେମାନଙ୍କୁ ଆମେ ସଜୀବ ନାମରେ ନାମିତ କରିଥାଉ ଏବଂ ଯେଉଁମାନେ ଜୀବନହୀନ ସେମାନେ ନିର୍ଜୀବ ଭାବରେ ଚିହ୍ନିତ ହୋଇଥାନ୍ତି । ଏପରି ସ୍ଥଳେ ମନୁଷ୍ୟ ଜୀବନଲାଭ କରିବା ହେଉଛି କୋଟିଜନ୍ମର ତପସ୍ୟା ତଥା ସାଧନାର ଫଳ ସଦୃଶ । ଜୀବନ ଏବଂ ଜଗତପ୍ରତି ସକାରାତ୍ମକ ମନୋଭାବ ପୋଷଣ କରାଯିବା ଏକାନ୍ତ ବିଧେୟ ବୋଲି ସର୍ବଜନ ସ୍ୱୀକୃତ ହୋଇଅଛି । ଜୀବନରେ ଯନ୍ତ୍ରଣା ଥାଇପାରେ, କିନ୍ତୁ ସେଥିରେ ଯେ ଆନନ୍ଦ ରହିଛି, ଏକଥା ନିଶ୍ଚୟ ସ୍ୱୀକାର କରିବାକୁ ପଡ଼ିବ । ଅନ୍ଧାର ଥିବାରୁ ଆଲୋକର, ଅସତ୍ୟ ଥିବାରୁ ସତ୍ୟର, ପାପ ଥିବାରୁ ପୁଣ୍ୟର, ଅଧର୍ମ ଥିବାରୁ ଧର୍ମର, ଘୃଣାଥିବାରୁ ସ୍ନେହର, ଅପ୍ରେମ ଥିବାରୁ ପ୍ରେମର, କଦାକାର ଥିବାରୁ ସୌନ୍ଦର୍ଯ୍ୟର, ମୃତ୍ୟୁ ଥିବାରୁ ଜୀବନର ମହତ୍ତ୍ୱ ତଥା ଗୁରୁତ୍ୱକୁ ମର୍ମେମର୍ମେ ଅନୁଭବ କରାଯାଇଥାଏ । ସାଧାରଣ ଭାବରେ ଜୀବନ କହିଲେ ହୁଏତ ଆମେ ଏକ ସଜୀବ ପ୍ରାଣୀର କଥା କହିଥାଉଁ । ଅର୍ଥାତ୍ ଯାହାର କିଛି ଅନୁଭବ କରିବାର ଶକ୍ତି ବା ସାମର୍ଥ୍ୟ ରହିଛି । କିନ୍ତୁ ସୂକ୍ଷ୍ମାତିସୂକ୍ଷ୍ମ ଭାବରେ ଅନୁଧ୍ୟାନ ତଥା ଅଧ୍ୟୟନ କଲେ ଜଣାଯାଏ ଯେ, ଜୀବ ସହିତ ପରମର ସଂପର୍କ ହେଉଛି ନିତ୍ୟ ନୂତନ ପୁଣି ଚିର ପୁରାତନ । ଜୀବାତ୍ମା ସହିତ ପରମାତ୍ମାର ସଂପର୍କ ଭିତରେ ଏକ ଗୁଢ଼ତତ୍ତ୍ୱ ନିହିତ ଥିବାର ଜଣାଯାଏ । ଗଭୀର ପ୍ରେମାନୁଭବ ଦ୍ୱାରା ହିଁ ମାନବୀୟ ଭାବାବେଗକୁ ହୃଦୟଙ୍ଗମ କରାଯାଇପାରେ ସୁନ୍ଦର ରୂପରେ । ଭାରତୀୟ ସଂସ୍କୃତି ଭିତରେ ମାନବ ଜୀବନର ମହତ୍ତ୍ୱ ତଥା ଗୁରୁତ୍ୱ ବହୁ ପରିମାଣରେ ସ୍ୱୀକାର କରାଯାଇଛି । ମନୁଷ୍ୟର ଶରୀର ହେଉଛି ମୂଲ୍ୟବାନ । ଭାରତୀୟ ଜୀବନଧାରା ଭିତରେ କର୍ମକୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରାଯାଇଛି । ବିବେକାନୁମୋଦିତ ଭାବରେ କାର୍ଯ୍ୟ କରିବାର ଧରା ଓ ଧାରାକୁ ଭାରତୀୟ ମୁନିଋଷିମାନେ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରାଇ ପାରିଛନ୍ତି । 'ଧାରୟତି ଇତି

ଧର୍ମଃ' ଅର୍ଥାତ୍ ଯାହା ଧାରଣ କରେ ତାହା ଧର୍ମ । ଅର୍ଥାତ୍ ଯାହାର ଧର୍ମ ଯାହା, ତାହାକୁ ସଠିକ୍ ତଥା ନିର୍ଭୁଲ ଭାବରେ ପାଳନ କରିବା ହେଉଛି ମାନବ ଧର୍ମ । ସୁତରାଂ, ସବୁ ଧର୍ମ ଭିତରେ ମାନବଧର୍ମକୁ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଅଛି, କେଉଁ ଏକ ଆବହମାନ କାଳରୁ । ମଣିଷ ମାତ୍ରକେ କାଳ ଓ କଲା ସଚେତନ ହୋଇ ଜୀବନର ମୁଖ୍ୟ ଲକ୍ଷ୍ୟକୁ ସାଧନ କରିବା ହେଉଛି ତାର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ । ଏଣୁ ଯେ କେହି ମଧ୍ୟ ନିଜର ତନୁମନକୁ ଏକାଗ୍ରତ କରି ମୋକ୍ଷ ପ୍ରାପ୍ତି ନିମନ୍ତେ ସର୍ବଦା କାର୍ଯ୍ୟରତ ହେବା ବିଧେୟ । ନିଜର ଜୀବନକାଳ ମଧ୍ୟରେ ପ୍ରତ୍ୟେକ ବିଚାରଶୀଳ ମଣିଷ ନିଶ୍ଚୟ ପରୋପକାରରେ ସମୟର ସୁବିନିଯୋଗ କରି ନିଜର ବିଜ୍ଞତାର ପରିଚୟ ଅଭ୍ରାନ୍ତ ଭାବରେ ପ୍ରଦାନ କରିଥାଏ ।

ଦିବ୍ୟଜ୍ଞାନର ଅଧିକାରୀ ହେଉଛି ମଣିଷ । ଭାରତୀୟ ଭକ୍ତିକାବ୍ୟ ପରମ୍ପରାରେ କବିମାନେ ମଣିଷର ସୁଗୁଣାବଳୀକୁ ପ୍ରାଧାନ୍ୟ ପ୍ରଦାନ କରିଯାଇଛନ୍ତି । ଏପରିକି ଯେଉଁ ମଣିଷ ଭକ୍ତିରସାଶ୍ରିତ ନୁହେଁ, ତାକୁ ପଶୁତୁଲ୍ୟ ହେୟଜ୍ଞାନ କରାଯାଇଛି । ସୁତରାଂ, ଭାରତୀୟ ଦୃଷ୍ଟି ଓ ଦର୍ଶନରେ ମାନବୀୟ ବିଚାରଧାରା ଉନ୍ନତ, ମାର୍ଜିତ ତଥା ସୁସଂଗଠିତ ହେବା ଉଚିତ୍ ବୋଲି ମାର୍ଗପ୍ରଦର୍ଶନ କରାଯାଇଛି । ବେଦ, ଉପନିଷଦ ତଥା ପୁରାଣ ଗ୍ରନ୍ଥମାନ ଅଧ୍ୟୟନ କଲେ ଜଣାଯାଏ ଯେ, ପ୍ରତ୍ୟେକ ମଣିଷ ତାର ଧର୍ମକୁ ସୁଚାରୁ ତଥା ଉତ୍ତମ ରୂପେ ନିର୍ବାହ କରିବା ଉଚିତ ବୋଲି ଦୃଢ଼ ମତବ୍ୟକ୍ତ କରାଯାଇଅଛି । ଆମର ଚିର ପରିଚିତ 'ମହାଭାରତ' ଓ 'ରାମାୟଣ' ଗ୍ରନ୍ଥରେ ସର୍ବଦା ଧର୍ମର ରକ୍ଷାପାଇଁ ପ୍ରାଣପାତ ମଧ୍ୟ କରାଯାଇଛି । 'ଗୀତା' ହେଉଛି ଏକ ଆଧ୍ୟତ୍ମିକ ଚେତନା ସମ୍ବଳିତ ଏକ ଗ୍ରନ୍ଥ । ଏଥିରେ ଭଗବାନ ଶ୍ରୀକୃଷ୍ଣ ତାଙ୍କର ପ୍ରିୟ ସଖା ଅର୍ଜୁନଙ୍କୁ ହିତ ଉପଦେଶମାନ ପ୍ରଦାନ କରିଛନ୍ତି । ଯେତେବେଳେ ଧରାଧାମରେ ଧର୍ମର କ୍ଷୟ ହୁଏ ଏବଂ ପାପର ଭାର ବୃଦ୍ଧିପ୍ରାପ୍ତ ହୁଏ, ସେତେବେଳେ ଧର୍ମରକ୍ଷା ନିମନ୍ତେ ସ୍ୱୟଂ ଆବିର୍ଭାବ ହୋଇଥାନ୍ତି । ଶ୍ରୀକୃଷ୍ଣଙ୍କ ଭାଷାରେ,

'ଯଦା ଯଦା ହି ଧର୍ମସ୍ୟ ଗ୍ଲାନି ର୍ଭବତି ଭାରତ,
ଅଭ୍ୟୁତ୍‌ଥାନ ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍,
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍,
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେଯୁଗେ ।'

ଯେଉଁ ସମୟରେ ଅତ୍ୟାବଶ୍ୟକ ହୋଇଉଠେ, ଧର୍ମରକ୍ଷା ନିମିତ୍ତ ସେହି ସମୟରେ ସ୍ୱୟଂ ଭଗବାନ ଆବିର୍ଭାବ ହୋଇଥାନ୍ତି । ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ର ନିଜର ଧର୍ମ ପାଳନରେ

ଆଜୀବନ ତତ୍ପର ହୋଇଉଠିଛନ୍ତି । ତେଣୁ ଏହି ବିଚାରବନ୍ତ ପୁରୁଷଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯାଇ ଗଂଗାଧର ମେହେର ତାଙ୍କର 'ତପସ୍ୱିନୀ' କାବ୍ୟରେ ଲେଖିଛନ୍ତି,

'ମିଥ୍ୟା କଥା ଯେବେ ପ୍ରଜାଏ କହିବେ
ମେଳ ହୋଇ ଶତଶତ,
ତାକୁ ମାନିମାନି ତାକୁ ଜାଣିଜାଣି
ବୋଲାଯାଏ ସତ ସତ ।' (ତପସ୍ୱିନୀ)

ରାମଚନ୍ଦ୍ର ଏକାଧାରରେ ଆଦର୍ଶ ନରପତି, ଆଦର୍ଶ ପୁତ୍ର ତଥା ଆଦର୍ଶ ସ୍ୱାମୀ ଭାବରେ କାର୍ଯ୍ୟନିର୍ବାହ କରିପାରିଛନ୍ତି ସୁଚାରୁ ରୂପରେ । ଜୀବନର ସମସ୍ତ ଘାତ-ପ୍ରତିଘାତ, ଅଭାବ-ଅସୁବିଧା, ସଂଘର୍ଷ-ସଂଘାତ, ଆନନ୍ଦ-ବିଷାଦ, ସୁଖ-ଦୁଃଖ, ହାନି-ଲାଭ, କ୍ଷତ-କ୍ଷତି ମଧ୍ୟରେ ଗତିକରି ମାନବଧର୍ମର ରକ୍ଷାକରି ପାରିଛନ୍ତି ଆଜୀବନ । ମନୁଷ୍ୟ ପାଶରେ ଦିବ୍ୟଜ୍ଞାନକୁ ଅନ୍ୱେଷଣ କରି ଭଗବାନ ମଧ୍ୟ ସନ୍ତୁଷ୍ଟ ହୋଇ ପାରିଛନ୍ତି । ପୃଥିବୀର ଶ୍ରେଷ୍ଠ ଜୀବ ଭାବରେ ମନୁଷ୍ୟ ଦୟା, କ୍ଷମା, ଶାନ୍ତି, ମୈତ୍ରୀ, ପ୍ରୀତି, ପ୍ରେମ, ସ୍ନେହ ଆଦିର ସୁଗୁଣାବଳୀ ଦ୍ୱାରା ଭୂଷିତ ହୋଇପାରିଛି । ସୁତରାଂ, କବିମାନେ ଦରଦୀ, ଉଦାର ତଥା ମାନବବାଦୀ ହୋଇ ମଣିଷର ସୁଖ ଦୁଃଖରେ ସମ୍ବେଦନଶୀଳ ତଥା ସହାନୁଭୂତି ପରିପୂର୍ଣ୍ଣ ହୋଇଉଠିଛନ୍ତି । ଓଡ଼ିଶାର ଜଣେ ବିଶିଷ୍ଟ ମାନବବାଦୀ କବିଭାବରେ ସ୍ୱୀକୃତ ଭୀମଭୋଇ ହେଉଛନ୍ତି ଜଣେ ସାଧୁ ପୁରୁଷ । ସେ ଆଜୀବନ ମାନବ ସେବାରେ ନିଜକୁ ଉତ୍ସର୍ଗ କରିଯାଇଛନ୍ତି । ତେଣୁ ସେ ମାନବ ଧର୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ଯିବା ସଂଗେସଂଗେ ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିଭଂଗୀ ପୋଷଣ କରି ଯାଇଛନ୍ତି । ତାଙ୍କରି କଣ୍ଠରୁ ଝରିପଡ଼ିଛି ସମବେଦନାର ସଂଗୀତ-ମାଧୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ବିମଣ୍ଡିତ ହୋଇ ।

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ
ଦେଖୁ ଦେଖୁ କେବା ସହୁ,
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।

ଏହିପରି ଭାବରେ ଜୀବନ ପ୍ରତି ସକାରାତ୍ମକ ମନୋଭାବ ପ୍ରତ୍ୟେକ ସାତ୍ତ୍ୱିକ ଗୁଣାବଳୀର ମଣିଷ ପାଖରେ ଅନୁସନ୍ଧାନ କରାଯାଇପାରେ । ରଜ ଏବଂ ତମଗୁଣ ଅପେକ୍ଷା ସାତ୍ତ୍ୱିକ ଗୁଣାବଳୀରେ ବିଭୂଷିତ ହୋଇପାରିଲେ ନର୍କ ମଧ୍ୟ ସ୍ୱର୍ଗରେ ପରିଣତ ହୋଇଯାଇପାରେ । ବିଶ୍ୱ-ମାନବ-ପ୍ରେମରେ ଥରେ ଦୀକ୍ଷିତ ହୋଇଗଲେ, ସମଗ୍ର ବିଶ୍ୱ

ପ୍ରେମର ପସରା ହୋଇଯାଏ । ମହାମାନବ ଗୋପବନ୍ଧୁ ତେଣୁ ଥିଲେ ଯଥାର୍ଥରେ ଦରିଦ୍ର ଜନତାର ବନ୍ଧୁ । ସେଥିପାଇଁ, ସେ ଉଦାର କଣ୍ଠରେ ଘୋଷଣା କରିପାରିଥିଲେ ଯେ, ସମଗ୍ର ମାନବ ଜାତିର ଉଦ୍ଧାର ନିମନ୍ତେ ନିଜର ରକ୍ତ, ମାଂସ, ହାଡ଼କୁ ମଧ୍ୟ ଅକାତର ଭାବରେ ଅର୍ପଣ କରିଦେଇ ପାରିବେ । ସେ ଯଥାର୍ଥରେ ଜଣେ ଆଶାବାଦୀ ମଣିଷ । ତାଙ୍କର ବିଶ୍ୱାସ ଥିଲା ଅତୁଟ ଓ ଅମାପ । ସେ ସମଗ୍ର ବିଶ୍ୱବାସୀଙ୍କୁ ପ୍ରେମମୟ ଦୃଷ୍ଟିରେ ନିରୀକ୍ଷଣ କରୁଥିଲେ । ଜୀବନକୁ ଗୋଟିଏ ଶିବରାତ୍ରିରେ ପରିଣତ କରାଯିବା ପାଇଁ ଗୁରୁଗମ୍ଭୀର କଣ୍ଠରେ ଆହ୍ୱାନ ଜଣାଇଛନ୍ତି । ସେ ଥିଲେ ଜଣେ ଜୀବନବାଦୀ ସାହିତ୍ୟ ସ୍ରଷ୍ଟା । ସେଥିପାଇଁ ସେ ଗାଇ ଯାଇଛନ୍ତି –

‘ଜୀବନ କି ଖାଲି ନିରାଶାର ବାଲି ମରୁ ମରୀଚିକା ସେନେହ ପ୍ରୀତି,
ତେବେ କି ଆଶାରେ, କହ ଏ ସଂସାରେ, ପରପାଇଁ ନର ମରୁଛି ନିତି ।’

ସେହି ମଣିଷ ଚିରକାଳ ପାଇଁ ଧନ୍ୟ ହୋଇଯାଏ, ଯିଏ ପର ଆପଣାର ମନେ ନକରି ସମଗ୍ର ମାନବ ସଭ୍ୟତାକୁ ପ୍ରେମ କରେ । ନିଃସ୍ୱାର୍ଥ ଭାବରେ ଭଲ ପାଇବା ଭିତରେ ଜୀବନର ମହାତ୍ମ୍ୟ ପ୍ରକାଶିତ ହୁଏ । ପୁଣ୍ୟ ଫଳ ଲାଭ ହୁଏ । ଧର୍ମ ଅର୍ଜନ କରାଯାଇପାରେ । ଯୁଗଯୁଗ ପାଇଁ ମଣିଷ ଅଜେୟ, ଅକ୍ଷୟ ଓ ଅମର ହୋଇଯାଏ । ଗାନ୍ଧୀ, ଗୋପବନ୍ଧୁ, ନେହେରୁ, ଗୋଖଲେ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ବିବେକାନନ୍ଦ ପ୍ରଭୃତି ମହାମାନବଗଣ ଆଜି ମଧ୍ୟ ଅମର ହୋଇ ରହିଯାଇଛନ୍ତି । ସେମାନେ ଆମରୁ ଜୀବନାଦର୍ଶ ହୋଇ ରହିବେ କାଳକାଳକୁ । ମହାମାନବ ବିବେକାନନ୍ଦ ଯଥାର୍ଥରେ କହିଯାଇଛନ୍ତି ଯେ, ଆଧ୍ୟାତ୍ମିକ କ୍ଷେତ୍ରରେ ସମଗ୍ର ବିଶ୍ୱକୁ ଭାରତବର୍ଷ ଏକ ନୂତନ ପଥ ଦେଖାଇବାରେ ସକ୍ଷମ ହୋଇପାରିଛି । ସମଗ୍ର ବିଶ୍ୱ ଯେତେବେଳେ ବସ୍ତୁବାଦୀ ହୋଇପଡ଼ିଛି, ସେତେବେଳେ ଭାରତୀୟମାନେ ଆଧ୍ୟାତ୍ମିକ ଚେତନାରେ ବଳୀୟାନ୍ ଓ ମହୀୟାନ୍ ତଥା ଗରୀୟାନ୍ ହୋଇପାରିଛନ୍ତି । ସେ ଜୀବନକୁ ଭିନ୍ନ ପ୍ରେକ୍ଷାପଟରେ ସନ୍ଦର୍ଶନ କରିବାକୁ ବିଶ୍ୱବାସୀଙ୍କୁ ଦୃପ୍ତକଣ୍ଠରେ ଆହ୍ୱାନ ଜଣାଇଛନ୍ତି । ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ହେଉଛି, "ମଣିଷ କେବଳ ନିଜପାଇଁ ବଞ୍ଚିବା ଉଚିତ୍ ନୁହେଁ, ସେ କେବଳ ଅନ୍ୟମାନଙ୍କର ହିତସାଧନ କରିବା ପାଇଁ ବଂଚେ ଚିରକାଳ ।" ଆଧୁନିକ ଯୁଗରେ ମଣିଷ ସ୍ୱେଚ୍ଛାଚାରୀ ହୋଇଉଠିଛି । ସେ ଚିରକାଳ ବସ୍ତୁବାଦୀ ଜଗତରେ ରହିବା ଦ୍ୱାରା ଆପଣାର ସବୁକିଛିକୁ ଯଥାଶୀଘ୍ର ହରାଇ ବସିଛି । ଏଣୁ ସମଗ୍ର ଭାରତବର୍ଷ ହେଉଛି ଜ୍ଞାନ ଓ ବିଜ୍ଞାନର ଗୁରୁ । ସୁତରାଂ, ଭାରତୀୟ ସଂସ୍କୃତି,

ପରମ୍ପରା, ଐତିହ୍ୟ, ସାହିତ୍ୟ ସମଗ୍ର ବିଶ୍ୱକୁ ନୂତନ ଆଲୋକରେ ଚିରଦିନ ଉଦ୍‌ଭାସିତ କରିପାରିଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ସତ୍ୟ ଏବଂ ଅହିଂସାକୁ ନେଇ ମହାମାନବ ମହାତ୍ମାଗାନ୍ଧୀ ଯେଉଁ ପରୀକ୍ଷା ନିରୀକ୍ଷା କରିଯାଇଛନ୍ତି, ତାର ତୁଳନା ସମଗ୍ର ବିଶ୍ୱ ଇତିହାସରେ ବିରଳପ୍ରାୟ । ମହାତ୍ମାଗାନ୍ଧୀ ହେଉଛନ୍ତି ଆର୍ତ୍ତ ମାନବାତ୍ମାର ପ୍ରକୃତବନ୍ଧୁ । ସେ ଆଜୀବନ ସତ୍ୟ, ଧର୍ମ, ନ୍ୟାୟ ଆଦିର ପଥକୁ ପ୍ରଦର୍ଶନ କରିଯାଇଛନ୍ତି । ତେଣୁ ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିକୋଣ ପ୍ରତିପାଦନ କରିବାରେ ତାଙ୍କର ଭୂମି ଓ ଭୂମିକା ଅବର୍ଣ୍ଣନନୀୟ । ମହାମାନବ ମହାତ୍ମାଗାନ୍ଧୀଙ୍କର ଆତ୍ମ-ପ୍ରତ୍ୟୟ ବହୁତ ବେଶି ରହିଥିଲା । ଗଣତାନ୍ତ୍ରିକ ମୂଲ୍ୟବୋଧ ଉପରେ ସେ ଅଧିକ ଆଶା ଓ ବିଶ୍ୱାସ ସ୍ଥାପନ କରି ପାରିଥିଲେ । ତାଙ୍କ ଦ୍ୱାରା ଲିଖିତ ପୁସ୍ତକ "My Experiment with the Truth"ଟି ଏକ ଉପାଦେୟ ଗ୍ରନ୍ଥ ଭାବରେ ମାନ୍ୟତା ଲାଭ କରିପାରିଛି । ଜୀବନ ଓ ଯୌବନକୁ ସଠିକ୍ ଭାବରେ ନିୟୋଜିତ କରାଯାଇପାରିଲେ ଦେଶ ଓ ଜାତି ମଧ୍ୟ ଧନ୍ୟ ହୋଇଯାଏ । ପ୍ରତ୍ୟେକ ଭାରତୀୟ ପ୍ରକୃତରେ ଆଧ୍ୟାତ୍ମିକ ଶକ୍ତିରେ ବଳୀୟାନ୍ ହେବା ଉଚିତ ବୋଲି ଗାନ୍ଧୀ, ଗୋପବନ୍ଧୁ, ନେହେରୁ ତଥା ଅନ୍ୟାନ୍ୟ ଜନନେତାମାନେ ପ୍ରଚୁର ପରିମାଣରେ ଆଶା ଓ ବିଶ୍ୱାସ ପୋଷଣ କରିଯାଇଛନ୍ତି । ଏହି ଦେଶ ହେଉଛି ବୁଦ୍ଧଙ୍କର ଦେଶ । ସେ ଶିଖାଇଛନ୍ତି, 'କାମନାର ବିନାଶରେ ଦୁଃଖର ବିନାଶ ।' ଜୀବନ ହେଉଛି ସୁନ୍ଦର, ସରସ ଏବଂ ମଧୁମୟ । ଜୀବନପ୍ରତି ସକାରାତ୍ମକ ମନୋଭାବ ପୋଷଣ କରାଯାଇପାରିଲେ ହିଁ ସମାଜରେ ସୁଖ, ଶାନ୍ତି, ମୈତ୍ରୀ, ପ୍ରୀତି ତଥା ଆନନ୍ଦର ସୁଅ ପ୍ରବାହିତ କରାଯାଇପାରେ । ଆଧୁନିକ ଯୁଗରେ ମଣିଷ ପାଖରେ ଯେ ସହୃଦୟତାର ଅଭାବ ପରିଲକ୍ଷିତ ହୋଇଥାଏ, ଏହା ତିକ୍ତ ହେଲେ ମଧ୍ୟ କଠୋର ସତ୍ୟ । ଆମର ଦୋଷ ଦୁର୍ବଳତାକୁ ଯଦି ପରିହାର କରା ନଯାଏ, ତାହେଲେ ଉନ୍ନତି ଅସମ୍ଭବ ହୋଇ ପଡ଼ିବ । ଏଣୁ ଆତ୍ମ ସମୀକ୍ଷା ଏକାନ୍ତ ଅନିବାର୍ଯ୍ୟ ଅଟେ । ନିଜର ଦୋଷ ତ୍ରୁଟି ଆଦିକୁ ସୁଧାରିବାକୁ ହେବ ହିଁ ହେବ । ଏଣୁ ସାମାଜିକ ଜୀବନରେ ଶୁଦ୍ଧତା ନିହାତି ଆବଶ୍ୟକ ବୋଲି ମନେହୁଏ । ମୁଁ ସର୍ବଦା ସତ୍ୟ, ଧର୍ମ ତଥା ନ୍ୟାୟ ଉପରେ ଆସ୍ଥା ସ୍ଥାପନ କରେ । ମାନବସେବାକୁ ମାଧବ ସେବା ଜ୍ଞାନରେ କାର୍ଯ୍ୟ କରିବାକୁ ପସନ୍ଦ କରେ । ଆଦର୍ଶ ମାନବ ଧର୍ମ ପାଳନ କରିବାକୁ ପସନ୍ଦ କରେ । ପ୍ରକୃତରେ ସାହିତ୍ୟ ସେବା ମାଧ୍ୟମରେ ଦେଶ ଓ ଜାତିର ସେବା କରାଯାଇପାରେ ବୋଲି ମୋର ଧାରଣା ରହିଛି । ଗଭୀର ପ୍ରେମାନୁଭବ ଭିତରେ ଏହି ଜଗତକୁ ଆପଣାର କରାଯାଇପାରେ । ଓଡ଼ିଶା ସାହିତ୍ୟରେ ଜଣେ ଉଚ୍ଚକୋଟିର, ସାରସ୍ୱତ, ଶାଶ୍ୱତ ତଥା କାଳଜୟୀ ସମାଲୋଚକ ହେବାପାଇଁ

ଆଜୀବନ ସଂଗ୍ରାମ କରିକରି ଆସୁଛି । ବିଫଳତାର ଶିକାର ହୋଇନାହିଁ । ଆଜୀବନ ଆଶା ଓ ବିଶ୍ୱାସରେ ଭରସା ରଖୁଛି । ମୁଁ କ୍ଷତ ଏବଂ କ୍ଷତି ସହିଛି, କିନ୍ତୁ ହାରିଯାଇନାହିଁ । ବଡ଼ଲୋକ ହେବାର ସ୍ୱପ୍ନ ମତେ ଆଚ୍ଛନ୍ନ କରି ରଖୁଛି ଚିରଦିନ । ମୋର ଗୁରୁଜନ, ଶିକ୍ଷକ ତଥା ଆଦର୍ଶ ସ୍ଥାନୀୟ ମାନଙ୍କୁ ଯଥାମାନ୍ୟ ପ୍ରଦାନ କରିବାରେ କେବେହଲେ ଅବହେଳା ମୁଁ କରିନାହିଁ । ଜଣେ ସତ୍ୟଶୀଳ ନିଷ୍ଠାବାନ୍, ପୂତ ଓ ପବିତ୍ର ଲେଖକ ହେବାର ସଂକଳ୍ପ ରହିଛି । ମୁଁ ଜଣେ କର୍ମବାଦୀ । କର୍ମ ଉପରେ ଅଗାଧ ବିଶ୍ୱାସ ସ୍ଥାପନ ପୂର୍ବକ ଜଣେ ନିଃସ୍ୱାର୍ଥପର ସମାଜସେବୀ ହେବାର ଅଧିକତର କାମନା ତଥା ବାସନା ମୋର ରହିଅଛି । ପାରସ୍ପରିକ ସ୍ନେହ, ଶ୍ରଦ୍ଧା, ପ୍ରେମବଳରେ ସମଗ୍ର ବିଶ୍ୱକୁ ଜୟ କରାଯାଇପାରିବ ବୋଲି ମୁଁ ସଦାକାଳେ ବିଶ୍ୱାସ କରେ । ନିଜର କୃତକର୍ମର ଫଳ ନିଶ୍ଚୟ ଭୋଗ କରିବାକୁ ପଡ଼ିବ । ଏଣୁ ମୁଁ ସଦାବେଳେ ଧର୍ମ ଉପରେ ଆସ୍ଥା ସ୍ଥାପନ କରିଥାଏ ଓ ଯାହା ଉଚିତ୍ ମନେକରେ, ତାହାକୁ କାୟମନୋବାକ୍ୟରେ ପାଳନ କରିବା ପାଇଁ ତତ୍ପର ହୋଇଉଠେ । ମୁଁ ଅଧିକ ପରିଶ୍ରମ କରି ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ ନିମିତ୍ତ ଚିରକାଳ ଆଗ୍ରହୀ ଅଟେ । ମୋର ପାରିବାରିକ ଜୀବନ ସୁଖମୟ ଅଟେ । ମୁଁ ସବୁବେଳେ କଠୋର ପରିଶ୍ରମ କରିବାକୁ ବିଶେଷ ଭଲପାଏ । କବି ବ୍ରଜନାଥ ରଥ ହେଉଛନ୍ତି ମୋର ପ୍ରିୟ କବି । ତାଙ୍କର କବିତାରେ ପ୍ରେମ ଏବଂ ବିଦ୍ରୋହର ମିଶ୍ରିତ ସ୍ୱର ଏବଂ ସ୍ୱାକ୍ଷର ରହିଛି । ସେ ଜଣେ ଦରଦୀ, ଉଦାର ତଥା ମାନବବାଦୀ କାବ୍ୟଶିଳ୍ପୀ । ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିଭଂଗୀ ହେଉଛି ତାଙ୍କ କବିତାର ଅନ୍ତଃସ୍ୱର । ତେଣୁ ସେ ଗଭୀର ଭାବରେ ମାଟି ଓ ମଣିଷକୁ ଭଲପାଇଛନ୍ତି ତାଙ୍କର କବିତା ଭିତରେ । ତାଙ୍କୁ ମୁଁ ପ୍ରଚୁର ପରିମାଣରେ ସ୍ନେହ, ଶ୍ରଦ୍ଧା, ଭକ୍ତି ତଥା ସମ୍ମାନ ପ୍ରଦର୍ଶନ କରେ ମୋର ହୃଦୟର ଗଭୀରତମ ପ୍ରଦେଶରୁ । ସେ ମୋର ଜୀବନର ପଥ ପ୍ରଦର୍ଶକ । ତାଙ୍କର ଆଚରଣ ଓ ଉଚ୍ଚାରଣରେ ରହିଛି ଅପୂର୍ବ ସାମଞ୍ଜସ୍ୟ । ସେ ସରଳ, ନିରହଂକାର ତଥା ଅମାୟିକ ବ୍ୟକ୍ତିତ୍ୱ ସଂପନ୍ନ ମଣିଷ । ତାଙ୍କପରି ଜଣେ ଉଚ୍ଚକୋଟୀର, ସାରସ୍ୱତ ସାଧକ ତଥା ସୃଜନଶୀଳ ପ୍ରତିଭାର ସାନ୍ନିଧ ଲାଭ କରି ପାରିଥିବାରୁ ମୁଁ ନିଜକୁ ଧନ୍ୟ ମନେକରୁଛି । ଡ.ଆଦିକନ୍ଦ ସାହୁ, ଡ.ବୈରାଗୀ ଚରଣ ଜେନା, ଡ.ଶରତ ଚନ୍ଦ୍ର ପ୍ରଧାନ, ଡ.କୁମୁଦ ରଂଜନ ପାଣିଗ୍ରାହୀ, ଡ.ଅଶୋକ କୁମାର ଦାସ ଆଦି ମୋର ପ୍ରିୟ ଅଧ୍ୟାପକ ଅଟନ୍ତି । ଏମାନେ ମୋର ଜୀବନାଦର୍ଶ । ଏମାନଙ୍କର ଶୁଭଦୃଷ୍ଟି ମୋ ଉପରେ ରହିଥିବାରୁ ମୁଁ ସାହିତ୍ୟ କ୍ଷେତ୍ରରେ ଆଗେଇବାରେ ସକ୍ଷମ ହୋଇପାରିଛି । ଡ.ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟଙ୍କ ପରି ସାହିତ୍ୟିକ ହେଉଛନ୍ତି ମୋର ଶିକ୍ଷାଗୁରୁ

ଓ ଦୀକ୍ଷାଗୁରୁ ମଧ୍ୟ । ତାଙ୍କର ରଚିତ ଗ୍ରନ୍ଥ 'ଓଡ଼ିଶା ସାହିତ୍ୟର ସଂକ୍ଷିପ୍ତ ପରିଚୟ' ଏକ ଉଚ୍ଚମାନର ସମାଲୋଚନା ଗ୍ରନ୍ଥ । ସେ ଜଣେ ବିଦ୍ୱାନ ବ୍ୟକ୍ତିଥିଲେ । ଚିରଦିନ ସେ ଓଡ଼ିଆ ଭାଷା ଓ ସାହିତ୍ୟର ଜୀବିତ ରହିବେ, ଏଥିରେ ସନ୍ଦେହର ଅବକାଶ ନାହିଁ । ଏଣୁ ସେ ମଧ୍ୟ ମୋର ଜୀବନାଦର୍ଶ ଅଟନ୍ତି । ଅନ୍ୟମାନଙ୍କ ମଧ୍ୟରେ ଡ.ଧ୍ରୁବରାଜ ନାୟକ ମଧ୍ୟ ମୋର ଜଣେ ଶୁଭକାମନା କରୁଥିବା ସଦାଚାରୀ ଶିକ୍ଷାବିତ୍ । ଜୀବନକାଳ ମଧ୍ୟରେ ମୁଁ ଯେଉଁ ସୁଗୁଣ ସଂପନ୍ନ ବ୍ୟକ୍ତିମାନଙ୍କର ସହିତ ଆସିଛି, ତାହା ଏଠାରେ ଉଲ୍ଲେଖ କରାଯିବା ଅସମ୍ଭବ ବ୍ୟାପାର । ମୋର ଜୀବନର ଚଳାପଥରେ ଯେତେ ଜ୍ଞାନୀ, ଗୁଣୀ ଓ ବିଦ୍ୱାନ ମଣିଷ ଆସିଛନ୍ତି । ପ୍ରାୟ ସମସ୍ତେ ଜୀବନପ୍ରତି ସକାରାତ୍ମକ ମନୋଭାବ ପୋଷଣ କରିଛନ୍ତି ।

ଆଧୁନିକ ଓଡ଼ିଆ କାବ୍ୟ କବିତାରେ ଜୀବନ ପ୍ରତି ସକାରାତ୍ମକ ଦୃଷ୍ଟିଭଂଗୀର ଅଭ୍ରାନ୍ତ ପରିଚୟ ପ୍ରତ୍ୟେକ ସହୃଦୟ ପାଠକ ପାଠିକାମାନଙ୍କୁ ଅଭିଭୂତ କରିଦିଏ । ସେଥିପାଇଁ, ସାମାଜିକ ବାସ୍ତବବାଦୀ ଚିନ୍ତାଧାରା ସଂପନ୍ନ କବିତାକୁ ମୁଁ ପଢ଼ିବାପାଇଁ ବିଶେଷ ଭଲପାଏ । ଯେଉଁଠାରେ ଜୀବନର ତିକ୍ତ ମଧୁର ଅନୁଭବର ଗଭୀର ସମନ୍ୱୟ ଦୃଷ୍ଟିଗୋଚର ହୋଇଥାଏ । ଜୀବନ ପ୍ରତି ସମ୍ମୋହନ ହେଉଛି ଆଧୁନିକ କବିତାର ମୂଳପିଣ୍ଡ । ଜୀବନ ଓ ଜଗତର ମଧୁରତମ ସ୍ମୃତି ସମୂହକୁ କବିତାରେ ପ୍ରକାଶ କରିବାରେ ଯେଉଁ କବିମାନେ ଆଗ୍ରହୀ ହୋଇ ଉଠିଛନ୍ତି । ସେମାନେ ମୋର ଚିର ନମସ୍ୟ ଓ ସମ୍ମାନନୀୟ । କବିତା ହେଉଛି କବି ହୃଦୟର ନିର୍ମଳ ଅଭିବ୍ୟକ୍ତି । କବି ଦୀନକୃଷ୍ଣ ଦାସ ଏକଦା ତାଙ୍କର ବହୁ ଚର୍ଚ୍ଚିତ କାବ୍ୟ 'ରସକଲ୍ଲୋଳ'ରେ କହିଛନ୍ତି, 'କବି ହୋଇ କରୁଥିବ ନିର୍ମଳ କବିତ୍ୱ' । ଏଣୁ ଯେଉଁ କବି ନିର୍ମଳ କବିତ୍ୱ ପ୍ରଦର୍ଶନରେ ପୂର୍ଣ୍ଣମାତ୍ରାରେ ସକ୍ଷମ ସେ କବି ମୋର ଚିର ପ୍ରିୟ ହୋଇଯାନ୍ତି । ସେମାନଙ୍କର ସୃଷ୍ଟି ସମ୍ଭାର ମଧ୍ୟରେ ଜୀବନର ସମୁଜ୍ଜ୍ୱଳ ଚିତ୍ର ଓ ଚରିତ୍ର ଚିର ବିଦ୍ୟମାନ ରହି ଆସିଅଛି । ଅପର ପକ୍ଷରେ, ପ୍ରଗତିବାଦୀ କାବ୍ୟଧାରାର ପ୍ରମୁଖ କବିମାନେ ନିଶ୍ଚୟ ସାମ୍ୟବାଦୀ ସ୍ୱର ଓ ସ୍ୱାକ୍ଷର ଉତ୍ତୋଳନ କରିପାରିଛନ୍ତି ଓଡ଼ିଆ ସାହିତ୍ୟର କାବ୍ୟ-କବିତା ମାନଙ୍କରେ । ବିପ୍ଳବୀ କବି ରବି ସିଂଙ୍କ ଭାଷାରେ, "ମାର୍କସବାଦୀ ଚିନ୍ତାଧାରା ସଂପର୍କୀୟ ସାହିତ୍ୟ, ଫରାସୀ ବିପ୍ଳବ ଓ ରୁଷ ବିପ୍ଳବର ଇତିହାସକୁ ପଢ଼ି ମୁଁ ସେତେବେଳେ ପଢୁଥାଏ ବିଶ୍ୱ ସାହିତ୍ୟର କେତୋଟି ବଛାବଛା ଉପନ୍ୟାସ । ଏହି ଅଧ୍ୟୟନ କାଳରେ ଗୋଟିଏ ଜାଗାରୁ ମୋର ହସ୍ତଗତ ହେଲା କେତେଖଣ୍ଡି ପୁସ୍ତକ । ଯେଉଁ ପୁସ୍ତକ ସେତେବେଳେ ମୋର ହସ୍ତଗତ ହୋଇ ନଥିଲେ ମୁଁ ଆଜି ମଣିଷ ପରି ମଣିଷଟିଏ ନହୋଇ ଏକ ଦାନବରେ ପରିଣତ ହୋଇଥାନ୍ତି ବୋଲି ଧାରଣା । ସେ

ପୁସ୍ତକମାନ ହେଲା : ଇଭାନ୍ ତୁର୍ଗେନେଭ୍‌ଙ୍କ "On the eve", ଦସ୍ତୋୟେଭସ୍କିଙ୍କ "The Insulted and Humiliated ଓ Notes From a Dead House, ମାକ୍‌ସିମ୍ ଗର୍କୀଙ୍କ Mother ଏବଂ Literary Portraits, କାଜୀ ନଜରୁଲ୍ ଇସଲାମ୍‌ଙ୍କ 'ଅଗ୍ନିବୀଣା', 'ସଂଚିତା', ତୁରସ୍କର ଯୁଗସ୍ରଷ୍ଟା କବି ନାଜିମ୍ ହିକ୍‌ମତ୍‌ଙ୍କ କବିତା ସହିତ ରୁଷ୍ ବିପ୍ଳବର କବି ମାୟୋକୋଭସ୍କିଙ୍କ କବିତାଗୁଚ୍ଛ ପ୍ରଭୃତି ।' (ମୁଁ ଓ ମୋର କବିତା- ବିଦୀର୍ଣ୍ଣ) ସାଂପ୍ରତିକ ଓଡ଼ିଆ କାବ୍ୟଧାରାରେ ପ୍ରଗତିଶୀଳ ଚେତନାର ଅଗ୍ରଗଣ୍ୟ କବି ଭାବରେ ରବି ସିଂ ଯେଉଁ କବିତା ରଚନା କରନ୍ତି, ସେଥିରେ ସାମାଜିକ ଅଗଂୀକାରବଦ୍ଧତାର ସ୍ୱର ତୀବ୍ର ଏବଂ ଶାଣିତ ହୋଇ ଉଠିଥିବାର ଦେଖାଯାଏ । କବି ବଜ୍ରନିର୍ଘୋଷ ସ୍ୱରରେ ଗାଇ ଉଠିଛନ୍ତି,

"ଯେ ପୋଡ଼ାମାଟିରେ ଜନ୍ମ ମୋହର ମାନବର ଅଭିମାନେ,
ଯେଉଁଠି ହୃଦ ମୋ ଝଙ୍କୃତ ହାୟ ବେଦନାର ବୀଣାତାନେ !
କପାଳରେ ଯହିଁ କୁଞ୍ଚନ ରେଖା ସଦା ସର୍ବଦା ଫୁଟେ,
ତମାଖୁର ଘନ-ନେଳି-ଧୂଆଁରେ ମୋ କବିତା ଖୋରାକ୍ ଯୁଟେ ।"
('ଧୂମକେତୁ' - ବିଦୀର୍ଣ୍ଣ)

ଯେଉଁମାନେ ଚିରଦିନ ସାମାଜିକ ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତି ତଥା ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ କରନ୍ତି, ସେମାନେ ମୋର ଚିର ନମସ୍ୟ ଓ ବନ୍ଦନୀୟ ଅଟନ୍ତି । ସମାଜର ଦରିଦ୍ର, ନିରନ୍ନ ତଥା ନିପୀଡ଼ିତ ମଣିଷମାନଙ୍କ ପ୍ରତି ଅସୀମ ମମତ୍ୱବୋଧ ପ୍ରକାଶ ପୂର୍ବକ ଏକ ଶ୍ରେଣୀହୀନ ସମାଜ ଗଠନର ପକ୍ଷପାତୀ ଯେଉଁମାନେ, ସେମାନେ ପ୍ରକୃତରେ ହେଉଛନ୍ତି ସମାଜର ଚିରଜାଗ୍ରତ ପ୍ରହରୀ । ମୋର ବ୍ୟକ୍ତିଗତ ଜୀବନରେ କେବେ ଅନ୍ୟାୟକୁ ପ୍ରଶ୍ରୟ ପ୍ରଦାନ କରିନାହିଁ । ଆଜୀବନ ସଂଗ୍ରାମ ଅବ୍ୟାହତ ରଖିଛି । ସାମାଜିକ ଅନ୍ୟାୟ ବିରୋଧରେ ସଂଗ୍ରାମ କରିବାରେ ଯେଉଁ ଆନନ୍ଦ ମିଳେ, ତାହା ଅନିର୍ବଚନୀୟ । ଯେଉଁ କବି ସଦାବେଳେ ଜୀବନପ୍ରତି ସମଧିକ ପରିମାଣରେ ସକାରାତ୍ମକ ଦୃଷ୍ଟିକୋଣ ନିକ୍ଷେପ କରି କବିତା ଲେଖନ୍ତି, ସେମାନେ ବିଶ୍ୱବନ୍ଦନୀୟ ହୋଇପାରନ୍ତି । କବି ବ୍ରଜନାଥ ରଥଙ୍କ କବିତାରେ କିପରି ସାର୍ବଜନୀନ ସତ୍ୟ ସୁନ୍ଦର, ସରସ, ମଧୁର ଭାବରେ ପ୍ରକାଶିତ, ତାହା ଲକ୍ଷ୍ୟ କରାଯାଇପାରେ ।

"ଚାରିଆଡ଼େ ମାଳମାଳ ଆକାଶଛୁଆଁ କୋଠା,
ମହାନଗରର ଧୂମାଳ ଆକାଶରେ
ଆଷାଢ଼ୀ ମେଘର ଧୂସର ପଟୁଆର,

ଉଡ଼ନ୍ତ ମେଘର ଓଢ଼ଣିରେ ଛାଣି ହୋଇ
ଝରି ପଡ଼ୁଛି ନିସ୍ତେଜ ଖରାର ସୁନେଲି ରଶ୍ମିକଣା ।
କାଁ ଭାଁ ପକ୍ଷୀମାନଙ୍କ ତିର୍ଯ୍ୟକ୍ ଉଡ଼ାଣ ।
ଅଳ୍ପ ଦୂରରେ
କୋଠାମାନଙ୍କ ଅହଂକାରକୁ ବିଦ୍ରୂପ କରି
ହସିଉଠୁଛି ଗୋଟିଏ ଏକଲା କୃଷ୍ଣଚୂଡ଼ା ।
ରଂଗରେ ଫାଟିପଡୁଛି ତା'ର ସାରା ଅବୟବ ।"
('ଏକାକୀ କୃଷ୍ଣଚୂଡ଼ା' - ଝର୍କା - ପୂଜାସଂଖ୍ୟା-୨୦୧୧)

ଜୀବନର ଗୂଢ଼ ବାସ୍ତବତାକୁ ସ୍ୱୀକାର ପୂର୍ବକ ଏକ ସବୁଜ ସ୍ୱପ୍ନରେ ଜୀବନକୁ ପରଖିବାର କଳା ଓ କୌଶଳ ବ୍ରଜନାଥ ରଥଙ୍କର ଏକ ନିଜସ୍ୱ ଶୈଳୀ ଭାବରେ ବିବେଚନା କରାଯାଇପାରେ । 'ଷ୍ଟାଇଲ୍ ଇଜ୍ ଦା ମେନ୍' - ଶୈଳୀ ହିଁ ମଣିଷ । ଜୀବନ ପ୍ରତି ସମ୍ବେଦନଶୀଳ ମନୋଭାବ ପ୍ରକାଶ ପୂର୍ବକ ଏକ ସୁନେଲି ଭବିଷ୍ୟତର ସ୍ୱପ୍ନ ଓ ସଂଗ୍ରାମ କବି ଶ୍ରୀ ବ୍ରଜନାଥ ରଥଙ୍କୁ କରିପାରିଛି ମୁହ୍ୟମାନ ଏବଂ ଆନମନା । ତନୁମନରେ ଏକ ଅପୂର୍ବ ପୁଲକର ଶିହରଣ ସୃଷ୍ଟି ହୋଇପାରିଛି କଳାତ୍ମକ ପରିପାଟୀ ମଧ୍ୟରେ । ଫକୀରମୋହନ, ରାଧାନାଥ, ମଧୁସୂଦନ, ନନ୍ଦକିଶୋର ଆଦି ସାହିତ୍ୟ ସାଧକଗଣ ଯେ କିପରି ଜୀବନ ଓ ଜଗତକୁ ସକାରାତ୍ମକ ଭାବରେ ଲକ୍ଷ୍ୟ କରିଯାଇଛନ୍ତି, ତାହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଓ ମନୋମୁଗ୍ଧକର ବିଷୟ । କବିବର ରାଧାନାଥ ରାୟଙ୍କ କାବ୍ୟ ସାହିତ୍ୟ ଉପରେ ନିଜର ଅଭିମତ ପ୍ରଦାନ କରିବାକୁ ଯାଇ ବରିଷ୍ଠ ସମାଲୋଚକ ଡ.ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ତାଙ୍କର 'ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ' ଗ୍ରନ୍ଥରେ ଯଥାର୍ଥରେ ଲେଖିଛନ୍ତି, 'ଓଡ଼ିଶାର ଅତୀତ ଇତିହାସ ଓ ସଂସ୍କୃତି ପ୍ରତି ରାଧାନାଥଙ୍କର ଥିଲା ଗଭୀର ଶ୍ରଦ୍ଧା । ଅତୀତର କାହାଣୀ, କିମ୍ବଦନ୍ତୀ ଓ ଇତିହାସର ଚିତ୍ରାବଳୀ ରାଧାନାଥଙ୍କ ଲେଖନୀରେ ପ୍ରଥମେ ଜୀବନ୍ତ ରୂପ ଗ୍ରହଣ କରିଥିଲା । ତାଙ୍କ କାବ୍ୟକୃତି ମଧ୍ୟରେ ଓଡ଼ିଶାର ବନଗିରି, ନଦ-ନଦୀ ନୂତନ ଜୀବନ ଲାଭ କରିଥିଲେ । ଏକ ସଫଳ ଜାତୀୟ ଭାବର ପରିପୋଷକରୂପେ ରାଧାନାଥଙ୍କର ଏସବୁ ବର୍ଣ୍ଣନା ଓ ସୃଷ୍ଟିକର୍ମ ଏ ଦେଶମାତୃକାର ପବିତ୍ର ପୂଜାବେଦିରେ ନିବେଦିତ ହୋଇଥିଲା । ତେଣୁ ରାଧାନାଥ ଜୀବନ ପ୍ରତି ଥିଲେ ସକାରାତ୍ମକ ମନୋଭାବାପନ୍ନ ଓ ଯଥାର୍ଥରେ ଜାତୀୟତାବାଦୀ କାବ୍ୟଶିଳ୍ପୀ । ପ୍ରେମ ଥିଲା ତାଙ୍କ କାବ୍ୟ ଗୁଡ଼ିକର କଥାବସ୍ତୁ । ସାମଗ୍ରିକ ଭାବରେ ମାତୃଭୂମି ଓ ମାତୃଭାଷାକୁ ଭଲ ପାଇବା ଥିଲା ତାଙ୍କରି ଜୀବନାଦର୍ଶ ।

ସରସ୍ୱତୀ ଫକୀରମୋହନ ସେନାପତି ହେଉଛନ୍ତି ଖାଣ୍ଟି ମନ ଓ ମନନରେ ଓଡ଼ିଆ । ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ବଂଚାଇବା ପାଇଁ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି, ତାର ପଟାନ୍ତର ନାହିଁ । ସମଗ୍ର ବିଶ୍ୱ ସାହିତ୍ୟ ଦରବାରରେ ଓଡ଼ିଆ ଜାତିକୁ ପରିଚିତ କରାଇବାର ଅଦମ୍ୟ ଉତ୍ସାହ, ପ୍ରେରଣା ଓ ଆଗ୍ରହ ରହିଥିଲା ଫକୀରମୋହନଙ୍କର । ସେ ଯଥାର୍ଥରେ ଓଡ଼ିଆ ଜାତିର ସେନାପତି ଥିଲେ । ତାଙ୍କର ରଚିତ ଗଳ୍ପ, ଉପନ୍ୟାସ ଓ କାବ୍ୟ କବିତା ଗୁଡ଼ିକରେ ଓଡ଼ିଆ ଜନଜୀବନର ଏକ ଅନାହତ ଚିତ୍ର ଓ ଚରିତ୍ର ଦୃଷ୍ଟିଗୋଚର ହୋଇଥାଏ ଅଧିକ ସୁନ୍ଦର ତଥା ମାର୍ମିକ ଭାବରେ । ଫକୀରମୋହନ ଥିଲେ ଜଣେ ହୃଦୟଗ୍ରାହୀ ମଣିଷ । ସେ ଭଲ ପାଉଥିଲେ ଓଡ଼ିଶାକୁ ଓ ଓଡ଼ିଶାର ଚିର ନିପୀଡ଼ିତ ଦରିଦ୍ର ଜନତାକୁ । ତାଙ୍କର ସାରସ୍ୱତ ସୃଷ୍ଟି ସମ୍ଭାର ମଧରେ ଜୀବନକୁ ତନ୍ନତନ୍ନ କରି ପରୀକ୍ଷା ନିରୀକ୍ଷା କରାଯାଇ ପାରିଛି ଅଧିକ ସୌନ୍ଦର୍ଯ୍ୟାତ୍ମକ ଶୈଳୀରେ । ଫକୀରମୋହନଙ୍କ ଉପନ୍ୟାସ 'ଛ'ମାଣ ଆଠଗୁଣ୍ଠ', 'ମାମୁଁ', 'ଲଛମା' ଓ 'ପ୍ରାୟଶ୍ଚିତ୍ତ'ରେ ତତ୍‌କାଳୀନ ଓଡ଼ିଶାର ଜୀବନଯାପନର ଏକ ବାସ୍ତବ ଚିତ୍ର ପାଠକର ଦୃଷ୍ଟିଗୋଚର ହୋଇଥାଏ । ଫକୀରମୋହନଙ୍କ ଗଳ୍ପ ଗୁଡ଼ିକରେ ସାମାଜିକ ବାସ୍ତବବାଦୀ ଚିନ୍ତାଧାରାର ଅନାହତ ରୂପଚର୍ଯ୍ୟା ବେଶ ମାଧୁର୍ଯ୍ୟମୟ ଓ ସୁଖପାଠ୍ୟ ହୋଇପାରିଛି । ଏହି ବିରାଟ ସ୍ରଷ୍ଟା ହେଉଛନ୍ତି ଆଧୁନିକ ଓଡ଼ିଆ ସାହିତ୍ୟର କର୍ଣ୍ଣଧାର । ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ନୂତନ ରୂପରେ ସଜାଇବାରେ ପ୍ରମୁଖ ଭୂମିକା ନିର୍ବାହ କରିପାରିଛନ୍ତି । ସେ ହେଉଛନ୍ତି ପରମ୍ପରା ଓ ପୁରୋଦୃଷ୍ଟିର ସାହିତ୍ୟସାଧକ । ଓଡ଼ିଆ ସାହିତ୍ୟରେ ଫକୀରମୋହନ ଓ ରାଧାନାଥ ହିଁ ପ୍ରକୃତରେ ଯୁଗପ୍ରବର୍ତ୍ତକ ତଥା ଯୁଗସ୍ରଷ୍ଟାର ଆସନରେ ସମାସୀନ ହୋଇ ପାରିଛନ୍ତି ଓ ଜୀବନ ପ୍ରତି ନୂତନ ଦୃଷ୍ଟିକୋଣ ନିକ୍ଷେପରେ ସହାୟକ ହୋଇପାରିଛନ୍ତି ।

ଗୋପାଳକୃଷ୍ଣ, ବନମାଳୀ, କବିସୂର୍ଯ୍ୟ, ଅଭିମନ୍ୟୁ, ଦୀନକୃଷ୍ଣ, ଜଗନ୍ନାଥ ଦାସ ଆଦି କବିମାନେ ପ୍ରତିନିଧି ସ୍ଥାନୀୟ ଅଟନ୍ତି । ଏମାନେ ଓଡ଼ିଆ ସାହିତ୍ୟରେ ଭକ୍ତି ଓ ପ୍ରୀତିର ମାର୍ଗରେ ଜୀବନକୁ ଖୋଜିବାରେ ସଫଳତା ଲାଭ କରିପାରିଛନ୍ତି । ରମାକାନ୍ତ, ସୀତାକାନ୍ତ, ସୌଭାଗ୍ୟ, ପ୍ରତିଭା, ରାଜେନ୍ଦ୍ର ଆଦି କବିମାନେ ସ୍ୱ ସ୍ୱ ସୃଷ୍ଟି ସମ୍ଭାର ମଧରେ କେତେକ କ୍ଷେତ୍ରରେ ଜୀବନ ପ୍ରତି ସକାରାତ୍ମକ ମନୋଭାବ ଯେ ପ୍ରଦର୍ଶନ କରିପାରିଛନ୍ତି, ଏଥିରେ କୁଣ୍ଠା ପ୍ରକାଶ କରାଯାଇନପାରେ । କବି ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ,

'ଜାଣିଛି ଆସୁଚ ତମେ ମୋ ପଛରେ
ଲକ୍ଷ୍ମୀପଦ ପକେଇ ପକେଇ

ମୋ ଭରସା, ମୋ କାଦୁଅ, ମୋରି ସ୍ୱପ୍ନ, ମୋରି ଭୟ
ଦୁହିଁକି ବଂଚେଇ ରଖି
ଦୁଇ କଳା ଡୋଳାରେ ସଂଭାଳି;
ଶୂନ୍ୟରେ ତରଙ୍ଗ ଛବି ଆଙ୍କିବା ଖାଲି ମୋ କାମ
ମରଣର ସୁଗଂଧିରେ ଭରପୂର ଅଂଧାରରେ
କୋଟି ଜନ୍ମ, କୋଟି ମୃତ୍ୟୁ ଡେଇଁ ।' (ସମୁଦ୍ର)

ସ୍ରଷ୍ଟାଟିଏ ଆଜୀବନ ଜୀବନ ପ୍ରତି ଅନୁରକ୍ତ ହୋଇଯାଏ ସ୍ୱତଃସ୍ଫୁର୍ତ୍ତ ଭାବରେ । ମୋର ଜୀବନ ଦର୍ଶନ ଭିତରେ ଚିରକାଳ ମାନବବାଦୀ ସ୍ରଷ୍ଟାମାନେ ଆତଯାତ ହୁଅନ୍ତି । ସେ କବି ରମାକାନ୍ତ, ସୀତାକାନ୍ତ ବା ବ୍ରଜନାଥ ହୋଇପାରନ୍ତି । ଜୀବନ ପ୍ରତି ଗଭୀର ସକାରାତ୍ମକ ମନୋଭାବ ପୋଷଣ କରୁଥିବାରୁ ସୀତାକାନ୍ତ ଲେଖିପାରନ୍ତି, "କିନ୍ତୁ ତଥାପି ମୁଁ ଭରସା ରଖେ । ଦିନେନା ଦିନେ ସେ ପବନ ଆସିବ । ସବୁଠୁ ଜୋରଦାରିଆ ସେ ପବନ । ଆମ ରକ୍ତର ସଂପର୍କଠୁ ଆହୁରି ଶକ୍ତିମାନ । ମୃତ୍ୟୁଠୁ ଆହୁରି ନେଳି ଓ ଅର୍ଥପୂର୍ଣ୍ଣ । ଆସି ହାତ ମିଳେଇବ, ବଢ଼େଇବ ତମ ଚିଠି । ସେତେବେଳେ ତାରାମାନେ ଆକାଶରେ ଜନ୍ମ ନେଉଥିବେ । ମେଘ ଉଇଁ ଆସୁଥିବ । ଆକାଶର ଆଖିକୋଣରେ ଲାଖି ରହିଥିବ କୁନି ହସଟିଏ ଯାହା ଭିତରେ ମୁଁ ବୁଲି ଆସିବି କେତେ ଜନ୍ମ, କେତେ ମନ୍ୱନ୍ତର । କେତେ ମୃତ୍ୟୁର ନଈ ପାରିହୋଇ ସେଇ ହସର ଗୋଲାପ ପଚିବା ଆଗରୁ ।" (ସମୁଦ୍ରକୁ.....)

ଜୀବନକୁ ମୃତ୍ୟୁ କବଳିତ କରିପାରେନା । କାରଣ ମୃତ୍ୟୁ ହେଉଛି ଅମୃତର ଦ୍ୱାରଦେଶ । ମୃତ୍ୟୁପରେ ଅମୃତ ପ୍ରାପ୍ତି ହୋଇଥାଏ । ମୁଁ ବି ଜଣେ ସାହିତ୍ୟ ସାଧକ । ଜୀବନକୁ ଜଗତକୁ ସମୟର ଆହ୍ୱାନ କ୍ରମେ ଦେଖିବାରେ ମୁଁ ସତତ ଅଭ୍ୟସ୍ତ ହୋଇପଡ଼ିଛି । ତେଣୁ ସାରାଜୀବନ ମୁଁ ଜୀବନକୁ ଦେଖିଚାଲିଛି ସକାରାତ୍ମକ ରୂପରେ, ପୁଣି ତାହାକୁ ଭିନ୍ନଭିନ୍ନ ଶୈଳୀରେ, ରଂଗରେ ତଥା ବାଗରେ । ତେଣୁ ଜୀବନ ହେଉଛି ଅସରନ୍ତି ସମୟର ଏକ ଇସ୍ତାହାର ।



# ଜୀବନ-ଜିଜ୍ଞାସା

ସୂର୍ଯ୍ୟମଣି ଖୁଣ୍ଟିଆ

ଜୀବନ ସଂପର୍କରେ ଯୁଗଯୁଗ ଧରି ମଣିଷ ମନରେ ବହୁପ୍ରଶ୍ନ ଉଠିଛି । କ'ଣ ଏ ଜୀବନ ? ଏହାର ଲକ୍ଷ୍ୟ କ'ଣ ? କାହିଁକି ଆମେ ଜିଉଁ ? ନ ଜିଇଁଲେ କ୍ଷତି କ'ଣ ? ଏଇ ଜୀବନର ଅର୍ଥ କଣ ? କିଭଳି ଜୀବନ ଜିଇଁଲେ ତାକୁ ଭଲ ଜୀବନ କୁହାଯିବ ? ମୃତ୍ୟୁ ସହିତ ତାର ସଂପର୍କ କ'ଣ ? ସମାଜ, ମଣିଷ ଓ ଜୀବନ ସବୁର ସଂପର୍କ କେତେ ନିବିଡ଼ ? ସମାଜକୁ ଅଧିକ ଜୀବନମୁଖୀ କରାଯିବା ଦିଗରେ ବ୍ୟକ୍ତିର କିଛି ଭୂମିକା ଅଛି କି ? ଯଦି ଅଛି ତେବେ ସେ ଭୂମିକାଟି କ'ଣ ?

ଜୀବନ ସଂପର୍କରେ ଏପରି ଅନେକ ପ୍ରଶ୍ନ ପଚରାଯାଇ ପାରେ, ତାର ଉତ୍ତର ମଧ୍ୟ ଖୋଜି ବାହାର କରାଯାଇପାରେ । ଆମ ଭିତରେ ଯିଏ ରହି ବା ଯେଉଁଶକ୍ତି ଆମକୁ କଥା କୁହାଉଛି, ହସାଉଛି, କନ୍ଦାଉଛି, ଚିନ୍ତା କରିବାର ଶକ୍ତି ଯୋଗାଉଛି ତାରି ନାଁ ଜୀବନ । ଆଧ୍ୟାତ୍ମବାଦୀମାନେ କହନ୍ତି ତାହା ଜୀବାତ୍ମା । ଏହା ପ୍ରାଣୀ ଭିତରେ ଥିବା ପର୍ଯ୍ୟନ୍ତ ପ୍ରାଣୀ ସଚଳ ଥାଏ । ପୁଣି ଏହା ପ୍ରାଣୀ ଦେହରୁ ବିଦାୟ ନେଇଗଲେ ପ୍ରାଣୀ ଶବରେ ପରିଣତ ହୋଇଯାଏ । ତାର ଦେହ ମାଟିରେ ମିଶିଯାଏ, କିମ୍ବା ସେ କାହାର ଖାଦ୍ୟ ହୋଇଯାଏ । ତେବେ ଆମକୁ ମନେ ରଖିବାକୁ ପଡ଼ିବ - ଦେହଟା ଜୀବନ ନୁହେଁ । ଦେହୀ ହିଁ ଜୀବନ । ତେବେ ଏ ଜୀବନ କଣ ? କିଏ ଦେଖିଛି ଜୀବନର ସ୍ୱରୂପକୁ ? ଆଧ୍ୟାତ୍ମବାଦୀ ଦାର୍ଶନିକମାନଙ୍କ ମତରେ ଜୀବାତ୍ମା ବ୍ରହ୍ମାତ୍ମାର ଅଂଶ ବିଶେଷ । ବ୍ରହ୍ମର ଅଂଶସ୍ୱରୂପ । ପୁଣି ପ୍ରଶ୍ନ ଆସିବ ବ୍ରହ୍ମ କ'ଣ ?

ବାଦରାୟଣଙ୍କର ବ୍ରହ୍ମସୂତ୍ରରେ କୁହାଗଲା - 'ଅଥଃତୋ ବ୍ରହ୍ମ ଜିଜ୍ଞାସା ?' ସବୁବେଳେ ସବୁକାଳରେ ବ୍ରହ୍ମ ବିଷୟରେ ଜିଜ୍ଞାସା ସୃଷ୍ଟି ହୋଇଛି । କିନ୍ତୁ ସେ ଜିଜ୍ଞାସାର ଯଥାର୍ଥ ଉତ୍ତର ମିଳିନାହିଁ । କାରଣ ତାହା ଅରୂପ, ଅଣାକାର, ତାର ଆକାର ପ୍ରକାର ରୂପରଂଗ କିଛି ନାହିଁ । ତାହା କେବଳ କଳ୍ପନୀୟ । ଆମେ ଇଂରାଜୀରେ ତାକୁ ଅବ୍‌ଷ୍ଟ୍ରାକ୍ଟ କହିପାରିବା । ସେହି ବ୍ରହ୍ମର ଅଂଶ ସ୍ୱରୂପ ଜୀବାତ୍ମା ବୋଲି ଆମର ପରିକଳ୍ପନା । ତେଣୁ ବ୍ରହ୍ମ ଯେହେତୁ ଏକ ଅଦୃଶ୍ୟ ସତ୍ତା, ତାର ଅଂଶମାତ୍ର ଜୀବନ ମଧ୍ୟ ଏକ ଅଦୃଶ୍ୟ ସତ୍ତା ।

ଜୀବନ ମଧ୍ୟ ନିରାକାର । ତାର ଆକାର ପ୍ରକାର ନାହିଁ । ଦେହର ଆକାର ଅଛି, ରୂପ ଅଛି, କିମ୍ବା ଦେହୀର ତାହା ନାହିଁ । ଦେହୀ ଦେହରେ ପ୍ରବେଶ କରିବାର ଦୃଶ୍ୟ କେହି ଦେଖିପାରନ୍ତି ନାହିଁ କିମ୍ବା ଦେହରୁ ଦେହୀ ବିଦାୟ ନେବାର ଦୃଶ୍ୟ କେହି ଦେଖିପାରନ୍ତି ନାହିଁ । ବିଚାର କରଯାଏ ଏ ଜୀବନ ହିଁ ବାୟୁ ସ୍ୱରୂପ । ତେଣୁ ତାକୁ ପ୍ରାଣବାୟୁ ବୋଲି କୁହାଯାଇଛି । ପ୍ରାଣକୁ ଧାରଣ କରିଥିବା ବ୍ୟକ୍ତି ବା ପଶୁପକ୍ଷୀମାନେ ହେଉଛନ୍ତି ପ୍ରାଣୀ । ପ୍ରାଣ ହିଁ ଜୀବନ, ଜୀବନ ହିଁ ପ୍ରାଣ । ତାହା ବାୟୁ, ବାୟୁ ଅଦୃଶ୍ୟ । ବାୟୁକୁ ଆଖିରେ ଦେଖିହୁଏ ନାହିଁ, ଜୀବନକୁ ଆଖିରେ ଦେଖିହୁଏ ନାହିଁ ।

ତେବେ ଆମକୁ ସିଦ୍ଧାନ୍ତ ଦିଆଯାଇଛି ସର୍ବବ୍ୟାପୃତ ବ୍ରହ୍ମାତ୍ମାଙ୍କର ଅଂଶବିଶେଷ ଜୀବାତ୍ମା । ସରଳ ଭାଷାରେ କୁହାଯାଏ ଜୀବନ ହିଁ ଈଶ୍ୱରଙ୍କର ଅଂଶ । ତେଣୁ ଜୀବନ ହିଁ ନାରାୟଣ, ଭାଗବତରେ କୁହାଗଲା -

'ସକଳ ଘଟେ ନାରାୟଣ'

ଜୀବନର ଶେଷ ଲକ୍ଷ୍ୟ ହେଉଛି ଯେଉଁ ବ୍ରହ୍ମ ସାଗରରୁ ବିନ୍ଦୁ ଆକାରରେ ସେ ଆସିଛି, ପୁଣି ତା ସହିତ ମିଶିଯିବ । ଜୀବନ ବ୍ରହ୍ମ ସହିତ ଏକାକାର ହୋଇଯିବ ।

ଜୀବନକୁ ଜିଇଁବାକୁ ହୁଏ । କାରଣ ଜୀବହିଁ ସୃଷ୍ଟିର ଅମୂଲ୍ୟ ସଂପଦ । ଏ ଜଗତରେ ନଦୀ, ସମୁଦ୍ର, ପାହାଡ଼, ପର୍ବତ, ବନଭୂମି, ସୁନ୍ଦର ଝରଣା, ଚନ୍ଦ୍ରସୂର୍ଯ୍ୟଙ୍କର ମନୋହର କିରଣ ରାଶି ସବୁଥାଇ ଯଦି ଜୀବଜଗତ ନଥାନ୍ତା ତେବେ ଏସବୁ ସୃଷ୍ଟିର କିଛି ମୂଲ୍ୟ ନଥାନ୍ତା । କାରଣ ସମଗ୍ର ପୃଥିବୀକୁ ଭୋଗ କରିବାର ଅଧିକାର କେବଳ ଅଛି ପ୍ରାଣୀର । ଅସୁନ୍ଦରକୁ ସୁନ୍ଦର କରିବାର କଳା ଜୀବ ଜାଣିଛି । ବିଶେଷ କରି ମଣିଷ ।

ଜୀବଜଗତ ଭିତରେ ମଣିଷ ହିଁ ଶ୍ରେଷ୍ଠଜୀବ । କାରଣ ତା ଦେହରେ ଗୋଟିଏ ସ୍ୱତନ୍ତ୍ର ଗୁଣ ଅଛି, ଯାହାକୁ କୁହାଯାଏ ମାନବିକ ଗୁଣ । ତାହା ହେଉଛି କଥା କହିବା, କାନ୍ଦିବା, ହସିବା, ଚିନ୍ତାକରିବା, ବିଚାରକରି ନିଷ୍ପତ୍ତି ଗ୍ରହଣ କରିବା । ନିଜର ବୁଦ୍ଧିକୁ ବିନିଯୋଗ କରିବା । ଦାର୍ଶନିକମାନେ ସେଇ ଗୁଣଟିକୁ କହିଲେ, 'Rationality' ବା ହେତୁବାଦୀତା । ମଣିଷ ଭିତରେ ଥାଏ ସ୍ନେହ, ପ୍ରେମ, କରୁଣା, ତ୍ୟାଗ ପ୍ରଭୃତି ମହନୀୟ ଗୁଣମାନ । ସେହି ଗୁଣମାନଙ୍କ ସାହାଯ୍ୟରେ ଜୀବନକୁ ଜିଇବାକୁ ହୁଏ । ମଣିଷ ନିଜର ବୁଦ୍ଧିବଳରେ ନବନବ ଉଦ୍‌ଭାବନ କରି ପ୍ରାଣୀଜଗତକୁ ନୂଆ ଦିଗ୍‌ଦର୍ଶନ ଦିଏ । ସେଇଥିପାଇଁ ମଣିଷ ବଂଚିରହେ । ବଂଚିରହେ ଜୀବନର ମଧୁରସକୁ ଆସ୍ୱାଦନ କରିବାପାଇଁ । ସେ କେବଳ ଜୀବନର ମଧୁରସକୁ ଆସ୍ୱାଦନ କରେ ନାହିଁ । ଅନ୍ୟମାନଙ୍କୁ ମଧ୍ୟ ଆସ୍ୱାଦନ କରିବାରେ ସାହାଯ୍ୟ କରେ । ନିଜର ଜୀବନକୁ ମଧୁମୟ କରିବା

ସଂଗେସଂଗେ ଅନ୍ୟର ଜୀବନକୁ ମଧ୍ୟ ମଧୁମୟ କରିଦିଏ । ସମଗ୍ର ଜଗତକୁ ମଧୁମୟ କରିବାର ଶକ୍ତି କେବଳ ଅଛି ମଣିଷର । ସେଇଥିପାଇଁ ମଣିଷ ଜିଇଁଛି । ମଣିଷ ନ ଜିଇଁଲେ ସମଗ୍ର ଜଗତ ଅରଣ୍ୟରେ ପରିଣତ ହୋଇଯାଆନ୍ତା । କୋଠା ଘରଟିଏ ପରିତ୍ୟକ୍ତ ହୋଇ ଦୀର୍ଘଦିନ ପଡ଼ିରହିଲେ ତା ଚାରିପାଖରେ ଜଂଗଲ ସୃଷ୍ଟି ହୋଇଯାଏ । ସେହିପରି ମଣିଷ ବ୍ୟବହାର କରୁଥିବା ଏ ପୃଥିବୀର ଯତ୍ନ ନନେଲେ ପୃଥିବୀ ସାରା ବଣଜଂଗଲରେରେ ପୂରିଯାଆନ୍ତା । କାରଣ ଅସୁନ୍ଦରକୁ ସୁନ୍ଦର, ଅପରିଷ୍କାରକୁ କରିବାର କଳା କେବଳ ମଣିଷକୁ ଜଣା । ଇତରପ୍ରାଣୀମାନେ ପୃଥିବୀକୁ ଅପରିଷ୍କାର କରିଜାଣନ୍ତି, ପରିଷ୍କାର କରିଜାଣନ୍ତି ନାହିଁ । ତେଣୁ ପୃଥିବୀକୁ ସରସ ସୁନ୍ଦର କରିବାପାଇଁ ମଣିଷ ଜିଇଁରହିବା ଉଚିତ୍ । ମଣିଷ ଜିଇ ନ ରହିଲେ ପୃଥିବୀ ତାର ସମସ୍ତ ସୌନ୍ଦର୍ଯ୍ୟ ହରାଇ ବସିବ ।

ଏ ଜୀବନର ଅର୍ଥବ୍ୟାପକ, ଉପରେ କୁହାଗଲା ପୃଥିବୀକୁ ସରସ ସୁନ୍ଦର କରିବାର ଗୁରୁଦାୟିତ୍ୱ ମଣିଷର, ମଣିଷଠାରୁ ଆରମ୍ଭ କରି କୀଟପତଙ୍ଗ ପର୍ଯ୍ୟନ୍ତ ସମସ୍ତ ପ୍ରାଣୀଙ୍କ ଭିତରେ ସ୍ନେହ, ମମତା ଓ ପ୍ରେମ ବାଣ୍ଟିଦେବାର ଦାୟିତ୍ୱ କେବଳ ମନୁଷ୍ୟର, ଯେଉଁ ଜୀବନ ଜଗତର ଜୀବମାନଙ୍କ ଭିତରେ ସ୍ନେହ, ମମତା, ପ୍ରେମ, ପ୍ରୀତି ଓ କରୁଣା ବିତରଣ କରି ମାଟିର ଧରାକୁ ସ୍ୱର୍ଗରେ ପରିଣତ କରିବାପାଇଁ ଉଦ୍ୟମ କରେ ସେଇ ଜୀବନହିଁ ସାର୍ଥକ ଜୀବନ, ଭଲଜୀବନ, ସେଇ ଜୀବନ ହିଁ ଦିବ୍ୟଜୀବନ । ଯେଉଁ ମଣିଷ ନାମକ ଜୀବନଟି ଦେଶ, ଜାତି, ତା ଚାରିପାଖରେ ଥିବା ପ୍ରାଣୀଜଗତ ପାଇଁ ନିଜକୁ ଉତ୍ସର୍ଗ କରିପାରେ, ସେଇ ଜୀବନଟିତ ଶ୍ରେଷ୍ଠ ଜୀବନ । ଏବେ ପ୍ରଶ୍ନ ଉଠିବ ଏ ଜୀନବର ଶେଷ କେଉଁଠି ? ଆମ ଦର୍ଶନ ଶାସ୍ତ୍ର କହେ ଜୀବନର ମୃତ୍ୟୁ ନାହିଁ । କାରଣ ଜୀବାତ୍ମା ଜନ୍ମନିଏ ନାହିଁ କି ମରେନାହିଁ । ଜୀବାତ୍ମା କେବଳ ଗୋଟିଏ ଦେହରୁ ବିଦାୟ ନେଇ ଆଉ ଗୋଟିଏ ଦେହରେ ପ୍ରବେଶ କରିଯାଏ । କିନ୍ତୁ ଲୌକିକ ଦୃଷ୍ଟିକୋଣରୁ ବିଚାରକଲେ, ଦେଖାଯିବ ପ୍ରାଣୀର ଜନ୍ମ ଯେପରି ସତ୍ୟ, ମୃତ୍ୟୁ ସେହିପରି ସତ୍ୟ ।

ଜାତସ୍ୟ ହିଁ ଧ୍ରୁବଂ ମୃତ୍ୟୁଃ

ଜନ୍ମ ହେଉଥିବା ପ୍ରାଣୀଟି ନିଶ୍ଚୟ ମରିବ । ମୃତ୍ୟୁପରି ସତ୍ୟ ବୋଧହୁଏ ଆଉ କିଛିନାହିଁ । ମାଟି ଉପରେ ମୃତ୍ୟୁର ସମ୍ମୁଖୀନ ହେବାକୁ ହୁଏ ବୋଲି ତ ମାଟିର ଅନ୍ୟନାମ ମର୍ତ୍ତ୍ୟ । କୁହାଗଲା -

ମର୍ତ୍ତ୍ୟମଣ୍ଡଳେ ଦେହ ବହି
ଦେବତା ହୋଇଲେ ମରଇ ।

ଦାର୍ଶନିକ ଦୃଷ୍ଟିକୋଣରୁ ବିଚାରକଲେ ମୃତ୍ୟୁ ସହିତ ଜୀବନର ମୋଟେ ସଂପର୍କ ନାହିଁ । ମୃତ୍ୟୁର ସଂପର୍କ କେବଳ ଦେହ ସହିତ । କିନ୍ତୁ ଲୌକିକ ଦୃଷ୍ଟିକୋଣରୁ ବିଚାରକଲେ ଦେଖାଯିବ ଜୀବନକାଳର ଶେଷମୁହୂର୍ତ୍ତଟି ହିଁ ମୃତ୍ୟୁ । କବି ମଧୁସୂଦନଙ୍କ ଭାଷାରେ -

ରେ ଆତ୍ମନ ! ନିଦ୍ରା ପରିହରି<br>
ଫେଡ଼ିଦେଖ ବନ୍ତାର ଲୋଚନ ।<br>
ନିଃଶବ୍ଦେ ଜୀବନସ୍ରୋତ ଧାଇଁଛି କିପରି<br>
ଭେଟିବାକୁ ମୃତ୍ୟୁସିନ୍ଧୁ କରାଳ ଲହରୀ ।

କବିଙ୍କ ବିଚାରରେ ମୃତ୍ୟୁ ଏକ ସାଗର । ତାର ଲହରୀ ଅତ୍ୟନ୍ତ ଭୟଙ୍କର ଏବଂ କରାଳ । ଜୀବନ ହେଉଛି ନଦୀସ୍ରୋତ । ସେଇ ଜୀବନ ନଦୀସ୍ରୋତ ଅନବରତ ମୃତ୍ୟୁସିନ୍ଧୁ ଆଡ଼କୁ ଧାଇଁଥାଏ । ତା ସହିତ ଏକାକାର ହୋଇଯିବା ପାଇଁ ।

ମଣିଷ ଏକ ସାମାଜିକ ପ୍ରାଣୀ । ମଣିଷକୁ ନେଇ ଏ ସମାଜ ଗଠିତ । ସମାଜକୁ ସରସ ସୁନ୍ଦର କରିବାପାଇଁ ଦିବ୍ୟଜୀବନମାନେ ଅର୍ଥାତ୍ ମହାପୁରୁଷମାନେ ଅନବରତ ଉଦ୍ୟମ କରିଯାଇଛନ୍ତି । ସେଇଥିପାଇଁ ମଣିଷର ଦେହ ଧରାପୃଷ୍ଠରୁ ଯିବାପରେ ମଧ୍ୟ ଦିବ୍ୟମଣିଷ ମାନଙ୍କର ଜୟଗାନ କାଳକାଳଧରି ହୋଇ ଆସିଛି । ଜଣେ କବି କହିଛନ୍ତି -

ମଣିଷ ମରଇ ଏଠି ଦେବତା ବି ମରେ<br>
ସାର୍ଥକ ଜୀବନ ତାର ଯାହାପାଇଁ ଗୋଡ଼ିମାଟି ଝୁରେ ।

ସମାଜକୁ ଜୀବନ ଅଭିମୁଖୀ କରାଇବାପାଇଁ ବ୍ୟକ୍ତି ନିଜର ଉଦ୍ୟମ କରିବା ଉଚିତ । ସାମାଜିକ କାର୍ଯ୍ୟମାନଙ୍କରେ ସ୍ୱାର୍ଥରହିତ ହୋଇ ସକ୍ରିୟ ଭୂମିକା ଗ୍ରହଣ କଲେ, ସମାଜ ଚଳଚଞ୍ଚଳ ହୋଇଯାଏ । ସମାଜ ଆଗକୁଯାଏ ତାର ଦିବ୍ୟ ବ୍ୟକ୍ତିତ୍ୱମାନଙ୍କର ଉଦ୍ୟମରେ । କାରଣ ବ୍ୟକ୍ତିକୁ ଛାଡ଼ି ସମାଜର ପରିକଳ୍ପନା କରାଯାଇପାରେ ନାହିଁ । ବ୍ୟକ୍ତିମାନଙ୍କର ସମଷ୍ଟି ହିଁ ତ ସମାଜ । ତେଣୁ ବ୍ୟକ୍ତିମାନେ ଯେତେ ଉତ୍ତମ କାର୍ଯ୍ୟାମୁଖୀ ହେବେ, ସମାଜର ରୂପ ସେତିକି ସୁନ୍ଦର ଓ ଉଜ୍ଜ୍ୱଳ ହୋଇ ଉଠିବ ।

ଜୀବନର ଅବଧି କମ୍ ହୋଇପାରେ । କିନ୍ତୁ ବ୍ୟକ୍ତିର କାର୍ଯ୍ୟ ହିଁ ତାକୁ ଅମର କରିଦିଏ । ଏ କ୍ଷେତ୍ରରେ ଜୀବନ ବ୍ୟକ୍ତିଠାରୁ ବିଦାୟ ନେଇଥିଲେ ମଧ୍ୟ ଜୀବନର ଏକ ପ୍ରତିବିମ୍ବ ସମାଜ ଦର୍ପଣରେ କାଳକାଳ ଧରି ଝଲସୁଥାଏ । ସେହିପରି ଜୀବନଟିଏ ବଞ୍ଚିବା ଉଚିତ୍ ।



# ଶ୍ରଦ୍ଧା, ପ୍ରୀତି ଓ ମୈତ୍ରୀର ସରଣୀରେ ସେହି ମଣିଷଟି

ଅପୂର୍ବ ରଞ୍ଜନ ରାୟ

ସଂଗ୍ରାମମୟ ଜୀବନ ଚିରକାଳ ସ୍ମରଣୀୟ ହୋଇରହେ । ଯେଉଁଠି ସଂଗ୍ରାମ ଓ ସଂଘର୍ଷ ନାହିଁ, ସେଠାରେ ଜୀବନ ତା'ର ଆତ୍ମ ପରିଚୟ ହଜାଇଦିଏ । ବିଶ୍ୱରେ ଯେଉଁମାନେ ନମସ୍ୟ, ଯେଉଁମାନଙ୍କ ଠାରେ ସୁଗୁଣ ରହିଛି ବୋଲି ଅନୁଭବ କରାଯାଏ, ସେମାନଙ୍କ ଜୀବନ ନିଶ୍ଚୟ ସଂଗ୍ରାମମୁଖର । ସଂଗ୍ରାମୀ ହିଁ ସମାଜରେ ନୂତନ ଦିଗନ୍ତର ସନ୍ଧାନ ଦେବାକୁ କ୍ଷମ ହୁଏ । ବିଶ୍ୱ ଇତିହାସରେ ଏହାର ଭୂରିଭୂରି ପ୍ରମାଣ ରହିଛି । ଅବଶ୍ୟ ଏହି ସଂଗ୍ରାମ ପାଇଁ ବ୍ୟକ୍ତିକୁ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହେବାକୁ ପଡ଼େ । ତଥାପି ବ୍ୟକ୍ତି ତାର ଆଦର୍ଶ ପାଇଁ, ସେ ନିଜକୁ ଆଦର୍ଶବାଦୀ କରିବା ଲାଗି ଆପ୍ରାଣ ଉଦ୍ୟମ କରେ । ସେହି ଆଦର୍ଶ, ନୀତିନିଷ୍ଠ ଜୀବନ ପାଇଁ ସେ ହୁଏ ନମସ୍ୟ, ସ୍ମରଣୀୟ । ମାତ୍ର ସେପରି ଜୀବନ ପଛରେ କେତେ ସଂଗ୍ରାମ, କେତେ ଲୁହଲହୁର କାହାଣୀ ଓ ପ୍ରତିବାଦର ଅସୁମାରି ସ୍ୱର ଶୁଣାଯାଇଥାଏ, ତାହା ସହଜାରେ ଜାଣିହୁଏ ନାହିଁ । ଏପରି ଲୋକଙ୍କ ଦୃଷ୍ଟିରେ ଜ୍ଞାନ ଓ କର୍ମର ପ୍ରଭେଦ ନଥାଏ । ସିଏ ଜ୍ଞାନୀ ଭାବରେ ଏହି ଦୁଇଟିକୁ ଏକକରି ଦେଇଥାଆନ୍ତି ।

'ସାଂଖ୍ୟ ଯୋଗୌ ପୃଥଗ୍ ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ

ଏକମପ୍ୟାସ୍ଥିତଃ ସମ୍ୟଗ୍ ଉଭୟୋ ବନ୍ଦନ୍ତେ ଫଳମ୍ ॥'

ଏହାର ଉଦାହରଣ ସାହିତ୍ୟ, ସମାଜ, ସଂସ୍କୃତି, ଧର୍ମଧାରା, ଯୁଦ୍ଧବିଗ୍ରହ ଓ ମୁକ୍ତିସମରରେ ଦୃଷ୍ଟିଗୋଚର ହୋଇଥାଏ । ସଂଗ୍ରାମ ବିନା କୌଣସି କ୍ଷେତ୍ରରେ ସଫଳତା ଆସେନାହିଁ । ଆସିବା ସମ୍ଭବପର ନୁହେଁ । ସଂଗ୍ରାମ ଯୁଦ୍ଧକ୍ଷେତ୍ରରେ କେବଳ ହୁଏନାହିଁ, ପ୍ରତି ମୁହୂର୍ତ୍ତରେ ମନୁଷ୍ୟ ସଂଗ୍ରାମର ସମ୍ମୁଖୀନ ହୁଏ । ସେହି ସଂଗ୍ରାମର ମୁକାବିଲା କରିପାରିବା ଯଥାର୍ଥ ପୌରୁଷ । ପୁରାଣଯୁଗରେ ଏହାର ଦୃଷ୍ଟାନ୍ତ ଦେଖାଯାଇଥିଲା । ଯେତେବେଳେ କର୍ଣ୍ଣ, ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିକଟକୁ ବିଦ୍ୟା ଶିକ୍ଷା କରିବାକୁ ଯାଇଛନ୍ତି, ସେତେବେଳେ ଦ୍ରୋଣ ତାଙ୍କୁ ଶିଷ୍ୟ ଭାବରେ ଗ୍ରହଣ କରିନାହାନ୍ତି । ବରଂ ମୁହେଁମୁହେଁ କହିଦେଲେ ଯେ, ଯେହେତୁ କର୍ଣ୍ଣ ନୀଚକୁଳରେ ଜନ୍ମ ହୋଇଛି, ତାକୁ ଶିଷ୍ୟରୂପେ ସେ ଗ୍ରହଣ କରିପାରିବେ ନାହିଁ । କର୍ଣ୍ଣ ଆଉ ପଦଟିଏ ପ୍ରତିବାଦ ନକରି ଫେରି ଆସୁଥିବା ବେଳେ କହି ଆସିଲେ -

'ଦୈବାୟତ୍ତଂ କୁଳେ ଜନ୍ମ
ମଦାୟତ୍ତଂ ଚ ପୌରୁଷମ୍ ।'

ଅର୍ଥାତ୍ କିଏ କେଉଁ କୁଳରେ ଜନ୍ମ ଲାଭ କରିବ, ତାହା ସିନା ଦୈବର ଅଧୀନ, ମାତ୍ର ପୁରୁଷତ୍ୱ ପ୍ରଦର୍ଶନ କରି, ସୁପୁରୁଷ ରୂପେ ପରିଚିତ ହେବା ନିଜର ଅଧୀନ । ନିଜ କୃତିତ୍ୱ ପ୍ରଦର୍ଶନ କରିପାରିବା ନିଜ ଉପରେ ନିର୍ଭର କରେ । ବାସ୍ତବରେ ଏହା ସମ୍ଭବ ହୋଇଥିଲା କର୍ଣ୍ଣ ନିଜ ଉପରେ ଆସ୍ଥାରଖି ବୀରଶ୍ରେଷ୍ଠ କର୍ଣ୍ଣରେ ପରିଣତ ହୋଇପାରିଥିଲେ । ସେହି ସଂଗ୍ରାମମୁଖର କାହାଣୀ କେବଳ କର୍ଣ୍ଣଙ୍କ ପାଇଁ ନୁହେଁ, ପ୍ରତ୍ୟେକ ମନୁଷ୍ୟ ପାଇଁ ଅନୁକରଣୀୟ ।

ସତ୍ୟନିଷ୍ଠ ମହାତ୍ମାଗାନ୍ଧୀଙ୍କ ପରି ସଂଗ୍ରାମୀ ପୁରୁଷ ବିଶ୍ୱରେ ବିରଳ । ସେ ପୂଜ୍ୟ ହେବାମୂଳରେ ସଂଗ୍ରାମର ପଥ ନିହିତ । ଏହି ପଥର ସେ ଯାତ୍ରୀ ହୋଇଥିବା ଯୋଗୁଁ, ପଥରରେ କଷା ହେବାପରି ତାଙ୍କ ଜୀବନ କଷି ହୋଇଥିଲା । ଇନ୍ଦ୍ରିୟମାନେ ତାଙ୍କ ଅଧୀନରେ ରହିଥିଲେ । ଇନ୍ଦ୍ରିୟର ବଶବର୍ତ୍ତୀ ହୋଇ ସେ ଚାଲି ନଥିଲେ । ଇନ୍ଦ୍ରିୟମାନେ ତାଙ୍କୁ ଭୟଭୀତ କରାଇ ପାରିନଥିଲେ । ଇନ୍ଦ୍ରିୟାତୀତ ଜୀବନଯାପନ କରିବା ଦିଗରେ ସେ ଯେଉଁ ଉତ୍ସାହ ଓ ପ୍ରେରଣା ପାଇଥିଲେ, ତାର ପଟାନ୍ତର ନାହିଁ । ସେ କେବଳ ମାତ୍ର ଈଶ୍ୱର ଉପରେ ନିର୍ଭର କରି, ସତ୍ୟର ସନ୍ଧାନୀ ହୋଇଥିଲେ । ୧୯୩୧ ମସିହା ଡିସେମ୍ବର ୩୧ ସଂଖ୍ୟା 'ୟଙ୍ଗ ଇଣ୍ଡିଆ'ରେ ସେ ଲେଖିଥିଲେ - 'ମୋର ଚତୁର୍ଦ୍ଦିଗରେ ଯାହା ଘଟୁଛି, ସେସବୁର ପରିବର୍ତ୍ତନ ଅନୁଭବ କରୁଛି । ସେସବୁର କ୍ଷୟ ଘଟୁଥିବା ମୁଁ ଲକ୍ଷ୍ୟ କରୁଛି । ତେବେ ଏହି ପରବର୍ତ୍ତନ ପଛରେ ଏକ ଶକ୍ତି ରହିଛି, ଯାହା ଆଦୌ ପରିବର୍ତ୍ତିତ ହୁଏନାହିଁ । ସବୁକୁ ସେ ଧରି ରଖିଥାଏ । ଯିଏ ସୃଷ୍ଟି, ସ୍ଥିତି ଓ ବିଲୟର ଏକମାତ୍ର ଶକ୍ତି, ତାହା ହେଉଛି ଆତ୍ମା । ସେ ଆମ ନିକଟରେ ପରମେଶ୍ୱର ଭାବରେ ବିଦ୍ୟମାନ । ଏହାର ନିକଟତର ହେବା ସାଧନା ସଂଗ୍ରାମ । ସେ ସଂଗ୍ରାମ କେବେ ଇନ୍ଦ୍ରିୟମାନଙ୍କ କବଳରେ ମଣିଷ ଥିବାଯାଏ ସମ୍ଭବପର ହେବନାହିଁ । ପୁଣି ଇନ୍ଦ୍ରିୟମାନଙ୍କ ଯୋଗୁଁ ଯାହା କରାଯିବ, ଯାହା ଦେଖାଯିବ ତାହା ଚିରସ୍ଥାୟୀ ନୁହେଁ । ମାତ୍ର ଏହାଠୁ ଊର୍ଦ୍ଧ୍ୱକୁ ଯାଇପାରିଲେ, ଯିଏ ଦୃଶ୍ୟମାନ ହେବେ ସେହି କେବଳ ସ୍ଥାୟୀ । ତାହା ଚିରନ୍ତନ ।

ବାସ୍ତବିକ ସେହି ଶକ୍ତି ଆହରଣ ପାଇଁ ଗାନ୍ଧିଜୀ କେତେ ସଂଗ୍ରାମ ନ କରିଛନ୍ତି । ସାଧାରଣ ମଣିଷ ଇନ୍ଦ୍ରିୟର ବଶବର୍ତ୍ତୀ ହୋଇଥିବାବେଳେ, ସେ ସଂଗ୍ରାମକରି ତା' କବଳରୁ ମୁକ୍ତି ପାଇଛନ୍ତି । ସେ ଶେଷରେ ହୃଦୟଙ୍ଗମ କରିଛନ୍ତି, କେବଳ ଇନ୍ଦ୍ରୟମୁକ୍ତି ଯଥେଷ୍ଟ ନୁହେଁ । ଜୀବନ ଭିତରେ ସେହି ଶକ୍ତି ସଂଚାର କରିବାକୁ ପଡ଼ିବ । ମୃତ୍ୟୁ ଭିତରେ

ଜୀବନ, ସତ୍ୟ ଅସତ୍ୟ ପଥରେ ସତ୍ୟର ସନ୍ଧାନ ସମୟ ସାପେକ୍ଷ । ଅନ୍ଧକାରକୁ ଘୃଣାକଲେ ହେବନାହିଁ, ଏଠାରେ ଆଲୋକ ଜାଳିବାକୁ ପଡ଼ିବ । ଈଶ୍ୱରଙ୍କୁ ପ୍ରେମ କରବିାକୁ ହେବ । ଏହି ପ୍ରେମ ପଥଟିକୁ ବାଛିବା ପାଇଁ ଅନେକ କଣ୍ଟକିତ ପଥ ଭିତରେ ଗତି କରିବାକୁ ହେବ । ସେତେବେଳେ ସେହି ପ୍ରେମ ପଥର ଯାତ୍ରୀ ଈଶ୍ୱରଙ୍କ ସାନିଧ ପାଇବାକୁ ସକ୍ଷମ ହୁଏ । ଶ୍ରୀମଦ୍ ଭଗବତ୍ ଗୀତାରେ କୁହାଯାଇଛି –

'ତେଷାଂ ସତତ୍ ଯୁକ୍ତାନାଂ ଭଜତାଂ ପ୍ରୀତି ପୂର୍ବକମ୍ ।
ଦଦାମି ବୁଦ୍ଧିଯୋଗ ତଂ ଯେନ ମାମୁପଯାନ୍ତି ତେ ॥'

ଗୌତମ ବୁଦ୍ଧ, ଯୀଶୁଖ୍ରୀଷ୍ଟ, ଆଚାର୍ଯ୍ୟ ଶଙ୍କର, ସାଧକ ଶ୍ରୀ ଅରବିନ୍ଦ, ପରମ ପୁରୁଷ ଶ୍ରୀରାମକୃଷ୍ଣ ସର୍ବୋପରି ବିଶ୍ୱବରେଣ୍ୟ ସ୍ୱାମୀ ବିବେକାନନ୍ଦ, ସତ୍ୟର ସାନ୍ନିଧ ପାଇଁ ସଂଗ୍ରାମୀ ହୋଇଛନ୍ତି । ସାଧାରଣ ଜୀବନରେ ସତ୍ୟର ଦର୍ଶନ ଆଦୌ ସମ୍ଭବପର ନୁହେଁ । ମନ୍ଦ ସହିତ ଲଢ଼େଇ କରିବାକୁ ହୋଇଚି ମନ୍ଦ ବିରୁଦ୍ଧରେ ନିର୍ଭୀକ ରୂପେ ସ୍ୱର ଉତ୍ତୋଳନ କରାଯାଇଛି । ଅସୁନ୍ଦର ପାଇଁ ଆଦୌ ପଛଘୁଞ୍ଚା ନଦେଇ, ସେହି ଭୂମିକୁ ସୁନ୍ଦର କରାଯାଇଛି । ବିନା ସଂଗ୍ରାମରେ ଅଦୃଶ୍ୟ ଦେବତା ଦୃଶ୍ୟ ହୋଇନାହାନ୍ତି । ଭକ୍ତ କୃଚ୍ଛ୍ର ସାଧନା କରିଚାଲିଛି । ସମୟ, ସମସ୍ୟା ତାର ବାଧକ ହେବନାହିଁ । ଲକ୍ଷ୍ୟ ସେ ତା'ର ଆରାଧ ଦେବତାଙ୍କ ସାନ୍ନିଧ ପାଇବ । ଏହି ଦୃଢ଼ ବିଶ୍ୱାସ ତା' ମନ ଭିତରେ ଥାଏ –

'ତୁମି ଆମାର ଆପନ, ତୁମି ଆଛ ଆମାର କାଛେ
ଏଇ କଥାଟି ବଲତେ ଦାଓ ହେ ବଲତେ ଦାଓ ।'

('ଗୀତାଞ୍ଜଳି' ରବୀନ୍ଦ୍ର ନାଥ ଠାକୁର)

ସତରେ ଜୀବନକୁ ଏକ ସ୍ପନ୍ଦନ ଭାବରେ ଗ୍ରହଣ କରାଯାଉ ।

ଏହା ଏକ ଆବେଗ ଏକ ଉଲ୍ଲାସର ମନ୍ତ୍ରମୁଗ୍ଧ ଉଚ୍ଚାରଣ । ସେହି ଆବେଗ ଭିତରେ ମଣିଷ ବଞ୍ଚି ରହିବ । ସେଇଠି ପୁଲକର ପୁଷ୍ପ ପ୍ରସ୍ଫୁଟିତ ହେବ । ଉଲ୍ଲସିତ ଜୀବନ ସମାଜକୁ କୋଳେଇ ନେବ । ପ୍ରତିବେଶୀମାନଙ୍କୁ ଆଲିଙ୍ଗନ କରିପାରିବ । ନିଜଘର ନିକଟରେ ଅନ୍ୟ ଜଣକର ଆକର୍ଷଣୀୟ ପ୍ରାସାଦଟିଏ ଦେଖି ଖୁସିହେବ । ସ୍ୱଚ୍ଛ ଜୀବନ ପ୍ରବାହ ସଫଳତାର ମାପକାଠି । ଅନେକ ରସବୋଧ ନେଇ ଜୀବନ ଗତି କରିଥାଏ । ସେଠି ପ୍ରୀତିଉଚ୍ଛ୍ୱାସ ଯେପରି ଉଲ୍ଲସି ଉଠିବ, ସୌନ୍ଦର୍ଯ୍ୟର ଅଶିବ ପ୍ରାଣସତ୍ତା ସେପରି ହୃଦୟକୁ ବାନ୍ଧି ରଖିବ । ଦୟା ଓ କରୁଣାର ଅନନ୍ୟ ମାନସିକତା, ଜୀବନରେ ପରିପୂର୍ଣ୍ଣ ହୋଇପାରିବ । ସମାଜ ଅନୁରାଗୀ ହେବା ମଣିଷ ପାଇଁ ବଡ଼ ସାଧନା । ଏପରି ଅନୁରକ୍ତି ସମସ୍ତଙ୍କୁ ଆକୃଷ୍ଟ କରିପାରେ ନାହିଁ । ସମାଜକୁ ଭଲ ପାଇଥିବା ମନୀଷୀମାନେ ପ୍ରେମର

ଯଥାର୍ଥ ସଂଜ୍ଞା ଅନୁଭବ କରିଥାଆନ୍ତି । "A thing of beauty is joy for ever" ଏହାକୁ କିଏ ବା ସ୍ୱାଗତ ନକରେ । ପ୍ରେମିକ ଭାବରେ ପ୍ରେମିକା ପାଇଁ ବ୍ୟାକୁଳତା ପ୍ରକାଶ କରିବା, ସୌନ୍ଦର୍ଯ୍ୟର ଉପାସନାରେ ବିଭୋର ହେଉଥିବା ସୌନ୍ଦର୍ଯ୍ୟପିପାସୁର ତୃପ୍ତିରେ ତୃପ୍ତ ହେବା, ମୁକ୍ତି ସଂଗ୍ରାମରେ ପ୍ରାଣବଳୀ ଦେବାର ଉତ୍ସାହକୁ ବିରୋଧ ନ କରିବା ଉଚିତ । କାରଣ ଏହି ସକାରାତ୍ମକ ଚିନ୍ତନ ଜୀବନରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ପରମେଶ୍ୱରଙ୍କୁ ଭକ୍ତିକରି ତାଙ୍କ ପ୍ରେମରେ ତଲ୍ଲୀନ ହୋଇଥିବା ଭକ୍ତକୁ ତା' ପଥରୋଧ କରାନଯାଉ । ସେ ଭକ୍ତି ଓ ସମର୍ପଣରେ ଆନନ୍ଦ ପାଇଥାଏ । ତା' ଆଗରେ ପରମଶ୍ୱେରଙ୍କ ନିନ୍ଦାଗାନ କରି ଭକ୍ତ ମନରେ ଭିନ୍ନ ଚିନ୍ତା ସୃଷ୍ଟି କରାଯିବା ଉଚିତ ନୁହେଁ । ସ୍ତୁତିଗାନ ଲାଗି ଅନ୍ୟ ଜଣେ ଆଗ୍ରହୀ ନହୋଇପାରେ । ତେବେ ନିନ୍ଦାଗାନ ପାଇଁ ଉତ୍ସାହିତ ହେବା କର୍ତ୍ତବ୍ୟ ନୁହେଁ ।

ମଣିଷ କେବେ ଭାଂଗିପଡ଼ିବା ଉଚିତ ନୁହେଁ - ସେ ନଇଁଯିବା ତା' ପାଇଁ ଶୁଭଙ୍କର ନୁହେଁ । ପ୍ରେମ, ସଂଘର୍ଷ ଓ ଜୀବନ ଭିତରେ ସମନ୍ୱୟ ଆଣିପାରିବା ମଣିଷଟି ଏ ସଂସାରରେ ସୁଖୀହୁଏ । ମଣିଷ ସଂସାର କରି ସୁଦ୍ଧା ସେ ସଂସାରୀ ମନେ କରିବ ନାହିଁ । ସେ ହୋଇପାରେ ସଂସାର ପ୍ରତି ବହୁ ଅନାସକ୍ତ । ଆସକ୍ତହୀନ ଜୀବନ ସକାରାତ୍ମକ ବିଭବକୁ ଆଲିଙ୍ଗନ କରିଥାଏ । ସଂସାରଛଡ଼ା ହୋଇ ସୁଦ୍ଧା ସେ କାହାଠୁ ଦୂରେଇ ଯାଏନାହିଁ । ସେ ସଂଶୟ, ଅସୂୟା ଭିତରେ ନିମଗ୍ନ ହୋଇଯାଏ । ବେଳେବେଳେ ଏଥିପାଇଁ ତାକୁ ବୁଝିହୁଏନାହିଁ । ସେ ଅବୁଝା ମନୋଭାବ ଯୋଗୁଁ ଅନ୍ୟମାନଙ୍କ ସହିତ ନିଜକୁ ସାଲିସ୍ କରିପାରେନାହିଁ । ସକାରାତ୍ମକ ଚିନ୍ତାଧାରାରେ ସେ ଜୀବନର ରହସ୍ୟ ଖୋଜେ - ତେବେ ସେଠାରେ ନାସ୍ତିବାଚକ ସ୍ୱର ଶୁଣିପାରେ ନାହିଁ ଶୁଣିବାପାଇଁ ଆଗ୍ରହୀ ହୁଏ ନାହିଁ । ସକାରାତ୍ମକ କର୍ମ ଆୟତ୍ତ ଏକ ସାଧନା । ସମାଜ ବା ଚରିତ୍ର କେବଳ ନାସ୍ତିବାଚକ, ଏହା ଭାବିବା ଯଥାର୍ଥ ନୁହେଁ । ଅବଶ୍ୟ ଏପରି ମଣିଷଙ୍କ ପାଇଁ ଅନେକ ଶତ୍ରୁ ବାହାରି ପଡ଼ନ୍ତି । ଏମାନେ ଅସୂୟା ପ୍ରବଣ ହୋଇପଡ଼ନ୍ତି । ସେପରି ସକାରାତ୍ମକ ଚିନ୍ତାଧାରା ପାଇଁ ତାକୁ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥାଏ । ସେ ସବୁଗୁଣର ପାଳନାଧିକାରୀ ହୋଇଥାଏ । ଯଥାର୍ଥରେ ଉଲ୍ଲେଖ ରହିଛି -

'ସର୍ବତଃ ପାଣିପାଦଂ ତତ୍ ସର୍ବତୋ କ୍ଷିଶିରୋମୁଖମ୍
ସର୍ବତଃ ଶ୍ରୁତିମାଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ।' (ଶ୍ରୀମଦ୍ ଭଗବତ ଗୀତା)

ସେହି ଚିନ୍ତାଧାରା ପାଇଁ ସେ ସମାଜରେ ନିନ୍ଦିତ, ଅପମାନିତ ହେଲେ ସୁଦ୍ଧା ଦୁଃଖିତ ହୁଏନାହିଁ । ଏ ସଂସାରକୁ ସେ ଅମୃତମୟ ମନେକରେ । ପରମେଶ୍ୱରଙ୍କ ସୃଷ୍ଟିରେ

ସେ ଅମୃତର ସନ୍ତାନ ଅମୃତ ସନ୍ଧାନ ତାର ଲକ୍ଷ୍ୟ । ଏହି ଚିନ୍ତାରେ ବଞ୍ଚି ରହୁଥିବା ମଣିଷ ପାଇଁ ଦୁଃଖ ଆସେନାହିଁ । ଏପରିକି ଦୁଃଖ ସୁଖ, ଆନନ୍ଦ, ବିଷାଦ, ଏହା ଏକାପରି ଲାଗେ ।

ନିଜ ଆଦର୍ଶରେ ଅବିଚଳିତ ରହି, ଯିଏ ଆପଣାକୁ ଦେଖେ - ଆପଣାର ଭିତରକୁ ସେ ଚାହିଁବସେ, ସେଇଠୁ ସେ ବାସ୍ତବତାର ସନ୍ଧାନୀ ହୋଇ, ଆପଣାର ଅସଲ ପରିଚୟଟି ଦେଇଯାଏ । ସେହି ପରିଚୟକୁ ଆଧାର କରି ଅନ୍ୟକୁ ସେ ଚିହ୍ନିବାକୁ ଚେଷ୍ଟାକରେ । ସେ ନିଜକୁ ଭଲପାଇ, ଶ୍ରଦ୍ଧାକରି, ଆପଣା ପରିଚୟ ଖୋଜିବା ପରି, ଅନ୍ୟର ପରିଚୟ ପାଇବା ଲାଗି ସେପରି ଶ୍ରଦ୍ଧା ଓ ଆପଣାରପଣଟିକୁ ଅଜାଡ଼ିଦିଏ । ଅନ୍ୟକୁ ସେ ସନ୍ଦେହ ଦୃଷ୍ଟିରେ ଦେଖେନାହିଁ । ଏପରିକି ତା ବଇରୀମାନଙ୍କୁ ସେ ବନ୍ଧୁତା ପଣରେ ଦେଖିବସେ । ସେମାନଙ୍କ ପ୍ରତି ଶ୍ରଦ୍ଧା ଟିକିଏ ଊଣା ହୁଏନାହିଁ । ଥରେ ନାସ୍ତିସୂଚକ ଚିନ୍ତା ଜାଗ୍ରତ ହେବାମାତ୍ରେ, ଏ ଦୁନିଆ ଓ ଚରିତ୍ରମାନେ ସମସ୍ତେ ଶତ୍ରୁ ହୋଇଉଠନ୍ତି । ମଣିଷ ଟିକିଏ ସ୍ନେହୀ ହେଉ, ସେତେବେଳେ ସଂସାର ସ୍ରୋତରେ ଅନାବିଳା ଭାବେ ପହଁରି ପାରିବ । ଅନ୍ୟମାନଙ୍କୁ ତା' ସହିତ ପହଁରିବା ପାଇଁ କୂଳରୁ ଆଲିଙ୍ଗନ କରିବ ।

ସକାରାତ୍ମକ ମଣିଷଟିଏ କଳାକାର ହୋଇଯାଏ - ତା' କଳାମୟ ଜୀବନ ଏକ ଭିନ୍ନ ଭାବରେ ପ୍ରତିଭାତ ହୋଇଥାଏ । ସେଠି ଶୁଣିବାକୁ ମିଳେ - "Art searches intensely the way for the development of man and upholds the humanistic ideal which considers man to be superme value. (Aesthetics - ୟୁରି ବୋରେଭ) ଭିନ୍ନ ସ୍ୱାଦରେ ଗୋଟିଏ ଚରିତ୍ର ଚଳପ୍ରଚଳ କରିବାବେଳେ, ତା ପାଇଁ ନକାରାତ୍ମକ ଚିନ୍ତା ସୃଷ୍ଟି କରାନଯାଉ । ଅନେକ ଚରିତ୍ର ବହୁ ମନ ଓ ହୃଦୟକୁ ବୁଝିବା ପରେ ଅବୁଝା ରହିଯାଆନ୍ତି । ତେବେ ସେପରି ଅବୁଝା ମନ ପାଇଁ ସକାରାତ୍ମକ ଚିନ୍ତାର ସ୍ୱର ଶୁଣାଯିବା ଉଚିତ୍ । ସୁପ୍ତ ପ୍ରତିଭାକୁ ନଚିହ୍ନି ଅନେକ କ୍ଷେତ୍ରରେ ପିତାମାତା ପୁଅଝିଅଙ୍କୁ ଭିନ୍ନ ପଥରେ ନେବାକୁ ଚେଷ୍ଟା କରନ୍ତି । ତେବେ ସେମାନଙ୍କ ଭିତରେ ଲୁକ୍କାୟିତ କଳା ପ୍ରତିଭାକୁ ଧ୍ୟାନ ନଦେବା ଯୋଗୁଁ, ସେମାନଙ୍କ ମନ ବିଦ୍ରୋହ କରିଉଠେ । ଭଲ ଶିକ୍ଷକ ବିଷୟରେ ଚିନ୍ତାନାୟକ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ କହନ୍ତି - "Our teacher should be of proper quality, not only in scholarship but in sympathy for the pupil."

ପିଲାଦିନେ ଯିଏ ଯାହା ଥାଏ, ପରବର୍ତ୍ତୀକାଳରେ ସେହି ପିଲାର ପରିବର୍ତ୍ତନ ଦେଖାଯାଏ । ଯଦି ତା' ପିଲାଦିନର ପରିବେଶକୁ ନେଇ, ନକାରାତ୍ମକ କଥା କୁହାଯାଏ,

ତେବେ ସେ ଆଉ ଭବିଷ୍ୟତରେ ବଡ଼ ହୋଇପାରେ ନାହିଁ । ପିଲାଦିନ ଭିନ୍ନଭାବରେ କଟିଥିବାବେଳେ, ଭବିଷ୍ୟତ ଉଚ୍ଚାସନର ଅଧିକାରୀ ହେବାର ଦୃଷ୍ଟାନ୍ତ ବିରଳ ନୁହେଁ । କିଏ ଭାବିଥିଲା ଚର୍ଚ୍ଚିଲ ଏପରି ବିଶ୍ୱବିଖ୍ୟାତ ମଣିଷ ହୋଇପାରିବେ । ସେ ତ ମାଟ୍ରିକ୍ ଚାରିଥର ଫେଲ୍ ହୋଇ ପଞ୍ଚମ ଥରରେ କୌଣସିମତେ ପାସ୍ କରିଥିଲେ । ଷ୍ଟାଲିନ୍, ଯିଏ ହେଉଛନ୍ତି କେଡ଼େ ବଡ଼ ନେତା । ଅଥଚ ସେ ଯେ ଦିନେ ପୁରାଣପଣ୍ଡା ରୂପରେ ପୁରାଣ ବୋଲିବୋଲି ଜୀବନନିର୍ବାହ କରୁଥିଲେ, ଏହା କଣ ସହଜରେ ବିଶ୍ୱାସ କରିହେବ ? ସେଦିନର ସାଧାରଣ ଫୁଟବଲ୍ ଖେଳାଳୀ ଥିଲେ ଆଇଜେନ୍ ହୋର । ମାତ୍ର ହୋଇପାରିଥିଲେ ସ୍ମରଣୀୟ ବ୍ୟକ୍ତିବିଶେଷ । ହିଡ଼ରେ ମାଟି ଲଦୁଥିବା ଶ୍ରମଜୀବୀ ଏଡ଼େବଡ଼ ବିରାଟ ମଣିଷ ହେବା କଳ୍ପନାର ବାହାର ଥିଲା । କିନ୍ତୁ ସେହିପରି ଶ୍ରମଜୀବୀ ହୋଇପାରିଥିଲେ ମାଓ-ସେ-ତୁଙ୍ଗ ପରି ଖ୍ୟାତନାମା ମଣିଷ । ଆମ ଭାରତରେ ଦୁଇ ମନୀଷୀ ମହାତ୍ମାଗାନ୍ଧୀ ଓ ପଣ୍ଡିତ ଜବାହାରଲାଲ ନେହେରୁଙ୍କୁ ଏ କ୍ଷେତ୍ରରେ ନିଆଯାଉ । ଦୁଇ ନେତା ଛାତ୍ରଜୀବନରେ ଭଲ ଛାତ୍ର ନଥିଲେ । ସାଧାରଣ ଛାତ୍ର । କିନ୍ତୁ ବିଶ୍ୱ ଆଜି ଗାନ୍ଧିଜୀଙ୍କୁ ପ୍ରଣାମ ଜଣାଏ । ନେହେରୁ ସ୍ୱାଧୀନ ଭାରତବର୍ଷରେ ଜଣେ ଯୋଗ୍ୟ ସୁଦକ୍ଷ ପ୍ରଧାନମନ୍ତ୍ରୀ (ସ୍ୱାଧୀନ ଭାରତର ପ୍ରଥମ) ରୂପେ ସୁନାମଧନ୍ୟ ନେତା । ଏମାନଙ୍କ ପାଇଁ ସକାରାତ୍ମକ ପରିବେଶ ଓ ଚିନ୍ତାଧାରା, ବଡ଼ ହେବା ଲାଗି ସୁଯୋଗ ସୃଷ୍ଟି କରିଥିଲା । ଜୀବନକୁ ସାମନା କରିବା ପାଇଁ ଏମାନଙ୍କଠାରେ ଥିଲା ଅସୀମ ଧୈର୍ଯ୍ୟ ଓ ସାହସ । ସ୍ୱାମୀ ବିବେକାନନ୍ଦ କହିଥିଲେ 'ଜୀବନକୁ ମୁକାବିଲା କରିବାର ମନୋଭାବ, ଦକ୍ଷ ମଣିଷ ସୃଷ୍ଟିରେ ସହାୟକ ହୁଏ ।'

ଏହି ପରିପ୍ରେକ୍ଷୀରେ ସ୍ୱାମୀ ବିବେକାନନ୍ଦ ପୁଣି କହିଥିଲେ – ଅପନିନ୍ଦା ଜୀବନରେ ପ୍ରକାଶ ନପାଉ । ଏପରି ଶବ୍ଦ ଉଚ୍ଚାରଣରେ ଜୀବନ ଭିନ୍ନ ହୋଇଯିବ । ନିଜର ଓଠ ବନ୍ଦକରିବା ସଂଗେସଂଗେ, ହୃଦୟକୁ ପ୍ରସାରିତ କରିଦେବାକୁ ହେବ । ଯେତେ ହୃଦୟ ଖୋଲିଖୋଲି ଯିବ, ସେତେ ନକାରାତ୍ମକ ଚିନ୍ତାରୁ ମଣିଷ ଦୂରେଇ ଯାଇପାରିବ । ନିଜ ମାତୃଭୂମି ପାଇଁ କାର୍ଯ୍ୟ କରିବା ସହିତ, ସମଗ୍ର ବିଶ୍ୱ ଲାଗି ସେବକ ହୋଇଯିବା ଉଚିତ । ଏହାଦ୍ୱାରା ପୃଥିବୀକୁ ଉଦ୍ଧାର କରାଯାଇପାରିବ । ମଣିଷ ଥରେ ଚିନ୍ତାକରିବା ଆବଶ୍ୟକ, ତା' ଉପରେ ସବୁ ଦାୟିତ୍ୱର ବୋଝ ଲଦା ହୋଇଛି । ସବୁ ଶାସ୍ତ୍ରର ଆଦର୍ଶ ଚିନ୍ତାଧାରା ଘରେଘରେ ପ୍ରଚାର କରିବାକୁ ହେବ । ସମସ୍ତଙ୍କଠାରେ ଦେବତ୍ୱ ଲୁଚି ରହିଛି । ଏହାକୁ ଆବିଷ୍କାର କରିବାକୁ ପଡ଼ିବ । ସେହି ଆତ୍ମାର ଅନୁସନ୍ଧାନ କରାଯାଉ । ଏହି ଉଦ୍‌ବୋଧନ ପଛରେ ଥିବା ସକାରାତ୍ମକ ଚିନ୍ତାଧାରା ମଣିଷକୁ ନିଶ୍ଚୟ ଉଚ୍ଚକୁ ନେଇପାରିବ । ଅଗ୍ନିକୁ

ଭୟ କରୁଥିବାବେଳେ, ସ୍ୱାମୀ ବିବେକାନନ୍ଦ ଏହାକୁ ଭୟ ନକରି, ଏହା ସହିତ ମିଶିଯିବା ପାଇଁ ପରାମର୍ଶ ଦେଇଥିଲେ । 'ଏହାକୁ ଚାରିଆଡ଼େ ଖେଳାଇଦିଅ । କାମରେ ମନ ଦିଆଯାଉ । ଅଧିକରୁ ଅଧିକତର କାମ କରିପାରିଲେ, ମଣିଷ ଶାନ୍ତି ପାଇବ ।' ନେତୃତ୍ୱ ଦିଅ - ଏତେବେଳେ ସେବକ ରୂପରେ ଠିଆହୁଅ । ସ୍ୱାର୍ଥପର ହୁଅନାହିଁ । ଅଭିଯୋଗ କରନାହିଁ, କି ଅଭିଯୋଗ ଶୁଣିବାପାଇଁ ଆଗ୍ରହୀ ହୁଅନାହିଁ । ବନ୍ଧୁ ଯେତେ ଯାହା କହିଲେ ସେଥିକୁ କାନ ଦିଅନାହିଁ । ଧୈର୍ଯ୍ୟଧରି କାମ କର, ସଫଳତା ନିଶ୍ଚୟ ଆସିବ । ଯତ୍ନଶୀଳ ହୋଇ କାମକଲେ, ସଫଳ ଦର୍ଶନ ସମ୍ଭବ ହେବ, ସତ୍ୟର ସନ୍ଧାନ କର - ସତ୍ୟକୁ ଧରିରଖିବାପାଇଁ ଚେଷ୍ଟା ଚଳାଅ, ନିଶ୍ଚୟ ଜୀବନ ସାର୍ଥକ ହେବ । ସତ୍ୟକୁ ସହଜରେ ପାଇହେବ ନାହିଁ । ଧୀରେଧୀରେ ଏହାର ସାନ୍ନିଧ ମିଳିବ । ସତ୍ୟଠାରୁ ମଣିଷ ଦୂରେଇ ଯାଇପାରେ ନାହିଁ । ଏହି ବିଶ୍ୱାସ ରଖିବା ଉଚିତ୍ । ଆପଣା ଉପରେ ସବୁ କର୍ମ ନିର୍ଭର କରୁଥିବା ବେଳେ, କର୍ମକୁଣ୍ଠ ହେବା ଉଚିତ ନୁହେଁ । କୌଣସି କାମ ହୋଇପାରିବ ନାହିଁ, ଏହା ଭାବିବା ଯଥାର୍ଥ ନୁହେଁ । ଶତାବ୍ଦୀ ପରେ ଶତାବ୍ଦୀ ଆସିବ, ବ୍ୟକ୍ତି ତା'ର ବ୍ୟକ୍ତିତ୍ୱ ବଳରେ ସେହି ଶତାବ୍ଦୀର ସମ୍ମୁଖୀନ ହେବ - ଭାରତ ପାଇଁ ପ୍ରତ୍ୟେକ ଭାରତୀୟ କର୍ମୀ ସଂଗଠକ ଓ ସହଯୋଗୀ ଏହା ଭୁଲିଯିବା ଉଚିତ୍ କି ? କର୍ତ୍ତବ୍ୟ କରିଚାଲିଲେ, ସକଳ ବାଧାବିଘ୍ନ, ଝଡ଼ଝଞ୍ଜା ଦୁର୍ବଳ ହୋଇଯାଏ । ଏହାକୁ ମଣିଷ ଭୁଲିନଯାଉ । ସ୍ୱାମୀ ବିବେକାନନ୍ଦଙ୍କର ଏହି ଜୀବନବାଦୀ ଉଦ୍‌ବୋଧନ, ଜୀବନଯାତ୍ରା ପାଇଁ ଦିଗ୍‌ଦର୍ଶନ ଦେଇଥିଲା ମନରେ ସାହସ ଭରିଥିଲା ।

ଅନେକ ସାରସ୍ୱତ ସାଧକଙ୍କ ଜୀବନରେ ଏପରି ସଂଗ୍ରାମ ମୁଖର ସମୟ ଆସିଛି । ଉଦାହରଣଟିଏ ଦିଆଯାଉ । କବିଶେଖର ଚିନ୍ତାମଣି ମହାନ୍ତି - ଓଡ଼ିଶାର ବରେଣ୍ୟ ସାରସ୍ୱତ ସ୍ରଷ୍ଟା । କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ଓ ଆତ୍ମଜୀବନୀ ରଚନା କ୍ଷେତ୍ରରେ ଧୂରନ୍ଧର । ଚାରୋଟି ଭାଗ 'ଚିନ୍ତାମଣି ଗ୍ରନ୍ଥାବଳୀ' ପ୍ରକାଶ ପାଇଛି । ୪୮ଟି କାବ୍ୟ, ୫ଟି ଉପନ୍ୟାସ ଓ ବହୁ କବିତା ସହିତ ଗଳ୍ପ ରଚନା କରିଛନ୍ତି । କେତେ ସୁନାମର ଅଧିକାରୀ । ତେବେ ତାଙ୍କ କୈଶୋରାବସ୍ଥା ଅତ୍ୟନ୍ତ ଦୁଃଖ କଷ୍ଟରେ ବିତିଥିଲା । ଏପରି ସମୟ ଆସି ପହଞ୍ଚିଛି । ଦି'ଓଳି ପେଟପୂରା ଖାଇବା ଚିନ୍ତାମଣିଙ୍କ ପକ୍ଷେ ସମ୍ଭବ ହୋଇନାହିଁ । ସେର ଦି' ପଇସା ଦରରେ ଡାକଘରୁ ଛାପାଫର୍ମ ଆଣି ଲେଖିଛନ୍ତି । ବାଇଗବା ଫଳ ଜାଳି ରାତି କଟାଇଛନ୍ତି । ବିଦ୍ୟାଳୟରେ ଅର୍ଥାଭାବ ଯୋଗୁଁ ଅଧିକ ପଢ଼ିବା ସମ୍ଭବ ହେଲାନାହିଁ । କେତେ ସଂଗ୍ରାମ ଓ ସଂଘାତ ଭିତରେ ଗତିକରି ଓଡ଼ିଆ ସାହିତ୍ୟ ପାଇଁ ଦେଇଯାଇଛନ୍ତି ଅମୂଲ୍ୟ ସଂପଦ । ତାଙ୍କ ସାଧନା ପାଇଁ ସେ ପାଇପାରିଛନ୍ତି 'କବିଶେଖର' ଓ 'କବିବର' ଉପାଧି । ଯଦି

କୈଶୋରାବସ୍ଥା କି ତରୁଣ ବୟସରୁ ତାଙ୍କୁ ନାସ୍ତିବାଚକ କଥା ଶୁଣାଯାଇଥାଆନ୍ତା, ସେ କଣ ଏପରି ଉଚ୍ଚକୁ ଆସିପାରିଥାନ୍ତେ ।

ଆଜି ଇଂଜିନିୟର ବନ୍ଧୁ ହୃଷୀକେଶ ସାହୁଙ୍କ କଥା ଦେଖାଯାଉ । ସେ ଜଣେ କେବଳ ଯନ୍ତ୍ରୀ ନୁହଁନ୍ତି, ସେ ଜଣେ ସଫଳ ସଂଗଠକ ବହୁ ସାମାଜିକ ଅନୁଷ୍ଠାନର ସଦସ୍ୟ କର୍ମକର୍ତ୍ତା, ସଂସ୍କୃତିର ଅନୁରାଗୀ, ବନ୍ଧୁବତ୍ସଳ ଭାବେ ସବୁଠି ପରିଚିତ । ନିଜ ଲୋକପ୍ରିୟତା ପାଇଁ ସେ ବାଲେଶ୍ୱରର 'ଇଂଜିନିଅର ଫୋରମ୍'ର ହୋଇ ପାରିଛନ୍ତି ଯୁଗ୍ମ ସଂପାଦକ । ନିଖିଳ ଓଡ଼ିଶା ଡିପ୍ଲୋମା ଇଂଜିନିଅରସ୍ ସର୍ଭିସ୍ ଏସୋସିଏସନ୍‌ର ଉତ୍ତରାଞ୍ଚଳ ମହାମଣ୍ଡଳର ସଂପାଦକ ପରି ମର୍ଯ୍ୟାଦାଜନକ ପଦବି ମଣ୍ଡନ କରିଛନ୍ତି । ସେ ଜଣେ କର୍ମଠ, ଚଳଚଞ୍ଚଳ ଓ ସାଂଗଠନିକ ଶକ୍ତିର ଉତ୍ସ । ତାଙ୍କ ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଏପରି ଏକ ସକାରାତ୍ମକ ଜୀବନ ଆଧାରିତ ଗ୍ରନ୍ଥ ପ୍ରକାଶ, ଆମ ସାମାଜିକ ଜୀବନ ଲାଗି ଦିଗ୍‌ଦର୍ଶକ ହେବ, ମୋର ବିଶ୍ୱାସ । ବନ୍ଧୁ ହୃଷୀବାବୁ ଶତାୟୁ ହୁଅନ୍ତୁ ଆହୁରି ପରିଚିତ, ସକ୍ରିୟ ଓ ଅଧିକ କର୍ମଠ ହୋଇଉଠନ୍ତୁ, ଏହାହିଁ ମୋର କାମନା ।

## ସହାୟକ ଗ୍ରନ୍ଥ


1. The knowledge : S.Radhakrishnan, Orient paper back, New Delhi-1
2. Vivekananda his call his the Nation: Advaita AShrama, Calcutta-14
3. Aesthetics: Yani Bonev,
4. ଶ୍ରୀମଦ୍‌ଭଗବଦ୍ ଗୀତା: ଗୀତା ପ୍ରେସ୍, ଗୋରଖପୁର
4. Life after death : Swami Vivekananda




# ସମୁଦାୟ ଜୀବନରୁ କିଛି ସମୟ

## ଗୌରାଙ୍ଗ ପାଣିଗ୍ରାହୀ

୧୯୭୫ ମସିହା ଜୁନ୍ ୨୫ ତାରିଖରେ ସାରା ଦେଶରେ ଆଭ୍ୟନ୍ତରୀଣ ଜରୁରୀ ଅବସ୍ଥା ଜାରି କରାଗଲା । ଦେଶର ନାଗରିକମାନଙ୍କର ସ୍ୱାଧିକାର ଉପରେ ଏହାଫଳରେ ଅଙ୍କୁଶ ଲାଗିଗଲା । ବ୍ୟକ୍ତି ସ୍ୱାଧୀନତା ସମ୍ପୂର୍ଣ୍ଣ ଲୋପ ପାଇଲା । ଗଣତାନ୍ତିକ ଧାରାରେ ପ୍ରତିବାଦ କରିବାର ଅଧିକ ରହିଲା ନାହିଁ । ସରକାରୀ କଳର ପ୍ରଶାସକ ଓ ପୁଲିସ୍‌ର ଜୁଲମ୍ ବଢ଼ିଚାଲିଲା । ଯିଏ ପ୍ରତିବାଦ କଲା, ତାକୁ ଜେଲ୍‌କୁ ପଠାଇ ଦିଆଗଲା । ସମଗ୍ର ଦେଶରେ ସରକାରୀ ସନ୍ତ୍ରାସ ବଢ଼ି ଚାଲିଲା ।

୧୯୭୬ ମସିହା ଅକ୍ଟୋବର ମାସରେ ଓଡ଼ିଶା ଉଠା-ଜଳ ସେଚନ ନିଗମରେ କାର୍ଯ୍ୟ କରୁଥିବା ପ୍ରାୟ ୩ଶହ ଏନ୍.ଏମ୍.ଆର୍. କର୍ମଚାରୀଙ୍କୁ ବେଆଇନଭାବେ କର୍ତ୍ତୃପକ୍ଷ ଛଟେଇ କଲେ । ବାଲେଶ୍ୱର-ମୟୂରଭଞ୍ଜ ଜିଲ୍ଲା ଶ୍ରମିକ ସଂଘ ଏହାର ଦୃଢ଼ ପ୍ରତିବାଦ କଲା । ବାଲେଶ୍ୱର ସ୍ଥିତ ନିଗମର ଡିଭିଜନ୍ ଅଫିସ୍ ସମ୍ମୁଖରେ ଛଟେଇ ଶ୍ରମିକମାନେ ଧାରଣାରେ ବସିଲେ । ନିଗମ କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଏଭଳି ପ୍ରତିବାଦରେ ଅଫିସରମାନେ କ୍ଷୁବ୍ଧ ହେଲେ । ବାଲେଶ୍ୱର ଜିଲ୍ଲାର ତତ୍‌କାଳୀନ ଏସ୍.ପି. ଶ୍ରୀ ବି.ବି. ନନ୍ଦୀ ଉଠାଜଳ ସେଚନ କର୍ମଚାରୀଙ୍କ ଏହି ଆନ୍ଦୋଳନରେ ବିବ୍ରତ ହେଲେ । ଶାନ୍ତିପୂର୍ଣ୍ଣ ଗଣଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ ଶ୍ରମିକ ସଂଘର ନେତୃତ୍ୱରେ ଥିବା ସାତଜଣ କର୍ମଚାରୀଙ୍କ ବିରୁଦ୍ଧରେ ଏକ ମିଥ୍ୟା ଅଭିଯୋଗକୁ ଭିତ୍ତି କରି ପୁଲିସ୍ ସେମାନଙ୍କୁ ଧାରଣା ସ୍ଥଳକୁ ଗିରଫ କଲା । ମୁଁ ଓ ମୋର ଜଣେ ସାଥୀଙ୍କୁ ଏହି ଅଭିଯୋଗରେ ପୁଲିସ୍ ଜେଲ୍‌କୁ ପଠାଇ ଦେଲେ । ମୋର ଜେଲ୍ ଯିବା ଏହା ପ୍ରଥମ । ଅବଶ୍ୟ ଏହାପରେ ମୋତେ ବିଭିନ୍ନ ଗଣଆନ୍ଦୋଳନ ଯୋଗୁଁ ବହୁବାର ଜେଲ୍ ଯିବାକୁ ପଡ଼ିଛି । ବାଲେଶ୍ୱର ଜେଲ୍‌ରେ ତିନିଶହ କଏଦୀ ରହିବା ସ୍ଥାନରେ ପ୍ରାୟ ୧୧ଶହରୁ ଉର୍ଦ୍ଧ୍ୱ ବ୍ୟକ୍ତି ରହୁଥାନ୍ତି । ତେଣୁ ସେ ବିଷୟରେ ଉଲ୍ଲେଖ ନକରିବା ଭଲ ।

ବିଭିନ୍ନ ଫୌଜଦାରୀ ଦଫା ସହ ଆମ ବିରୁଦ୍ଧରେ ଡି.ଆଇ.ଆର୍. ଯୋଡ଼ାଇ ଦିଆଗଲା । କାରଣ ଆମେ ଦେଶର ନିରାପତ୍ତା ପାଇଁ ବିପଦ ସୃଷ୍ଟି କରିଛୁ । ଦେଶର

ଜରୁରୀକାଳୀନ ପରିସ୍ଥିତିରେ ମିଶା ଓ ଡି.ଆଇ.ଆର୍. ଆଇନ୍‌ରେ ଗିରଫ ବ୍ୟକ୍ତିମାନଙ୍କୁ ଜାମିନ୍ ମିଳୁ ନଥିଲା । ମୁଁ ଦୁଇଦିନ ପରେ ଜେଲ୍ ଗେଟ୍‌ରୁ ଚାକିରିରୁ ବହିଷ୍କାର ଚିଠି ପାଇଲି । ମୋତେ ଚାକିରିରୁ ବହିଷ୍କାର କରାଯିବା ସହ ଓଡ଼ିଶା ସାରା ସମସ୍ତ ସରକାରୀ ବିଭାଗକୁ ଏହା ଜଣାଇ ଦିଆଗଲା । କାରଣ କାଳେ ମୁଁ ଜେଲ୍‌ରୁ ଫେରି ଅନ୍ୟତ୍ର ଚାକିରିରେ ପଶିଯିବ । ଆମର ଜାମିନ୍ ଆଦେଶ ପାଇଁ ସାଥୀମାନେ ତଳୁ ଉପରସ୍ତର ପର୍ଯ୍ୟନ୍ତ ସମସ୍ତ କୋର୍ଟକୁ ଆବେଦନ କରି ନିରାଶ ହେଲେ । ପୁଲିସ୍ ଚାର୍ଯସିଟ୍ ତିଆରି କଲାବେଳେ ଆମ ବିରୁଦ୍ଧରେ ଡି.ଆଇ.ଆର୍. ଦଫା ଲଗାଇବା କାରଣକୁ ଯଥାର୍ଥ ଥିବାର ପ୍ରମାଣିତ କରି ନପାରିବାରୁ ମୁଁ ଓ ମୋର ସାଥୀମାନେ ଜାମିନ୍‌ରେ ଦୁଇମାସ ପରେ ଜେଲ୍‌ରୁ ବାହାରିଲୁ ।

ଜରୁରି ପରିସ୍ଥିତି ପାଇଁ ସବୁଆଡ଼େ କୋକୁଆଭୟ । ସଭା ସମିତି କରିବାର ଅନୁମତି ମିଳୁନଥାଏ । ସଂଘ ଅଫିସ୍ ପ୍ରାୟ ଦିନତମାମ୍ ତାଲା ପଡ଼ି ରହେ । ସନ୍ଧ୍ୟାରେ କିଛି ସମୟ ପାଇଁ ଖୋଲାହୁଏ । ମୁଁ ଜେଲ୍‌ରୁ ବାହରିବା ପରେ ସଂଘ ଅଫିସରେ ନିୟମିତତା ଆସିଲା । ମୋର ଚାକିରି ନାହିଁ । ରୋଜଗାର ଶୂନ୍ୟ । ମୋର ପତ୍ନୀ ଓ ଦୁଇମାସର ପୁଅ ଗାଁରେ ରହିଲେ । ମୋର ଜନ୍ମସ୍ଥାନ ବାଲେଶ୍ୱର ଠାରୁ ପ୍ରାୟ ୩୦୦ କିଲୋମିଟର ଦୂରରେ । ବାଲେଶ୍ୱରରେ ଚାକିରି ମାତ୍ର ଚାରିବର୍ଷ କରିବା ପରେ ଚାକିରି ଚାଲିଗଲା ।

ବାଲେଶ୍ୱରରେ ୧୯୭୫ ମସିହାରେ ବିଭିନ୍ନ ଟ୍ରେଡ୍ ୟୁନିୟନ୍‌ମାନଙ୍କୁ ନେଇ ଟ୍ରେଡ୍ ୟୁନିୟନ ଆସୋସିଏସନ୍ କୋର୍ଡିନେସନ୍ କମିଟି (ଟି.ୟୁ.ଏ.ସି.ସି.) ଗଠନ ହୋଇଥିଲା । ଏହାର ସାଧାରଣ ସମ୍ପାଦକ ଥିଲେ ସାଥି ଯୋଗେନ୍ ଦାସ । ଆମ ସଂଘକୁ ବଞ୍ଚାଇ ରଖିବା ଓ ନିଗମ କର୍ତ୍ତୃପକ୍ଷଙ୍କ ଅନ୍ୟାୟ ବିରୁଦ୍ଧରେ ଲଢ଼ିବା ପାଇଁ ସେ ଆମମାନଙ୍କୁ ବହୁ ସାହସ ଓ ସହଯୋଗ ପ୍ରଦାନ କଲେ । ସଂଘ କାର୍ଯ୍ୟ ଯୋଗୁଁ ଚାକିରି ହରାଇଥିବା ସାତଜଣ ସାଥୀଙ୍କୁ ଓ ସେମାନଙ୍କ ପରିବାରକୁ ବଞ୍ଚାଇ ରଖିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା । ଚାକିରିରେ ଥିବା କର୍ମଚାରୀମାନେ ଓ ବାଲେଶ୍ୱରରେ କେତେକ ବଦାନ୍ୟ ବ୍ୟକ୍ତି ସାତଜଣ କର୍ମଚାରୀଙ୍କୁ ନିୟମିତ ମାସିକ ଆର୍ଥିକ ସହାୟତା ପ୍ରଦାନ କଲେ । ମୁଁ ବାଲେଶ୍ୱର ସହରରେ ରହି ସଂଘ କାର୍ଯ୍ୟ କରିବାର ନିଷ୍ପତ୍ତି ନେଲି । ମୋତେ ୧୯୭୬ ମସିହା ଡିସେମ୍ବର ମାସରୁ ମାସିକ ନବେ ଟଙ୍କା ସହାୟତା ପ୍ରଦାନ କରାଗଲା । ମୁଁ ସେତିକି ଟଙ୍କାରେ ମାସକ ଚଳିବାକୁ ଚେଷ୍ଟା କଲି ଓ ସଫଳ ହେଲି । ସଂଘକାର୍ଯ୍ୟ ସହ ଉଠାଜଳ ସେଚନ କର୍ମଚାରୀମାନଙ୍କୁ ନେଇ ରାଜ୍ୟସ୍ତରରେ ଏକ ଫେଡେରେସନ୍ ଗଠନ କରିବାକୁ ଉଦ୍ୟମ କଲି । ଏଥିପାଇଁ ସାରା ଓଡ଼ିଶା ବୁଲିବାକୁ ପଡ଼ଇଲା । ୧୯୭୮ ମସିହାରେ ରାଜ୍ୟସ୍ତରରେ ଉଠାଜଳସେଚନ କର୍ମଚାରୀ ଫେଡ଼େରେସନ୍ ଗଠିତ ହେଲା । ଯାହାକି

ଆଜି ପର୍ଯ୍ୟନ୍ତ ଏକକ ଫେଡେରେସନ୍ ଭାବେ କାର୍ଯ୍ୟ କରୁଛି । ଏତଦ୍‌ଭିନ୍ନ ୧୯୭୫ ମସିହାରେ ଗଠିତ ଟି.ୟୁ.ଏ.ସି.ସି. ବାଲେଶ୍ୱରରେ ଶ୍ରମିକ କର୍ମଚାରୀମାନଙ୍କ ମିଳିତ ମଞ୍ଚଭାବେ ବର୍ତ୍ତମାନ ସକ୍ରିୟଭାବେ ରହିଛି ।

ଦୀର୍ଘ ୧୯ ମାସ ପରେ ଜରୁରୀକାଳୀନ ପରିସ୍ଥିତି ଉଠିଗଲା । ଆମ ବିରୁଦ୍ଧରେ ଚାଲିଥିବା ମୋକଦ୍ଦମା ଗୁଡ଼ିକର ବିଚାର ଶେଷ ହୋଇ ଆମେ ନିର୍ଦ୍ଦୋଷ ପ୍ରମାଣିତ ହେଲୁଁ । ସମସ୍ତ ସାତଜଣ ଚାକିରି ଫେରି ପାଇଲୁ । ମୁଁ ୧୯୮୧ରେ ଚାକିରିରେ ପୁନଃନିଯୁକ୍ତି ପାଇଲି । ଚାକିରିରେ ପଦୋନ୍ନତି ମଧ୍ୟ ପାଇଲି । ବାଲେଶ୍ୱରରେ ସପରିବାର ସ୍ଥାୟୀ ବାସିନ୍ଦା ଭାବେ ରହିଲି । ଚାକିରିରୁ ସ୍ୱେଚ୍ଛାକୃତ ଅବସର ନେଇ ୨୦୦୩ ମସିହାରୁ ବହୁ ସାମାଜିକ ଅନୁଷ୍ଠାନ ଓ ଶ୍ରମିକ ସଂଗଠନରେ ସକ୍ରିୟ କାର୍ଯ୍ୟ କରୁଛି । ଚାକିରି ନଥିବା ମାତ୍ର ୫ ବର୍ଷର ଜୀବନ ସଂଗ୍ରାମ ମୋର ଜୀବନର ଗତିପଥକୁ ଆଜିସୁଦ୍ଧା ପ୍ରଭାବିତ କରି ଆସିଛି । ସମସ୍ତ ବାଧା ବନ୍ଧକୁ ଅତିକ୍ରମ କରି ଜୀବନ ସଂଗ୍ରାମରେ ଜୟଯୁକ୍ତ ହେବାର କୌଶଳ ମୁଁ ଶିକ୍ଷା କରିଛି । ଏହି ମଧୁର ଓ ତିକ୍ତ ଅଭିଜ୍ଞତାକୁ ପାଥେୟ କରି ମୁଁ ବଞ୍ଚିରହିଛି । ଯାହାକୁ ଭିତ୍ତି କରି ମୋର ଜୀବନ ସୌଧ ଉପରେ ମୁଁ ବିଜୟ କେତନ ଉଡ଼ାଇଛି । ତେଣୁ ହାରିବା ପାଇଁ ଜୀବନ ନୁହେଁ, ଜିତିବା ପାଇଁ ପାଇଁ ଜୀବନ, ଏହାହିଁ ମୋର ଦୀର୍ଘ ସଂଗ୍ରାମୀ ଜୀବନର ଅନୁଭୂତି ।



# ଜୀବନ ଓ ସଂଗ୍ରାମ

**ରଶ୍ମିତା ମହାପାତ୍ର**

ଜୀବଜଗତର ଶ୍ରେଷ୍ଠ ପ୍ରାଣୀ ହେଉଛି ମନୁଷ୍ୟ । ପ୍ରକୃତିର ଅଶେଷ କଲ୍ୟାଣ ନେଇ ପୃଥିବୀପୃଷ୍ଠରେ ଜନ୍ମ ହୋଇଥିବା ଏହି ମଣିଷ ନିଜକୁ ଅମୃତର ସନ୍ତାନବୋଲି ଜ୍ଞାନ କରେ । ମାଟିର ରୂପ, ରସ, ଗନ୍ଧ, ପ୍ରାଣର ସ୍ପନ୍ଦନ ଓ ଆବାହନ । କାବ୍ୟ ଛଳରେ ପ୍ରକୃତି କବି ଗଙ୍ଗାଧର ମେହେର କହିଛନ୍ତି-

"ବିଶ୍ୱଦେଖ ମଧୁ ମୟରେ ଜୀବନ ବିଶ୍ୱ ଦେଖ ମଧୁମୟ ।"

ଏହା ହେଉଛି ପ୍ରାଣମୟ ବାଣୀ । ମନୁଷ୍ୟ କେବେ ନିଜକୁ ଏକାକୀ ଓ ଅସହାୟ ମନେ କରେନାହିଁ ବରଂ ସମଗ୍ର ବିଶ୍ୱଜଗତରେ ସେ ଦେଖେ ଜୀବନର ରସ, ପ୍ରାଣର ସ୍ପନ୍ଦନ, ଜୀବନ ପ୍ରତି ଏକ ଭିନ୍ନ ଦୃଷ୍ଟିକୋଣ । ଜୀବନ ପ୍ରତି ଏହି ଦୃଷ୍ଟିକୋଣର ଭିନ୍ନତାରୁ ହିଁ ଦର୍ଶନର ସୃଷ୍ଟି । ଏ ଜଗତରେ କେହି ଆସ୍ତିକ, କେହି ନାସ୍ତିକ, କେହି ଆଶାବାଦୀ, ପୁଣି କେହି ନୈରାଶ୍ୟବାଦୀ । କେହି ଏଠାରେ ନିରାଶା ଦର୍ଶନରେ ଜର୍ଜରିତ ତ କେହି ପୁଣି ଆଶାର ଆଲୋକରେ ଉଦ୍‌ଭାସିତ । ଏ ସମସ୍ତ ସତ୍ତ୍ୱେ ମଣିଷ ବଞ୍ଚିବାକୁ ଚାହେଁ କାରଣ ବଞ୍ଚିବାରେ ଆନନ୍ଦ ଅଛି । ଆଉ ବୋଧହୁଏ ସେଇଥିପାଇଁ ପଶୁପକ୍ଷୀ, କୀଟ ପତଙ୍ଗ ଠାରୁ ଆରମ୍ଭ କରି ମନୁଷ୍ୟ ଶିଶୁ ପର୍ଯ୍ୟନ୍ତ ସମସ୍ତେ ବଞ୍ଚିବା ପାଇଁ ଅହରହ ସଂଗ୍ରାମରତ ଏବଂ ଜୀବନକୁ ପରିପୂର୍ଣ୍ଣ କରିବା ପାଇଁ କ୍ରିୟାଶୀଳ, ଏକଥା ନିଶ୍ଚିତ ସତ୍ୟ । ମୁଁ ତ କହିବି ଜୀବନର ଅଭିପ୍ରାୟ ନଥିଲେ, ବଞ୍ଚିବାର ମାଦକତା ନଥିଲେ ମଣିଷ ଜୀବନ ପାଇଁ ଏତେ ବ୍ୟାକୁଳତା ପ୍ରକାଶ କରୁନଥାନ୍ତା ।

କେହିକେହି କହନ୍ତି ଜୀବନ ଏକ ଅନନ୍ତ ଯାତ୍ରା । ମଣିଷ ତାକୁ ବୁଝିପାରିବା ସମ୍ଭବ ନୁହେଁ । ଜୀବନର ସଂଜ୍ଞା ଏ ଯାଏଁ ନିରୂପିତ ହୋଇପାରିନି । ତେଣୁ ଜୀବନ ସଦା ଦୁର୍ବୋଧ । ଜୀବନ କେତେକ ଅଜଣା ଅଶୁଣା କଥାର ସମ୍ମେଳନ । ସେଥିପାଇଁ ଜୀବନକୁ ଦେଖିହୁଏ ନାହିଁ, ଜାଣିହୁଏ ନାହିଁ । ମୃତ୍ୟୁ ଆସିଲେ ଜୀବନର ସମସ୍ତ ପ୍ରଲୋଭନ ତୁଚ୍ଛ ହୋଇଯାଏ । ସବୁ ଅତୀତ ବିସ୍ମୃତିର ଗର୍ଭରେ ଲୀନ ହୋଯାଏ । ସକଳ ସଂପର୍କ ଆପେ ତୁଟିଯାଏ । ତେଣୁ, କବି, ଭାବୁକ, ଦାର୍ଶନିକ, ଲେଖକଠୁ ଅନେକ ଖୋଜି ଚାଲିଛନ୍ତି ଜୀବନର ମାନେ..

ପ୍ରଥମ କଥା ହେଲା ମନୁଷ୍ୟ ଏକ ଗୋଷ୍ଠୀଗତ ଜୀବ । ସେ ଗୋଷ୍ଠୀରେ ଜନ୍ମହୁଏ । ବଢ଼େ, ବଞ୍ଚେ ଓ ସେହି ଗୋଷ୍ଠୀରେ ମୃତ୍ୟୁବରଣ କରେ । ସେ ଗୋଷ୍ଠୀ

ମଧ୍ୟରେ ରହିଲେ ମଧ୍ୟ ନିଜର ସ୍ୱାତନ୍ତ୍ର୍ୟ ପ୍ରତି ସର୍ବଦା ସଚେତନ ଥାଏ । ନିଜର ଏଇ ସ୍ୱାତନ୍ତ୍ର୍ୟ ତାର ଏକାନ୍ତ କାମ୍ୟ ହୋଇଥିଲେ ହେଁ କୌଣସି ସମୟରେ ସେ ଏକା ରହିବାକୁ ଚାହେଁ ନାହିଁ । ଠିକ୍ ଯେମିତି ଆମେ ଘରଟିଏ ପସନ୍ଦ କରିଥାଉ, ଆଉ ସେଇ ପାଚେରି ଭିତରେ ନିଜର ସ୍ୱାତନ୍ତ୍ର୍ୟର ଜୟ ପତାକା ଉଡ଼ାଇବାକୁ ଇଚ୍ଛା କରୁ । ସେଇଥିପାଇଁ ଶ୍ମଶାନ ବା ମରୁଭୂମିରେ ଘର କରିବାକୁ ଚାହେଁନାହିଁ । କାରଣ ତାର ଉଦ୍ଦେଶ୍ୟ ହେଉଛି, ସ୍ୱାତନ୍ତ୍ର୍ୟ ସହିତ୍ ସମୂହତାରେ ଚଳିବା । ତେଣୁ ସେ ସିନ୍ଧୁତ୍ୱ ଚାହେଁ, ବିନ୍ଦୁତ୍ୱକୁ ବି ଚାହେଁ ।

ଆଜି ଯେତେବେଳେ ମଣିଷର ଜୀବନକୁ ନେଇ ଚିନ୍ତା ଚେତନାର ବିଚାର ବିମର୍ଷ କରାଯାଉଛି ଆଉ ଏହି ସମୟରେ ସାମାଜିକ ପୃଷ୍ଠଭୂମିରେ ଘଟୁଥିବା ଘଟଣାବଳୀକୁ ଦେଖିପାରିଲେ ଜଣାପଡ଼େ, ସାଂପ୍ରତିକ ସମସ୍ୟାର ସଂକେତ । ଏଠାରେ କହି ରଖେକି ଆମ ଦେଶ ଭାରତବର୍ଷ ବହୁ ବର୍ଷ ଧରି ଉପନିବେଶବାଦର ଶାସନାଧୀନ ଥିଲା । ସାମାଜିକ ପୃଷ୍ଠଭୂମିରେ ମଣିଷ ଜୀବନ ଏକ ପ୍ରକାର ବିପନ୍ନ ପ୍ରାୟ ଥିଲା । ଅର୍ଥନୈତିକ ବ୍ୟବସ୍ଥାର ସ୍ୱତନ୍ତତା ନଥିଲା । ଜୀବନ ଆଉ ସ୍ୱାଧୀନତାର ମୂଲ୍ୟବୋଧ ମଣିଷ ବୁଝିଲା, ଆଉ ଯୁଦ୍ଧ ମଧ୍ୟ କଲା । ଫଳତଃ ଅନେକ ବର୍ଷ ବିତିଗଲେ ମଧ୍ୟ ଯୁଦ୍ଧ-ସଂଗ୍ରାମର ପ୍ରଭାବରେ ଉପନିବେଶବାଦର ପରାଜୟ ହେଲା, ଦେଶ ସ୍ୱାଧୀନ ହେଲା । ଏପରିକି ବିଶ୍ୱର ଅନେକ ରାଷ୍ଟ୍ର ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ସ୍ୱାଧୀନ ହେଲେ ସତ, କିନ୍ତୁ ବିଶ୍ୱାୟନ ବା ଜଗତୀକରଣ ପ୍ରକ୍ରିୟା ଏକ ବିପଦ ହିସାବରେ ଠିଆ । ଫଳତଃ ମଣିଷର ସାମାଜିକ ଜୀବନ ଏବେ ତ୍ରିଶଂକୁରେ । ମାର୍କିନ ସାମ୍ରାଜ୍ୟର ସଂନ୍ତ୍ରାସର ମାତ୍ରା ବୃଦ୍ଧିରେ ମୁନାଫା ପାଇଁ ଅପକର୍ମ କରିବାକୁ ମଣିଷ ଆଜି ତତ୍ପର । ସଂସ୍କୃତି, ଯାହା ସମାଜ ଓ ମଣିଷର ସାମାଜିକ ଜୀବନକୁ ଶୁଦ୍ଧିମନ୍ତ କରି ଗଢ଼ି ପାରିବ, ତାହା ଆଜି ଧକ୍କା ଖାଇ ପଛେଇ ଯାଉଛି ବିଶ୍ୱାୟନ ସଂସ୍କୃତି ପାଇଁ । ତେବେ ଏଇଠି ଆଉ ଗୋଟିଏ କଥା କୁହାଯାଇପାରେ କି ସାମାଜିକ ବ୍ୟବସ୍ଥା ଭିତରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ଅନେକ ଭାବରେ ଦାୟୀ । ଶିକ୍ଷା ପାଇଲେ ମଣିଷ ସୁନ୍ଦର ଦିଶେ । କିନ୍ତୁ ଆଜି ସେକଥା ନାହିଁ । ଶିକ୍ଷାର ମୂଲ୍ୟବୋଧ ଯେ କେତେ ନୀଚସ୍ତରକୁ ଯାଇପାରିଛି ତାର ପ୍ରମାଣ ଆଜିର ବୈଦଶିକ ଓ ଦେଶୀୟ ବିଶ୍ୱବିଦ୍ୟାଳୟ ଆଉ ପ୍ରାଥମିକ ସ୍ତରର ବିଦ୍ୟାଳୟ ମାନଙ୍କରେ ଉପଲବ୍ଧ । ବାସ୍ତବରେ ଏହା ଏକ ବିଡ଼ମ୍ବନା । ଯେମିତି ଯୋଜନ ଯୋଜନ ଅଂଧାର ସବୁ ଆକାଶରୁ ଓହ୍ଲାଇ ଆସୁଛି ଏ ଧରାପୃଷ୍ଠକୁ । ଏକ ଛଟିଆ ସାମ୍ରାଜ୍ୟରେ ଜୀବନର ସମସ୍ତ ସ୍ୱପ୍ନ ଆକାଶକୁ ଛୁଇଁ ପାରନ୍ତି ନାହିଁ । ଛୁଇଁବା ସାମର୍ଥ୍ୟକୁ ବଢ଼ାଇବା ପାଇଁ ଅବାରିତ ସଂଗ୍ରାମ ଦରକାର, ଯାହା ନିରାମୟ ଜୀବନ ପାଇଁ ଏକମାତ୍ର ବାର୍ତ୍ତା । ତେଣୁ "ଜୀବନ ଓ ସଂଗ୍ରାମ" ଆସନ୍ତା କାଲିର ଝଡ଼ର ଗୀତି ।



# ଜୀବନ ଓ ସଂଗ୍ରାମ

**ସୁଦର୍ଶନ ଦାସ**

ମାଛ ସହିତ ପାଣିର ସଂପର୍କ ପରି ଜୀବନ ସହିତ ସଂଗ୍ରାମ ସେମିତି ନିବିଡ଼ ଭାବରେ ସଂପର୍କିତ । ପାଣି ବିନା ଯେମିତି ମାଛ ବଞ୍ଚି ପାରେନା, ସେମିତି ସଂଗ୍ରାମ ବିନା ଜୀବନ ଜିଇଁ ହୁଏନାହିଁ । ଡାରଓ୍ୱିନ୍‌ଙ୍କର ବିବର୍ତ୍ତନବାଦ ତତ୍ତ୍ୱ ଭିତରେ ଏହି ଗୂଢ଼ ମୃତ୍ୟୁଟିକୁ ଦେଖିବାକୁ ମିଳେ । 'ସର୍ଭାଇଭାଲ୍ ଅପ୍ ଦ ଫିଟେଷ୍ଟ' ଥିଓରୀ ଭିତରେ ଜୀବଜଗତର ବିବର୍ତ୍ତନର ଆଧାର ହେଉଛି ଏ ସଂଗ୍ରାମ । ସ୍ଥିତି ଏବଂ ସତ୍ତାକୁ ତିଷ୍ଠି ରଖିବା ପାଇଁ ଅହରହ ସଂଗ୍ରାମରେ ଲିପ୍ତ ପ୍ରତ୍ୟେକଟି ପ୍ରାଣୀ । ସେ ସଂଗ୍ରାମକୁ ଯିଏ ଜିଣିଲା, ସେ ତିଷ୍ଠିରହିଲା, ତା'ର ସତ୍ତା ବଜାୟ ରହିଲା, ଆଉ ସ୍ଥିତିର ଉତ୍ତରଣ ଘଟିଲା । ଏହି ସଂଗ୍ରାମ ମଧ୍ୟ ପ୍ରାଣୀର କ୍ରମବିକାଶର ମୌଳିକ ଉପାଦାନ । ଜେଲିରୁ ମାଛ, ମାଛରୁ ସରୀସୃପ ଓ ସରୀସୃପରୁ ବାନର ଆଉ ବାନରରୁ ମଣିଷକୁ ଉତ୍ତରଣ ଏହି ସଂଗ୍ରାମ ଭିତରେ ଲୁକ୍‌କାୟିତ । ତେଣୁ ଜୀବନ ସହିତ ସଂଗ୍ରାମ ପରସ୍ପର ଏତେ ପରିପୂରକ ଯେ, ତାକୁ ଅଲଗା କରିଦେଲେ ଜୀବନର ସତ୍ତା ମିଳିବା କଷ୍ଟ ।

ସଂଗ୍ରାମ ଏବଂ ସଂଘର୍ଷ ଭିତରୁ ହିଁ ଏ ଦୁନିଆ ମଧ୍ୟ ସୃଷ୍ଟି ହୋଇଛି । ଭାବବାଦୀ ଦର୍ଶନ, ଜଗତର ସୃଷ୍ଟି ବିଷୟରେ ଯେଉଁ ଯୁକ୍ତି ରଖେ ତାହା ବିଜ୍ଞାନ ସମ୍ମତ ନୁହେଁବୋଲି ପ୍ରମାଣିତ । କୌଣସି ଏକ ବ୍ୟକ୍ତି ଏ ଜଗତକୁ ସୃଷ୍ଟି କରିଛି ବୋଲି, ବହୁଦିନ ଧରି ଚାଲିଆସିଥିବା ଯୁକ୍ତିକୁ ହେଗଲ୍, ମାର୍କସ୍ ପରି ଦାର୍ଶନିକ ଏବଂ ସମାଜ-ବିଜ୍ଞାନୀମାନେ ଖଣ୍ଡନ କରି ବସ୍ତୁ ଭିତରେ ଅନ୍ତର୍ନିହିତ ଦୁଇ ପରସ୍ପର ବିରୋଧୀ ଶକ୍ତିର ସଂଘାତ ବା ସଂଘର୍ଷ ହିଁ ଜଗତର ସୃଷ୍ଟି ବୋଲି ବଳିଷ୍ଠ ଯୁକ୍ତି ଉପସ୍ଥାପିତ କରିଛନ୍ତି, ଯାହା ବିଜ୍ଞାନ ସମ୍ମତ ବୋଲି ପ୍ରମାଣିତ । ଉଦ୍‌ଜାନ ଏବଂ ଅକ୍ସିଜେନ୍, ଚରିତ୍ରଗତ ଭାବରେ ଏହି ଦୁଇ ପରସ୍ପର ବିରୋଧୀ ପରମାଣୁ ଯେମିତି ଜଳ ସୃଷ୍ଟିର କାରଣ ବୋଲି ବିଜ୍ଞାନ ସିଦ୍ଧ, ସେହିପରି ବସ୍ତୁର ଅଣୁ ଭିତରେ ଥିବା ନିଉଟ୍ରନ ଓ ପ୍ରୋଟନ୍ ଭିତରେ ଲଗାତର ଚାଲିଥିବା ସଂଘର୍ଷ, ବସ୍ତୁର ସୃଷ୍ଟି, ତା'ର ବିକାଶ ଓ ସ୍ଥିତିର ପରିବହନର କାରଣ ବୋଲି ଯୁକ୍ତି ସିଦ୍ଧ ଏବଂ ବୈଜ୍ଞାନିକ । କହିବା ବାହୁଲ୍ୟ, ସଂଗ୍ରାମ କେବଳ ଜୀବନର ସତ୍ତା ନୁହଁ, ବସ୍ତୁର ସତ୍ତାକୁ ମଧ୍ୟ ନିର୍ଦ୍ଧାରିତ କରିଥାଏ ।

ବସ୍ତୁ ଭିତରେ ସଂଘର୍ଷ ଯେମିତି ବସ୍ତୁର ସୃଷ୍ଟିର କାରଣ, ସେମିତି ସମାଜ ଭିତରେ ନିରନ୍ତର ସଂଘର୍ଷ ବା ସଂଗ୍ରାମ ସମାଜର ବିକାଶ ପ୍ରକ୍ରିୟାର ମୂଳମନ୍ତ୍ର । ଏକଥା କହିଥିଲେ ବିଶିଷ୍ଟ ଦାର୍ଶନିକ କାର୍ଲ ମାର୍କସ୍ । ମଣିଷ ସଭ୍ୟତାର ସୃଷ୍ଟି କାଳରୁ, ସମାଜର କ୍ରମବିକାଶକୁ ଦାର୍ଶନିକ ଦୃଷ୍ଟିକୋଣରୁ ବ୍ୟବଚ୍ଛେଦ କରି ସେ ଏହି 'ନିଷ୍କର୍ଷ'ରେ ଉପନୀତ ହୋଇଥିଲେ ଯେ, ଦୁଇ ପରସ୍ପର ବିରୋଧୀ ଶ୍ରେଣୀରେ ବିଭକ୍ତ ସମାଜ ଭିତରେ ଅନବରତ ସଂଘର୍ଷ ହିଁ ସମାଜ ବିକାଶର ଆଧାର । ଯେବେଠୁ ମଣିଷ ସମାଜ ଗଠନ କଲା, ଦଳବଦ୍ଧ ଭାବରେ ଜୀବନ ବିତାଇଲା ଏବଂ ଉତ୍ପାଦନ ପ୍ରକ୍ରିୟାରେ ନିଜକୁ ସାମିଲ କଲା, ସେବେଠୁଁ ଦ୍ୱନ୍ଦ୍ୱ ଆରମ୍ଭ ହେଲା ଏହି ଦୁଇ ଶ୍ରେଣୀ ଭିତରେ । ଆଦିମ ସମାଜକାଳରେ ମଣିଷ ଜୀବନର ଚଳଣି ଥିଲା ପଶୁଙ୍କ ପରି ଆଉ ଜଙ୍ଗଲ ଏବଂ ପ୍ରକୃତି ସହିତ ସଂଗ୍ରାମ କରି ବଞ୍ଚୁଥିଲା ମଣିଷ । ଯେତେବେଳେ ମଣିଷ ଦଳବଦ୍ଧ ଭାବରେ କହିଲା ଏବଂ କୃଷିକୁ ଜୀବିକାର ଏକ ମାଧ୍ୟମ ଭାବରେ ଆବିଷ୍କାର କଲା, ସେବେଠୁ ମଣିଷ ଭିତରେ ଦ୍ୱନ୍ଦ୍ୱ ସୃଷ୍ଟି ହେଲା ଏବଂ ଦୁଇଟି ଶ୍ରେଣୀରେ ବିଭକ୍ତ ହେଲା ସମାଜ । ଦାସ ସମାଜରେ, ଦାସ ଏବଂ ଦାସ ମାଲିକ, ସାମ୍ରାଜ୍ୟବାଦୀ ସମାଜରେ ସମାନ୍ତ ବା ଜମିଦାର ଏବଂ କୃଷିଶ୍ରମିକ ଓ ବଣିକ, ପୁଞ୍ଜିବାଦୀ ସମାଜରେ ପୁଞ୍ଜିପତି ଏବଂ ଶ୍ରମିକ- ଏହି ଭଳି ଶ୍ରେଣୀ ବିଭକ୍ତ ହେଲା ସମାଜ । ଗୋଟିଏ ଥିଲା ବାଲା, ଆଉ ଗୋଟେ ନଥିଲାବାଲା । ଗୋଟିଏ ପୁଞ୍ଜିପତି ଆଉ ଗୋଟେ ସର୍ବହରା । ଶୋଷକ-ଶୋଷିତ- ଏହିପରି ଦୁଇ ଶ୍ରେଣୀ ପରସ୍ପର ବିରୋଧୀ ଏବଂ ସେମାନଙ୍କର ଭିତରେ ଦ୍ୱନ୍ଦ୍ୱ, ସଂଗ୍ରାମର ରୂପ ନିଏ, ଏବଂ ସେହି ଅହରହ ସଂଗ୍ରାମ ଭିତରେ ସମାଜ ଗୋଟିଏ ପାହାଚରୁ ଅନ୍ୟ ପାହାଚକୁ ଉତ୍ତରିତ ହୁଏ । ଯେମିତି ଦାସ ମାଲିକ ଏବଂ ଦାସମାନଙ୍କ ଭିତରେ ସଂଘାତ ଫଳରେ ଜନ୍ମନେଲା ସାମନ୍ତବାଦୀ ସମାଜ। ସାମନ୍ତ ଏବଂ କୃଷି ଶ୍ରମିକ ଓ ବଣିକମାନଙ୍କ ଭିତରେ ସଂଗ୍ରାମ ଭିତରୁ ଜନ୍ମ ହେଲା ପୁଞ୍ଜିବାଦ, ସମାନ୍ତବାଦର କବର ଦେଇ । ମୋଟେ ଉପରେ କୁହାଯାଇପାରେ ସଂଗ୍ରାମ ଭିତରେ ସାମାଜିକ ଜୀବନ ଗୁଦ୍ଧିମନ୍ତ ହୁଏ, ସଭ୍ୟତା ବିକାଶ ଲାଭ କରେ ଏବଂ ସମାଜ ବିକାଶମୁଖୀ ହୁଏ । ଏହି ସଂଗ୍ରାମ ବ୍ୟତିରେକେ, ସମାଜ ସ୍ଥାଣୁ ପାଲଟି ଯାଏ, ଜୀବନର ଗତି ଏବଂ ସ୍ଥିତି ବଦଳେ ନାହିଁ ।

ସମାଜ ଏବଂ ସାମାଜିକ ଅବସ୍ଥାକୁ ବଦଳାଇବା ପାଇଁ ସଂଗ୍ରାମ ମଣିଷ ସମାଜର ଆଦିମକାଳରୁ ମଣିଷ ଭିତରେ ଉଙ୍କିମାରିଛି । ସକଳ ପ୍ରକାରର ଅତ୍ୟାଚାର, ଅନାଚାର, ଶୋଷଣ ବିରୁଦ୍ଧରେ ସମାଜ ଭିତରେ କିଛି ମଣିଷ ଛିଡ଼ା ହୋଇଛନ୍ତି ଯୁଗେ ଯୁଗେ । କୁସଂସ୍କାର, ଅବୈଜ୍ଞାନିକ,ଭାବଧାରା, ମଧ୍ୟଯୁଗୀୟ ଚିନ୍ତା ଚେତନା ଇତ୍ୟାଦି ବିରୁଦ୍ଧରେ

ମଧ୍ୟ କିଛି ମଣିଷର ସଂଗ୍ରାମ ଜୀବନ ପାଇଁ ନୂତନ ଆଲୋକର ସଞ୍ଚାର ସୃଷ୍ଟି କରିଛି । ଗାଲିଲିଓ, ସକ୍ରେଟିସ୍ ଭଳି ଅନେକ ଦାର୍ଶନିକ-ସଂସ୍କାରକ ସେଥିପାଇଁ ଜୀବନ ଦେଇଛନ୍ତି । ଦେଶପ୍ରେମରେ ଉଦ୍‌ବୁଦ୍ଧ ଅନେକ ମଣିଷ ନିଜ ନିଜର ଦେଶମାତୃକାର ମୁକ୍ତିପାଇଁ ଜୀବନକୁ ଉତ୍ସର୍ଗ କରିବା ଉଦାହରଣ ଇତିହାସରେ ଅନେକ । ସାମଗ୍ରିକ ଭାବରେ ବା ସ୍ଥାନୀୟସ୍ତରରେ ବିଭିନ୍ନ ସମସ୍ୟାକୁ ନେଇ ମଧ୍ୟ ସଂଗ୍ରାମୀ ମଣିଷଙ୍କର ଅବଦାନ ସମାଜର ବିକାଶ କ୍ଷେତ୍ରରେ ଅତୁଳନୀୟ ।

ସମାଜରେ ଭୁଲ୍ ଠିକ୍, ନ୍ୟାୟ-ଅନ୍ୟାୟ, ଉଚିତ-ଅନୁଚିତ ଭିତରେ ଦ୍ୱନ୍ଦ୍ୱ କିଛି ମଣିଷକୁ ଗୋଟିଏ ପକ୍ଷ ନେବାକୁ ବାଧ୍ୟ କରେ । ସତ୍ୟ, ନ୍ୟାୟ, ଉଚିତ୍ କଥା ପାଇଁ ଯେଉଁମାନେ ସ୍ୱର ଉଠାନ୍ତି, ସେମାନେ ହେଉଛନ୍ତି ସେହିଭଳି ସଂଗ୍ରାମୀ, ଯେଉଁମାନଙ୍କର ସମାଜକୁ ଅବଦାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ସଂଗ୍ରାମୀମାନଙ୍କର ଜୀବନ, ଅନ୍ୟମାନଙ୍କର ଜୀବନକୁ ଋଦ୍ଧିମନ୍ତ କରେ, ସେମାନଙ୍କୁ ପ୍ରଗତି ପଥରେ ପଥିକ ହେବାକୁ ବାଟ କଢ଼ାଏ । ଆଜିର ସମାଜରେ ଏହି ଧରଣ ମଣିଷଙ୍କ ସଂଖ୍ୟା କମ୍ ବୋଲି ଏକ ଧାରଣା ସାଧାରଣରେ ସୃଷ୍ଟି ହେଉଛି । ଅନ୍ୟର ଦୁଃଖ, ନିର୍ଯାତନା, କଷ୍ଟରେ ସମବେଦିତ ନହେବା, ସେଥିପାଇଁ ସ୍ୱାର୍ଥକାତର ହୋଇଯିବା ଆଜି ଏକଧାରା ପାଲଟିଛି । ଏହା କୌଣସି ସମାଜପାଇଁ ଶୁଭଲକ୍ଷଣ ନୁହଁ ।

ଜୀବନଟା ହେଉଛି ଏକ ସଂଗ୍ରାମ । ସେ ସଂଗ୍ରାମକୁ ଲଢ଼ିବାକୁ ହେବ । ତାହା ହେଉଛି ବ୍ୟକ୍ତିଗତ ସ୍ତରରେ । ଏଥିପାଇଁ ସମସ୍ତେ ସଂଗ୍ରାମରତ । ହେଲେ ସାମାଜିକ ଜୀବନରେ ବିକାଶ ପାଇଁ ଯେଉଁ ସଂଗ୍ରାମ ଲୋଡ଼ା ସେଥିପାଇଁ ଅଧିକ ସଂଘବଦ୍ଧ ସାମୂହିକ ସଂଗ୍ରାମ ସୃଷ୍ଟିହେବା ଆଜି ସମସ୍ତଙ୍କର କାମ୍ୟ । ଯେଉଁମାନେ ଏଥିପାଇଁ ସଂଗ୍ରାମରତ, ସେମାନେ ସମସ୍ତଙ୍କର ନମସ୍ୟ ।



# ସଂଘର୍ଷ ଓ ଜୀବନ

ରମାକାନ୍ତ ବେହେରା

The ultimate measure of a man is not where he stands in moments of comfort and convenience, but where he stands in times of challenge and controversy.

Martin Luther King.

ଜୀବନ ସଂଘର୍ଷମୟ, ସଂଘର୍ଷହୀନ ଜୀବନ ଜୀବନ ନୁହେଁ । ଏହା ଦୁଇ ପର୍ଯ୍ୟାୟରେ ବିଚାର କରାଯାଇପାରେ । ବ୍ୟକ୍ତିଜୀବନରେ ଏବଂ ଜାତୀୟ ଜୀବନରେ ।

ପ୍ରଥମେ ବ୍ୟକ୍ତିଜୀବନର ସଂଘର୍ଷ ବିଚାର୍ଯ୍ୟ, ଜୀବନରେ ପ୍ରତିଷ୍ଠା ପାଇଁ ନିଷ୍ଠାପୂତ କର୍ମ ସାଧନା ହିଁ ସଂଘର୍ଷ । ତେବେ ଜଣେ ରାଜକୀୟ ଐଶ୍ୱର୍ଯ୍ୟ ଭିତରେ ଜନ୍ମହୋଇ ଯଦି ଭୋଗବିଳାସରେ ମଜ୍‌ଗୁଲ ରହେ, ସେ ପ୍ରତିଷ୍ଠା ସଂଘର୍ଷମୟ ନୁହେଁ । ରାଜାର ପୁଅ ରାଜା ହେଲା ଭଳି ବ୍ୟାପାର । ରାଜନୀତି କ୍ଷେତ୍ରକୁ ଜନ୍ମସୂତ୍ରରେ କରାୟତ୍ତ କରାଯାଇପାରେ । କୂଟକପଟତା ବଳରେ କ୍ଷମତାର ଅପବ୍ୟବହାର, ଦୁର୍ନୀତି ତଥା ଅପଅର୍ଥର ଅପବ୍ୟବହାର ଦ୍ୱାରା ଜଣେ ତୁଙ୍ଗ ଆସନ ମଣ୍ଡନ କରିପାରେ, ଯାହା ବର୍ତ୍ତମାନ ଭାରତୀୟ ରାଜନୀତିର କଳଙ୍କିତ ଅଧ୍ୟାୟ । ଏପାଇଁ ଯେଉଁ ସଂଘର୍ଷ ତାହା ଯଥାର୍ଥ ସଂଘର୍ଷ ନୁହେଁ । ଏପାଇଁ ନେହେରୁଙ୍କ ଅପେକ୍ଷା ଲାଲ ବାହାଦୂର ଶାସ୍ତ୍ରୀଙ୍କ ଜୀବନାଦର୍ଶ ଅଧିକ ମହତ୍ତ୍ୱପୂର୍ଣ୍ଣ ।

ଶିଳ୍ପୀର ପୁଅ ଶିଳ୍ପୀ ହେବା, କିବା କବି / ବିଦ୍ୱାନର ପୁଅ କବି / ବିଦ୍ୱାନ ହେବାରେ ଯେଉଁ ସାଧନା ତାର ଆବଶ୍ୟକ, ସେଥିରେ ଗୌରବ ଅଛି କାରଣ କେବଳ ଜନ୍ମ ସୂତ୍ରରେ ଜଣେ ତାହା ଅର୍ଜନ କରିପାରେନା । ସେଥିପାଇଁ ପ୍ରାରବ୍ଧ ପ୍ରତିଭା ଥିବା ଦରକାର, ଶ୍ରମ, ପ୍ରଚେଷ୍ଟା ମଧ୍ୟ କରିବାକୁ ପଡ଼େ । ତଥାପି ପାରିବାରିକ ଅନୁକୂଳ ସ୍ଥିତି ଯଥେଷ୍ଟ ସାହାଯ୍ୟ କରିଥାଏ । ତେଣୁ ସଂଘର୍ଷ, ସାଧନାର ମହତ୍ତ୍ୱ କମ୍ ।

ସଂଘର୍ଷର ମହତ୍ତ୍ୱ ସବୁଠୁ ଅଧିକ ଗୌରବାବହ ହୁଏ ଜଣେ ପ୍ରତିକୂଳ ପରିସ୍ଥିତିରେ ଥାଇ ବହୁ ଘାତ ପ୍ରତିଘାତ ସତ୍ତ୍ୱେ ଯଦି ଉନ୍ନତିର ଶୀର୍ଷ ସ୍ପର୍ଶକରିପାରେ । ପୃଥିବୀର ବହୁ ମହାପୁରୁଷଙ୍କର ସଂଘର୍ଷମୟ ଜୀବନ ସାଧନା ଆମର ସ୍ମରଣୀୟ ଆଦର୍ଶ ହୋଇ ରହିଛି ।

ଦରିଦ୍ରକୁଳରେ ଜନ୍ମହେବା, ଜନ୍ମରୁ ପିତୃମାତୃହୀନ ବା ସର୍ବହରା ବିକଳାଙ୍ଗ ରୂପେ ଜନ୍ମିବାର ଅଭିଶାପ ସତ୍ତ୍ୱେ ଯଦି ଜଣେ ସାଧନା ବଳରେ ଆତ୍ମୋନ୍ନତିର ଉଚ୍ଚତମ ସୋପାନରେ ପହଞ୍ଚେ, ତେବେ ସେ ସଂଘର୍ଷର ମହତ୍ତ୍ୱ ନିଶ୍ଚୟ ଅଧିକ ।

ସେ ଦୃଷ୍ଟିରୁ ଫକୀରମୋହନ, ଗଙ୍ଗାଧର ଆଦି କବି ଜୀବନର ସଂଘର୍ଷ ଏବଂ ପ୍ରତିଷ୍ଠା ଜାତିପାଇଁ ଆଦର୍ଶ ନିଶ୍ଚୟ । ଫକୀରମୋହନ ଶୈଶବରୁ ପିତୃମାତୃହୀନ ଏବଂ ଦରିଦ୍ର, ଗଙ୍ଗାଧର ମଧ ଦରିଦ୍ର, ଉଭୟଙ୍କ ସ୍ୱଳ୍ପଶିକ୍ଷା, ଅଥଚ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗନିର୍ମାତା ଭାବେ ଉଭୟଙ୍କର ପ୍ରତିଷ୍ଠା ଅନନ୍ୟ, ତେଣୁ ସେମାନଙ୍କ ସଂଘାତମୟ ଜୀବନ ସାଧନା ପ୍ରଶଂସନୀୟ ସତ୍ୟ, କିନ୍ତୁ ଏମାନଙ୍କଠାରୁ ଆହୁରି ସଂଘର୍ଷମୟ ଜୀବନର ପ୍ରତିକୂଳତା ରହିଛି । ପିତାମାତା ହରାଇଥିବା ଅସହାୟ ଶିଶୁ ଦୁର୍ଭାଗା ସତ୍ୟ, କିନ୍ତୁ ପିତାମାତା ଥାଇ ଯଦି ସେମାନେ ପଙ୍ଗୁ ଅଥର୍ବ ହୋଇଥାନ୍ତି ସେମାନଙ୍କୁ ପୋଷିବାର ଦାୟିତ୍ୱ ଦୁର୍ବହ ବୋଝ ରୂପେ ଶୈଶବକୁ ବାଧ କରୁଥାଏ ତେବେ ସେ ସନ୍ତାନ ତ ଅଧିକ ଦୁର୍ଭାଗା ।

ଫକୀରମୋହନ, ଗଙ୍ଗାଧର, ମଧୁସୂଦନ ଦାସ କିବା ଗୋପବନ୍ଧୁଙ୍କ ବାଲ୍ୟ, କୈଶୋର ଏବଂ ପରବର୍ତ୍ତୀ କାଳ ସଂଘର୍ଷମୟ ସତ୍ୟ, ମାତ୍ର ପରିବାର ପୋଷିବାର ଦୁର୍ବହ ଦାୟିତ୍ୱ ସେମାନଙ୍କୁ ଦଗ୍ଧୀଭୂତ କରିନାହିଁ, ଅକ୍ଷମ ପିତାମାତା ବା ଆତ୍ମୀୟ ପରିଜନଙ୍କୁ ପୋଷିବା କିବା ବିରାଟ ପାରିବାରିକ ଦାୟିତ୍ୱ ଶୈଶବରୁ ବହନ କରି ଆତ୍ମୋନ୍ନତି ସହ ସମାଜ ତଥା ସାହିତ୍ୟର ଯଶସ୍ୱୀ ସେବକ ହବାର ସଂଘର୍ଷ ଅଧିକ ଗୌରବୋଜ୍ଜ୍ୱଳ ନିଶ୍ଚୟ ।

ଆମେ ଅନେକ ସମୟରେ ଜଣକର ପ୍ରତିଭା ବା ପ୍ରତିଷ୍ଠାକୁ ତାହା ସିଦ୍ଧି ଉପରେ ବିଚାର କରୁ । କି ଅବସ୍ଥାରେ ଜଣେ ସେ ସିଦ୍ଧି ଲଭିଛି, ତାହା ଗୌଣ ରହିଯାଏ । ଜୀବନ ସଂଘର୍ଷର ଯଥାର୍ଥ ବିଚାର ସେଠି ଥାଏନା । 'ଯୋ ଜିତା ୱହି ସିକନ୍ଦର' ଏହାହିଁ ପ୍ରଚଳିତ ଧାରା । କିନ୍ତୁ ପ୍ରକୃତରେ ସ୍ରୋତର ଅନୁକୂଳରେ ସନ୍ତରଣକାରୀର ମାଇଲେ ପହଁରିବାଠାରୁ ପ୍ରତିକୂଳ ସନ୍ତରଣକାରୀଙ୍କ ମାତ୍ର କେଇଫୁଟ ଅଗ୍ରଗତିର ଗୌରବ ନିଶ୍ଚୟ ଅଧିକ । ଅବଶ୍ୟ ଏହା ସମାଜ ଚକ୍ଷୁରେ ବିଚାରକୁ ଆସେନା । ତେଣୁ ବ୍ୟକ୍ତିଗତ ଜୀବନ ସଂଘର୍ଷ ଏବଂ ସିଦ୍ଧିର ପରାକାଷ୍ଠା ପ୍ରକୃତରେ ତା'ର ଜୀବନସ୍ଥିତିର ଅବସ୍ଥା ଉପରେ ବିଚାର୍ଯ୍ୟ ହେବା ଉଚିତ ।

ସେ ଦୃଷ୍ଟିରୁ ରବୀନ୍ଦ୍ରନାଥଙ୍କ ସାରସ୍ୱତ କୃତି ଓ କୀର୍ତ୍ତି ବିଶ୍ୱର ବିସ୍ମୟ ଏବଂ ପ୍ରତିଷ୍ଠା ମଧ ଅତୁଳନୀୟ । କିନ୍ତୁ ପ୍ରାଚୁର୍ଯ୍ୟ ଏବଂ ପାରିବାରିକ ଅନୁକୂଳ ଆଶୀର୍ବାଦ ତାଙ୍କ ପଛରେ ଥିଲା, ଯାହା ଭୀମଭୋଇମାନଙ୍କର ନଥିଲା । ତେଣୁ ଏକ କ୍ଷୁଦ୍ର ଭୂଖଣ୍ଡରେ ତାଙ୍କର ଖ୍ୟାତି ଥିଲେ ମଧ ଜୀବନ ସଂଘର୍ଷ, ସାଧନା ଏବଂ ସିଦ୍ଧିରେ ତାଙ୍କ ମହତ୍ତ୍ୱ ବି ଅତୁଳନୀୟ ।

ଅନେକଙ୍କ ମତରେ ଦୁର୍ଭାଗ୍ୟ ବା ଦୁଃସ୍ଥିତି ପ୍ରକୃତ ସାଧନନିଷ୍ଠ ପୁରୁଷକାର ନିକଟରେ ହାରମାନେ, ତାର ଅଗ୍ରଗତିରେ ସମସ୍ତ ଅନ୍ତରାୟକୁ ସେ ଅତିକ୍ରମ କରିଯାଏ । କଠୋର ଅଧ୍ୟବସାୟ ଥିଲେ ସମସ୍ତ ପ୍ରତିକୂଳତାର ଊର୍ଦ୍ଧ୍ୱକୁ ସେ ଯାଇପାରେ । ଅବଶ୍ୟ ଏହା ସତ୍ୟ, ମାତ୍ର ସର୍ବକ୍ଷେତ୍ରରେ ନୁହେଁ, ଯେତେ ପ୍ରଚେଷ୍ଟା / ପ୍ରତିଭା / ସାଧନା ଥିଲେ ମଧ୍ୟ ଐଶ୍ୱୀ ଆଶୀର୍ବାଦ ନଥିଲେ ଜୀବନ ସଂଘର୍ଷରେ ସଫଳତାର ମୁଖ ଦର୍ଶନ ସମ୍ଭବ ହୋଇପାରେନା । ଯେଉଁମାନେ ଉନ୍ନତିର ହିମାଳୟ ଶୀର୍ଷ ଆରୋହଣ କରିଥାନ୍ତି ଅଧିକାଂଶ ଦମ୍ଭୋକ୍ତିରେ ଏହା ଘୋଷଣା କରିଥାନ୍ତି । କିନ୍ତୁ ଦୁଃଖ ବିପଦ ବା ପ୍ରତିବନ୍ଧକ ଯେତେ ସମ୍ମୁଖୀନ ହୋଇଥିଲେ ମଧ୍ୟ ସେମାନେ ପ୍ରକୃତ ଦୁଃଖର ଅସୀମ ଅନ୍ଧାରର ମୁଖଦର୍ଶନ କରିନଥାନ୍ତି ।

ଭାଗ୍ୟବାଦୀ ହୋଇ ପୌରୁଷର ପ୍ରଚେଷ୍ଟାରୁ ବିରତ ରହିବା ଅବଶ୍ୟ କାପୁରୁଷତା, କିନ୍ତୁ ପୁରୁଷକାର ଯେତେ ବଳିଷ୍ଠ ହେଲେ ମଧ୍ୟ, ସାଧନା ଓ ଶ୍ରମ ଯେତେ ଅପରିସୀମ ହେଲେ ମଧ୍ୟ ଦୁଃଖ ବିପଦର ଏମିତି ଅନ୍ଧକାରାଚ୍ଛନ୍ନ ଅଜ୍ଞାତ ଇଲାକା ରହିଛି ସେଠି ସମସ୍ତ ଅହଙ୍କାର ମୁହୂର୍ତ୍ତ ମଧ୍ୟ ଚୂର୍ଣ୍ଣ ହୋଇଯାଏ । ଅନୁଭବୀ ବ୍ୟତୀତ ସଫଳତା ପ୍ରାପ୍ତ ଜୀବନ ଏହାର ଗହନ ଅଥଚ ନିଷ୍ପ୍ରଭାତୀ ଅନ୍ଧାରର କୁହୁଟୀକୁ ଉପଲବ୍ଧି କରି ପାରେନା ।

ଏବେ ଜୀବନ ଓ ସଂଘର୍ଷର ଦ୍ୱିତୀୟ ପର୍ଯ୍ୟାୟ ଆଲୋଚ୍ୟ । ଜାତୀୟ ଜୀବନରେ ଯେଉଁ ସଂଘର୍ଷ, ତାହା ରାଷ୍ଟ୍ରୀୟ କର୍ତ୍ତବ୍ୟବୋଧର ଏକ ସମନ୍ୱିତ ବିନ୍ୟାସ । ସାମଗ୍ରିକ ଭାବେ ବ୍ୟକ୍ତିଗତ ଜୀବନଦର୍ଶନ, ସାଧନାର ବ୍ୟାପକ ପରିଚୟ ଓ ପ୍ରତିଷ୍ଠା ଏହାକୁ ପରିପୁଷ୍ଟ କରେ । ଏହା ଗୋଟିଏ ଜାତିର ସାଂସ୍କୃତିକ ଇତିହାସ, ଯାହା ପାଶ୍ଚାତ୍ୟ ସଂଘର୍ଷମୟ ଦୃଷ୍ଟିଭଙ୍ଗୀର ସଂପୂର୍ଣ୍ଣ ବିପରୀତ । ଭାରତୀୟ ଜୀବନ ସାଧନା ଓ ସଂଘର୍ଷ ତ୍ୟାଗ ଉପରେ ଗୁରୁତ୍ୱ ଦିଏ । କିନ୍ତୁ ସେମିଟିକ୍ ଦର୍ଶନ ଭୋଗକୁ ହିଁ ପ୍ରାଧାନ୍ୟ ଦିଏ ।

ନିଜ ସ୍ୱାର୍ଥ ହାସଲ ପାଇଁ ଅନ୍ୟର ସ୍ଥିତିକୁ ବିପନ୍ନ କରିବା, ବିନାଶ କରିବା, ଲୁଣ୍ଠନ କରିବା, ଧର୍ମନାମରେ ରକ୍ତତାଣ୍ଡବ ସୃଷ୍ଟି କରିବା, ସେପାଇଁ 'ଯୋର ଯାର ମୁଲକ ତାର' ସାର୍ଥି / ହିଂସ୍ର ସ୍ୱଭାବ ହିଁ ସେମାନଙ୍କ ଦର୍ଶନ, ସଂସ୍କୃତି ଏବଂ ସଂଘର୍ଷ । ସେମାନଙ୍କ ଦାର୍ଶନିକ ଡାରୱିନ୍‌ଙ୍କ ବିବର୍ତ୍ତନବାଦ (Evolution Theory) Survival of the fit-test in the law of nature ଏବଂ Stuggle of existence ଜୀବନର ସ୍ଥିତିପାଇଁ ଅନବରତ ସଂଗ୍ରାମ ହିଁ ଉଦ୍‌ଘୋଷଣ କରେ ।

ସେଇପାଇଁ ଅସ୍ତ୍ର ଶକ୍ତିରେ ଯୋର ଦେଇ ବିଶ୍ୱରେ ସେମାନେ ଆତଙ୍କ ଖେଳାଇ ଆସିଛନ୍ତି, କେବଳ ଅତୀତ ଇତିହାସ ଏହାର ସାକ୍ଷୀ ନୁହେଁ, ବର୍ତ୍ତମାନ ତଥା ଭବିଷ୍ୟତ ମଧ୍ୟ ବିଧ୍ୱଂସ ହେବାର ଯନ୍ତ୍ରଣାରେ ଜର୍ଜର ହୋଇ ରହିଛି ।

ସେମାନଙ୍କ ଦାର୍ଶନିକ ଗ୍ରନ୍ଥ ସେମାନଙ୍କୁ ପୃଥିବୀକୁ ଲୁଣ୍ଠନ କରିବା ପାଇଁ ଅଧିକାର ଦିଆଇଛି -The fear and dread of you will fall upon all the beasts of the earth and all the birds of the air upon every creature that moves along the ground and upon all the fish of the sea. They are given into your hands. Everything that lives and moves will be food for you just as I give you the green plants. I now give you everything. (Genesis-9/23)

ନିଉଟନଙ୍କ ଯନ୍ତ୍ରଜଗତ, ସ୍ମିଥ୍, କେନ୍‌ସଙ୍କ ସ୍ୱାର୍ଥକେନ୍ଦ୍ରିକ ବିସ୍ତୁବାଦୀ ଅର୍ଥନୀତି ମଣିଷର ପଶୁତ୍ୱକୁ ଆହୁରି ଉଗ୍ର ଏବଂ ହିଂସ୍ର କଲା, ପ୍ରକୃତିକୁ ଯଥେଚ୍ଛା ଲୁଣ୍ଠନ (exploitation of Nature) ଏବଂ ବ୍ୟକ୍ତିବାଦୀ ଅଧିକାର (Individual Right) ଉଭୟତତ୍ତ୍ୱ ଜଗତକୁ ଉଚ୍ଛନ୍ନ କଲା । ଆଡାମ୍‌ସ୍ମିଥ୍ ଜୀବନରେ ନ୍ୟାୟନୀତିକୁ ଜଳାଞ୍ଜଳି ଦେଇ ଅସାଧୁ, ଲୁଣ୍ଠନ ପ୍ରବୃତ୍ତିକୁ ଉତ୍ସାହିତ କଲା- Don't try to do good, let good emerge as a by product of selfishness.

ପାଶ୍ଚାତ୍ୟ ଜଗତର ଅନ୍ୟତମ ପ୍ରଖ୍ୟାତ ଅର୍ଥନୀତିଜ୍ଞ କେନ୍‌ସ୍ ଘୋଷଣା କଲେ- For an other century we just persuade ourselves and everyone else that good is evil and evil is good because evil is effective, good is not. Let avarice and usury be our gods for a little while longer for they alone can bring us out of the tunnel of poverty and show us the light of pleasure. (Souvenir-Hindu Vishwa, 1989 p.179)

ଏଭଳି ଅସଭ୍ୟ ଅସତ୍ୟ ପ୍ରରୋଚିତ ପରଧନ ଲୁଣ୍ଠନ ପ୍ରବୃତ୍ତିକୁ ପ୍ରୋତ୍ସାହନ ମାନବ ଜାତିର ଯେ କି କ୍ଷତି କରିଛି ତାହା ଭାଷାର ଅତୀତ; ଆଶ୍ଚର୍ଯ୍ୟର କଥା ଏଇଭଳି ଦାନବୀୟ ପଶୁତ୍ୱର ପ୍ରଶଂସା କରି ପାଶ୍ଚାତ୍ୟ ଜଗତର ସେରା ଦାର୍ଶନିକ ଗର୍ବର ସହ ଘୋଷଣା କରନ୍ତି Every English man is born with certain miraculous power that makes him the master of the world. (Man of Destiny- Bartand Russel-p.125)

ପ୍ରକୃତରେ 'Master' ନୁହେଁ 'Destroyer'ରେ ପରିଣତ କରିଛି । କବି କଳ୍ପନାର ଏ ସ୍ୱପ୍ନମୟ ମର୍ତ୍ତ୍ୟଭୂମି ପାଶ୍ଚାତ୍ୟ ଭୂଖଣ୍ଡର ଶ୍ରେଷ୍ଠକବି ଟି.ଏସ୍. ଇଲିୟଟ୍‌ଙ୍କ କବିତାରେ ହୋଇଉଠିଲା ପୋଡାଭୂଇଁ ବା 'Wasteland' ।

ପାଶ୍ଚାତ୍ୟ ସଂକୀର୍ଣ୍ଣ ଭୋଗବାଦୀ ଦର୍ଶନର କଠୋର ସମାଲୋଚନା କରି ଭାରତରେ ଉପନିଷଦୀୟ ଆର୍ଷ ଚେତନାକୁ ହିଁ ମାନବ ଜାତିର ପରିତ୍ରାଣର ଏକମାତ୍ର ପଥ ବୋଲି ଘୋଷଣା କରିଛନ୍ତି-

We are the hollow men

We are the stuffed men

Head pieces filled with straw

x x x

*Datta, Dayadhwam, Damyata'*

ବିଶ୍ୱରେ ୩ ପ୍ରକୃତିର ମଣିଷ ଅଛନ୍ତି । ମାନବ, ଦାନବ, ଦେବ; ଜଗତର କଲ୍ୟାଣ ନିମିତ୍ତ ତିନିଜଣଙ୍କ ପାଇଁ ବ୍ରହ୍ମାଙ୍କ ପରାମର୍ଶ ହେଲା 'ଦ'; ଅର୍ଥାତ୍ ମଣିଷମାନେ 'ଦ' ଅର୍ଥରେ ଦତ୍ତ ବା ଦାନ କରିବେ, ଦାନବ ବା ଅସୁର ପ୍ରବୃତ୍ତି ଭାବାପନ୍ନମାନେ 'ଦ' ଅର୍ଥରେ 'ଦୟଧ୍ୱମ୍' ବା ଦୟାଭାବ ପୋଷଣ କରିବେ, ଦେବ ଭାବାପନ୍ନମାନେ 'ଦ' ଅର୍ଥରେ 'ଦମ୍ୟତ' ବା ସଂଯମ ଅବଲମ୍ବନ କରିବେ । 'ଦାନ-ଦୟା-ସଂଯମ' ହେଉଛି ବିଶ୍ୱ ଶାନ୍ତି ଓ ସହାବସ୍ଥାନର ସଞ୍ଜିବନୀ ଶକ୍ତି । ଏହାକୁ ବିଶେଷତଃ ସଂଘର୍ଷ ବା ଯୁଦ୍ଧପ୍ରିୟ ମାନବସମାଜ ଗ୍ରହଣ କଲେ ବିଶ୍ୱ ବାସ୍ତବରେ ବିଶ୍ୱାସ ଓ ବୈଭବର ବାସଯୋଗ୍ୟ ହୋଇପାରିବ ।

ସଂଘର୍ଷକୁ ରକ୍ତକ୍ଷୟ, ଅନ୍ୟର ଅସ୍ତିତ୍ୱଲୋପ ଏବଂ ତାର ସର୍ବସ୍ୱ ଗ୍ରାସ କରି ପୃଥିବୀକୁ ଧ୍ୱଂସର ପୋଡ଼ାଭୂମିରେ ପରିଣତ କରିବାର ନକାରାତ୍ମକ ପାଶ୍ଚାତ୍ୟ ଭୋଗବାଦୀ ପ୍ରବୃତ୍ତି ବିଶ୍ୱଯୁଦ୍ଧର ପ୍ରଳୟ ଆତଙ୍କ ସୃଷ୍ଟି କରିଛି । ମାତ୍ର ଭାରତୀୟ ମର୍ମରେ ସଂଘର୍ଷ ହେଲା ଜୀବନ ସାଧନା, ଯାହା ବ୍ୟକ୍ତିର ଆତ୍ମପ୍ରତିଷ୍ଠା ତଥା ଜାତୀୟ ଅଭ୍ୟୁତ୍ଥାନର ସକାରାତ୍ମକ ଆଧ୍ୟାତ୍ମିକ ଚେତନା, ଏହାହିଁ ଆଜିର ବିଷମୟ ବିଶ୍ୱଜୀବନର ପରିତ୍ରାଣର ବିଶଲ୍ୟକରଣୀ ।

ହଜାର ହଜାର ବର୍ଷ ପୂର୍ବରୁ ଆର୍ଯ୍ୟଋଷି ବିଶ୍ୱବାସୀଙ୍କୁ ସେଇ ଅମୃତ ସନ୍ଦେଶ ଶୁଣାଇଛନ୍ତି-

ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ ! ଆଯେ ଧାମାନି ଦିବ୍ୟାନି ତସ୍ଥୁ
ବେଦାହମେତଂ ପୁରୁଷଂ ମହାନ୍ତମ, ଆଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍
ତ୍ୱମେବ ବିଦିତ୍ୱାଦି ମୃତ୍ୟୁମେତି, ନାନ୍ୟପନ୍ଥା ବିଦ୍ୟତେ ଅୟନାୟ ॥
(ଶ୍ୱେତାଶ୍ୱେତର ୩/୮)

ସ୍ୱପ୍ରକାଶ ଓ ଅଜ୍ଞାନାତୀତ ସେଇ ସର୍ବବ୍ୟାପୀ ପୁରୁଷଙ୍କୁ ମୁଁ ଜାଣେ । ତାଙ୍କୁ ଜାଣିଲେ ହିଁ ଜୀବନ ମୃତ୍ୟୁକୁ ଅତିକ୍ରମ କରିବାକୁ ସମର୍ଥ ହୁଏ, କାରଣ ଅମୃତ ଲାଭର ଆଉ ଅନ୍ୟ ପନ୍ଥା ନାହିଁ ।

ଦଶହଜାର ବର୍ଷ ପୂର୍ବରୁ ଯେତେବେଳେ ସମଗ୍ର ପୃଥିବୀ ଅଜ୍ଞାନ ଅନ୍ଧାକାରାଚ୍ଛନ୍ନ ଥିଲା ମହର୍ଷି ମନୁ ବଜ୍ର କଣ୍ଠରେ ବିଶ୍ୱବାସୀଙ୍କୁ ଆହ୍ୱାନ ଦେଇଥିଲେ- "ଏତଦ୍ଦେଶ ପ୍ରସୂତସ୍ୟ ସକାଶାତ୍ ଅଗ୍ରଜନ୍ମନଃ । ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ॥" (୨/୨୦)

'ହେ ପୃଥିବୀବାସୀ, ଅଗ୍ରଜ ଏହି ଦେଶବାସୀଙ୍କ ଜ୍ଞାନ ଜ୍ୟୋତିରେ ନିଜକୁ ଉଦ୍‌ଭାସିତ କର' ।

ଆଜିର ପାଶ୍ଚାତ୍ୟ ମୂର୍ଦ୍ଧନ୍ୟ ମନୀଷୀଗଣ ସଂଘର୍ଷକୁ ରକ୍ତପାତ ଅର୍ଥରେ ନୁହେଁ ଭାରତୀୟ ମର୍ମରେ ଆଧ୍ୟାତ୍ମିକ ଜୀବନ ସାଧନା ଅର୍ଥରେ ଗ୍ରହଣ କରିବା ହିଁ ମାନବ ଜାତିର ପରିତ୍ରାଣର ଏକମାତ୍ର ପନ୍ଥା ବୋଲି ମୁକ୍ତକଣ୍ଠରେ ସ୍ୱୀକାର କରୁଛନ୍ତି । କେବେଳ ଟି.ଏସ୍. ଇଲିୟଟ ଭଳି କବି ନୁହନ୍ତି ନିତ୍‌ସେ ଭଳି ନାସ୍ତିକବାଦୀ ମଧ୍ୟ ଆହ୍ୱାନ ଦେଇଛନ୍ତି- We shall have to borrow from the Hindus if we wnat to make the people of the world real man- (Nitzsche on Hinduism) ଅର୍ଥାତ୍ ପୃଥିବୀବାସୀଙ୍କୁ ପ୍ରକୃତ ମଣିଷ ହେବାକୁ ହେଲେ ହିନ୍ଦୁର ବିଚାରଧାରାକୁ ହିଁ ଗ୍ରହଣ କରିବାକୁ ହେବ ।

ଯୁଦ୍ଧ, ପରସ୍ୱ ଅପହରଣ, ଏବଂ ଆଧିପତ୍ୟ ଜାହିର ଅର୍ଥରେ ସଂଘର୍ଷକୁ ଆମେରିକା ଗ୍ରହଣ କରି ପଶୁପ୍ରବୃତ୍ତିର ଶିକାର ହୋଇଛି । ଏ ଯୁଗର ଅନ୍ୟତମ ପ୍ରଖ୍ୟାତ ନୋବେଲ ପୁରସ୍କାର ବିଜେତା Robert William Feget ତାଙ୍କର Awakening and future of Egalitarianism ଗ୍ରନ୍ଥରେ ଆମେରିକାବାସୀଙ୍କ ସେଇ ଅଶାନ୍ତ ଅନ୍ତର୍ଜ୍ୱାଳା ପ୍ରକାଶ କରିଛନ୍ତି 'The people of America are starving not in their stomach but in their hearts where animal instincts have been dominating over human instincts.

କେବଳ ଆମେରିକା ବାସୀଙ୍କୁ ନୁହେଁ ସମଗ୍ର ବିଶ୍ୱର ବସ୍ତୁବାଦୀ ଅପସଂସ୍କୃତି ଗ୍ରସ୍ତ ଯୁଦ୍ଧଖୋର ଜାତିଙ୍କ ପାଇଁ ଏ ଉକ୍ତି ପ୍ରଯୁଜ୍ୟ ।

ଏମିତି ବହୁ ମନୀଷୀଙ୍କ ହୃଦୟର ଅନୁଭବକୁ ସ୍ମରଣ କରାଯାଇପାରେ । ଯୁଦ୍ଧାର୍ଥରେ 'ସଂଘର୍ଷ'କୁ ପରିହାର କରି ଆଧ୍ୟାତ୍ମିକ ଜୀବନ-ସାଧନା ମର୍ମରେ ଗ୍ରହଣ କରିବାକୁ ଏ ଯୁଗର ଅନ୍ୟତମ ଶ୍ରେଷ୍ଠ ଐତିହାସିକ ଆର୍‌ନୋଲାଡ଼ ଟଏନ୍‌ବିଙ୍କ ଚେତାବନୀକୁ ଏଠାରେ ଉଦ୍ଧାର କରି ପ୍ରବନ୍ଧର ଉପସଂହାର କରୁଛି-

At this supremely dangerous moment in human history the only way of salvation for mankind is the Indian way... the primary reason is that the eternal Indian teaching is right, right because it flows from the true vision of spiritual reality. (Indian Contribution to World Tought and Culture.)

ବିଦ୍ୱାନ ସୁଧୀଗଣଙ୍କୁ ଏହାର ମର୍ମ ବୁଝାଇବାର ନୁହେଁ, ଆଧ୍ୟାତ୍ମିକ ଅବଦାନ ପାଇଁ ମାନବ ସଭ୍ୟତାର ସଂସ୍କୃତିର ଆଦ୍ୟଲଗ୍ନରୁ ଭାରତ ହିଁ ବିଶ୍ୱଗୁରୁ ଆସନ ଅଳଙ୍କୃତ କରିଥିଲା, ଆଜି ତଥା ଭବିଷ୍ୟତରେ ମଧ୍ୟ ସଂଘର୍ଷମୟ ଜୀବନ ସାଧନ ପାଇଁ ଭାରତର ନିର୍ଦ୍ଦେଶିତ ପଥହିଁ ଏକମାତ୍ର ଅବଲମ୍ବନ ।

ବିଶ୍ୱ ଜୀବନ ସ୍ଥିତିର ଏହାହିଁ ସଞ୍ଜୀବନୀ ସୁଧା- ଏହାହିଁ ବିଶ୍ୱବିବେକର ଅନୁଭୂତ ସତ୍ୟ, ଶାଶ୍ୱତ, ଚିରାୟତ ଅକ୍ଷୟ ଓ ଅଭ୍ରାନ୍ତ ପ୍ରତ୍ୟୟ ଓ ପ୍ରତିଶ୍ରୁତି ॥



# ସରିନାହିଁ ସମର

**ଶ୍ରୀକାନ୍ତ ଚରଣ ପାତ୍ର**

ପ୍ରତ୍ୟେକ ଜୀବର ଜୀବନର ଅବଧି ତାର ଜନ୍ମଠୁଁ ଶେଷ ନିଃଶ୍ୱାସ ତ୍ୟାଗ ମଧ୍ୟରେ ସୀମିତ ହେଲେ ବି ପ୍ରତ୍ୟେକ ମୁହୂର୍ତ୍ତରେ ନିଜର ଅସ୍ତିତ୍ୱ ବଜାୟ ରଖିବା ପାଇଁ ସେ ନିଜର ସଂଗ୍ରାମ ଅବ୍ୟାହତ ରଖିଥାଏ । ମଣିଷଜଗତର ପ୍ରାଣୀମାନଙ୍କୁ ବାଦ୍‌ଦେଲେ କେବଳ ମଣିଷର ହିଁ ପ୍ରତିକୂଳ ପରିସ୍ଥିତିକୁ ସାମ୍ନା କରି ଜିଇଁ ରହିବାର ସାମର୍ଥ୍ୟ ରହିଛି ।

ଖାଦ୍ୟ, ବସ୍ତ୍ର, ବାସଗୃହ ଓ ଶିକ୍ଷାଲାଭ କରିବା ଭଳି ସମସ୍ୟାର ସମାଧାନ ନିମନ୍ତେ ସେ ପ୍ରଚେଷ୍ଟା କରିଥାଏ । ସର୍ବୋପରି, ଯେକୌଣସି କ୍ଷେତ୍ରରେ ତା'ଠାରୁ ଶ୍ରେଷ୍ଠ ମନେ ହେଉଥିବା କାହାରି ସହିତ କେବଳ ସମତୁଲ୍ୟ ହେବା ତାର ଲକ୍ଷ୍ୟ ହୁଏତ, ବରଂ ତାଙ୍କୁ ଅତିକ୍ରମ କରିଯିବାର ଆଗ୍ରହ, ମାନସିକତା ଓ ବୁଦ୍ଧିମତ୍ତା ତା ମନରେ ଉଦୟ ହୁଏ ।

ସବୁ କିଛି କ୍ଷମତା, ଅର୍ଥ, ପ୍ରତିପତ୍ତି ଓ ଜ୍ଞାନ ଇତ୍ୟାଦି ଅର୍ଜନ କରିବାରେ ଯେମିତି ସେ ଶୀର୍ଷରେ ପହଞ୍ଚିବାକୁ ଚାହେଁ, ସେଇଭଳି ଦାନ ଦେବାରେ ମଧ୍ୟ ସେ କାର୍ପଣ୍ୟ ଦେଖାଏ ନାହିଁ । ଏମିତି ବି ସମୟ ଆସେ, ଯେତେବେଳେ ତାର ବହୁ କଷ୍ଟଲବ୍ଧ ଓ ଅର୍ଜିତ ସମ୍ପତ୍ତି, କ୍ଷମତା ଓ ସଂସାର ଭୋଗ ବିଳାସ ଓ ବନ୍ଧନକୁ ଛିନ୍ନ କରି ରିକ୍ତହସ୍ତରେ ଗୃହତ୍ୟାଗୀ ହୋଇ ଇଷ୍ଟଙ୍କର କୃପାଲାଭ ନିମନ୍ତେ ନିର୍ଜନ ସ୍ଥାନରେ ତପସ୍ୟା ବା ସାଧନାରେ ସେ ମଗ୍ନହୁଏ । ତେବେ, ତାର ପ୍ରତ୍ୟେକ କର୍ମରେ ସେ ଉତ୍‌କର୍ଷତା ଲାଭ କରିବାର ପ୍ରୟତ୍ନ କରିଥାଏ, କିନ୍ତୁ ନିର୍ବିଘ୍ନରେ ସେ ତାର ଲକ୍ଷ୍ୟସ୍ଥଳରେ ଉପନୀତ ହୋଇପାରେନି । ଏଥିପାଇଁ ତାକୁ ବହୁବିଧ ପ୍ରତିକୂଳ ପରିସ୍ଥିତି, ବିରୋଧୀ ମଣିଷ ଓ ଜୀବଜନ୍ତୁମାନଙ୍କୁ ସାମ୍ନା କରିବାକୁ ପଡ଼ିଥାଏ । ତେଣୁ, ବାସ୍ତବ ଦୃଷ୍ଟିକୋଣରୁ ବିଚାର କଲେ, ପ୍ରତ୍ୟେକ ମଣିଷ ହିଁ ଜଣେ ଜଣେ ସଂଗ୍ରାମୀ । କେତେବେଳେ ସେ ଜୀବନ ସଂଗ୍ରାମରେ ବିଜୟୀହୁଏ ବା କେତେବେଳେ ପରାଜିତ ହୋଇ ଗ୍ଲାନିରେ ଜୀବନ ବିତାଇଥାଏ । ଅନ୍ୟକେହି ଉତ୍ତେଜିତ ହୋଇ ଆତ୍ମଘାତୀ ହୋଇ ଭୀରୁ, କାପୁରୁଷ ଭଳି ସଂସାରରୁ ଚିର ବିଦାୟ ନେଇଯାଏ । ସେ ଯାହା ବି ହେଉ । ମଣିଷର ଜୀବନଦୀପ ସ୍ୱାଭାବିକ ବା ଅସ୍ୱାଭାବିକ ଭାବରେ ଲିଭିଗଲେ, ତାର ଅନ୍ଧକାର ଦୂରକରି ନିଜର ସ୍ଥିତି ଜାହିର କରିବାର ଜୀବନବ୍ୟାପୀ ସାଧନା ଓ ସଂଗ୍ରାମ ଅନ୍ତ ହୁଏ ।

ମୋ ଜୀବନକାଳକୁ ମୁଁ କେବେ ବି ନିରାଶାର ମରୁଭୂମି ଭାବରେ ଗ୍ରହଣ କରିନି । ସଦାବେଳେ ଭାବିଛି, ଜୀବନ ହିଁ ସତ୍ୟ ଓ ଜୀବନ ହିଁ ପ୍ରିୟ । ତେଣୁ, ମନରେ ଉଦୟ ହେଉଥିବା ନିରାଶ ଭାବକୁ ଦୂର କରିବା ପାଇଁ ସାରାଜୀବନ ସଂଗ୍ରାମ କରି ଆସିଛି, ସଂଘର୍ଷରତ ରହିଛି ବାଧା ବିପଦକୁ ଏଡ଼ାଇ ଓ ଯେତେ ବଡ଼ ଶତ୍ରୁ ମୋର ପଥରୋଧ କରୁନା କାହିଁକି, ତାର ସମ୍ମୁଖୀନ ହୋଇ ଆଗକୁ ପାଦ ବଢ଼ାଇବା ନିମନ୍ତେ । ଦୁଃଖ ଓ ବିପଦ ସମୟରେ ବିଭୁ ପଦାରବିନ୍ଦରେ ନିଜକୁ ସମର୍ପଣ କରିଦେଇ ଧୈର୍ଯ୍ୟଧରି ଦୁଃଖକୁ ସୁଖରେ ଓ ମନରେ ଉଦୟ ହେଉଥିବା ହତାଶ ଭାବକୁ ଆଶାରେ ପରିଣତ କରିବା ପାଇଁ ସଦାବେଳେ କାର୍ଯ୍ୟକରି ଚାଲିଛି ।

ଏକ ଦରିଦ୍ର କୃଷିଜୀବୀ ପରିବାରରେ ମୋର ଜନ୍ମ । ଅଭାବ ଓ ଭୋକ ଭଳି ଶତ୍ରୁର ଦାଉକୁ ମୁଁ ସହ୍ୟ କରିଛି । ହେତୁ ହେଲାଦିନଠୁଁ ମୁଁ ପରିବାରର ପିଲାମାନଙ୍କୁ ପେଟପୂରା ଖାଇବାକୁ ଦେବା ପାଇଁ ଆପ୍ରାଣ ଉଦ୍ୟମ କରିଛନ୍ତି । ନିଜେ ଅର୍ଦ୍ଧାହାର ବା ଅନାହାରରେ ରହି ମଧ୍ୟ । ଗାଁ ଛାଡ଼ି ନିକଟବର୍ତ୍ତୀ ସହର ଜଳେଶ୍ୱର ଓ ପରେ ବାଲେଶ୍ୱର ତଥା କଟକ ସହରକୁ ଶିକ୍ଷାଲାଭ ପାଇଁ ମୁଁ ଯିବାପରେ ସେମାନଙ୍କର ଦାୟିତ୍ୱ ବଢ଼ିଛି । ତା ସହିତ ତାକୁ ନିର୍ବାହ କରିବାରେ ସଂପୂର୍ଣ୍ଣ ସଫଳ ହୋଇ ନପାରିବାର ଯନ୍ତ୍ରଣାର ଅଗ୍ନିରେ ସେମାନେ ଦଗ୍ଧୀଭୂତ ହୋଇଛନ୍ତି ।

ମେଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ, ଫକୀରମୋହନ ମହାବିଦ୍ୟାଳୟ, ବାଲେଶ୍ୱରରେ ଅଧ୍ୟୟନ କଲି । ପ୍ରଥମ ବର୍ଷ ଉତ୍ତର ଛାତ୍ରାବାସରେ ରହିଥିଲି । ମାତ୍ର ଛଅମାସ ରହିବା ପରେ ସେଠାକାର ବ୍ୟୟ ନିର୍ବାହ କରିବାର ମୋର ଆୟତ୍ତର ବାହାରକୁ ଯିବାରୁ ମୋ ଗାଁର ସେଠାରେ ଅଧ୍ୟୟନରତ କେତେକ ବରିଷ୍ଠ ଛାତ୍ରଙ୍କ ଅନୁରୋଧଙ୍କୁ ଏଡ଼ାଇ ନପାରି ଓ ମୋର ଆର୍ଥିକ ଦୁରବସ୍ଥାକୁ ହୃଦୟଙ୍ଗମ କରି ପରିଚାଳକ ମହୋଦୟ ମୋର ଅଧା ଖାଇବା ଖର୍ଚ୍ଚ ରିହାତି କରିଦେଇଥିଲେ । ତତ୍ ପରବର୍ତ୍ତୀ ବର୍ଷ ହଷ୍ଟେଲ ଛାଡ଼ିଲି ଓ ସୁଏଲପୁରର ଜଣେ ସହୃଦୟ ବ୍ୟକ୍ତି ଶ୍ରୀଯୁକ୍ତ ପ୍ରାୟନାଥ ସାହୁଙ୍କ ଘରେ ରହି ତାଙ୍କର ପିଲାମାନଙ୍କୁ ପଢ଼ାଇ, ନିଜେ ପଢ଼ି ୧୯୬୪ ମସିହାରେ ବି.ଏ. ଅନର୍ସ (ଅର୍ଥନୀତି) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲି । ସେଇ ତିନିବର୍ଷ ଭୋକର ଦାଉ ମୋତେ ସହ୍ୟ କରିବାକୁ ପଡ଼ିନି । କଟକର ରେଭେନ୍ସା ମହାବିଦ୍ୟାଳୟରେ ଏମ୍.ଏ. ପଢ଼ିବା ସମୟରେ ପୁଣି ସେଇ ଅଜେୟ ଭୋକ / କ୍ଷୁଧା ତାର ପ୍ରଭାବ ବିସ୍ତାର କଲା । ସେ ଦୁଃଖଦ ଅନୁଭୂତି ମୁଁ ଏଯାଏଁ ଭୁଲିନି । ସେଠାକାର ଛାତ୍ରାବାସରେ ମୋର ରହଣି ସମୟରେ ଅନେକଦିନ

ଦିନଓଳି ମଧ୍ୟାହ୍ନ ଭୋଜନ ସମୟରେ କିଛି ବେଶୀ ପରିମାଣରେ ଭାତ ଖାଇଦିଏଁ । ତେଣୁ ସନ୍ଧ୍ୟାରେ ଆଉ ଜଳଖିଆ ଖାଇବାର ଆବଶ୍ୟକତା ପଡ଼ିନଥାଏ । ସକାଳ ଓଳି ଦିନ ୧ ୦ଟା ସୁଦ୍ଧା ଭାତ ଖାଇସାରି କଲେଜ ଯିବାକୁ ପଡୁଥିବାରୁ ତା ପୂର୍ବରୁ ଜଳଖିଆ ଖାଇବାର ଆବଶ୍ୟକତା ନଥାଏ । ତେବେ, ଉପରଓଳି ଜଳଖିଆ ଖାଇବାର ଲୋଭକୁ ମୁଁ ବହୁକଷ୍ଟରେ ସମ୍ବରଣ କରୁଥିଲି ।

ସେବେଠୁଁ 'ଭୋକ' ବିରୋଧରେ ମୋର ସଂଗ୍ରାମ ଜାରି ରହିଲା । କ୍ରମେ ଅନୁଭବ କଲି ଯେ ଅଭାବ ସମୂହକୁ ପୂରଣ କରି ଚାଲିଲେ ଜଣେ ତାର ସମଗ୍ର ଜୀବନକାଳ ଭିତରେ ବି ସେସବୁ ଶେଷକରି ପାରିବିନି । ସେମିତି ଯେତେ ପରିମାଣରେ ଓ ଯେତେ ସୁସ୍ୱାଦୁ ଖାଦ୍ୟ ଖାଇଲେ ବି କ୍ଷୁଧାର ପରିପୂର୍ତ୍ତି ସେ ଆଣିପାରିବନି । ତେଣୁ, ଭୋକକୁ ସୀମିତ ଓ ସୁସ୍ୱାଦୁ ଖାଦ୍ୟ ପ୍ରତି କ୍ରମବର୍ଦ୍ଧିଷ୍ଣୁ ଆକର୍ଷଣକୁ କ୍ରମେକ୍ରମେ ହ୍ରାସ କରାଇବାରେ ପ୍ରଯତ୍ନ କଲି । ଏବେ, ଏକାପାଖରେ ବସି କେହି ସୁସ୍ୱାଦୁ ଖାଦ୍ୟ ଖାଉଥିଲେ ବି ସେସବୁ ପ୍ରତି ମୋର ଆକର୍ଷଣ ବା ଲୋଭ ନ ଥାଏ । ଆଜି, ଆର୍ଥିକ ସ୍ୱଚ୍ଛଳତା ଆସିଥିଲେ ବି ଓ ସାମାଜିକ ପ୍ରତିଷ୍ଠା ବଢ଼ିଥିବାରୁ ବିଭିନ୍ନ ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କ ଉତ୍ସବାନୁଷ୍ଠାନରେ ଯୋଗଦେଇ ଭଲ ଓ ମୁଖରୋଚକ ଖାଦ୍ୟ ଖାଇବାର ଯଥେଷ୍ଟ ସୁଯୋଗ ମିଳୁଥିଲେ ବି ମୋର ସେସବୁ ପ୍ରତି ଅନାଗ୍ରହ ଯୋଗୁଁ ମୁଁ ନମ୍ରତାର ସହିତ ଏଡ଼ାଇ ଦେଇ ସାଧାରଣ ଖାଦ୍ୟ ଗ୍ରହଣ କରେଁ । ତେଣୁ ଅଧିକ ଓ ସୁସ୍ୱାଦୁ ମାତ୍ର ଅଧିକ ତେଲ, ମସଲାଯୁକ୍ତ ଖାଦ୍ୟ ଖାଇବା ଯୋଗୁଁ ସୃଷ୍ଟି ହେଉଥିବା କୌଣସି ଜଟିଳ ପେଟରୋଗର ଶିକାର ମୁଁ ଏ ଯାଏ ହୋଇନି । ମୁଁ ଭାବେ ଓ ତାହାହିଁ ମୋର ଜୀବନର ଆଦର୍ଶ ଯେ ମୁଁ ଖାଇବା ପାଇଁ ବଞ୍ଚୁନି, ବଞ୍ଚିବା ପାଇଁ ଖାଉଛି ।

ସେହିପରି, ସାଧାରଣ ପୋଷାକପତ୍ର ଓ ଯାନବାହାନରେ ମୁଁ ନିଜକୁ ଚଳାଇ ନେଉଛି । ଅଧକ୍ଷ ହେଲାପରେ ବି ସାଇକେଲରେ କଲେଜକୁ ଯିବା ଆସିବା କରିବାକୁ ମୁଁ କେବେ ବି କୁଣ୍ଠାବୋଧ କରିନି ବା ଲଜ୍ଜିତ ହୋଇନି । ଅନେକ ସମୟରେ ସାଧାରଣ ଅଟୋ, ବସ୍, ଟ୍ରେକର ଓ ଟ୍ରେନ୍‌ରେ ଦୂରସ୍ଥାନକୁ ଯାଇଛି । ସେହିପରି, ମୋର ବାସଗୃହରେ ବି ମୋର କୌଣସି ଆଡମ୍ବର ନଥାଏ ।

ତେଣୁ, ଅର୍ଥନୀତିର ସରଳ ସୂତ୍ର- ମଣିଷର ଅଭାବ ଅସୀମ ଓ ସମ୍ବଳ ସୀମିତ ହୋଇଥିବାରୁ ସମସ୍ତ ଅଭାବର ପୂରଣ କରିବା ମଣିଷର ସାଧ୍ୟର ବାହାରେ । ତେଣୁ, ଅଭାବବୋଧକୁ ସୀମିତ କରିବା ନିମନ୍ତେ ଜୀବନ ବ୍ୟାପୀ ମୁଁ ସଂଗ୍ରାମ କରିଚାଲିଛି ।

କିନ୍ତୁ, ଅପରପକ୍ଷରେ ଉଚ୍ଚଶିକ୍ଷା ଲାଭ କରିବା ଓ ନୂତନ ପୁସ୍ତକପାଠ ଓ ସଂଗ୍ରହ କରିବ ନିମନ୍ତେ ମୋର କ୍ରମବର୍ଦ୍ଧିଷ୍ଣୁ ଆଗ୍ରହକୁ ମୁଁ ଦମନ କରିପାରିନି । ଗାଁର ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପରେ ଉଚ୍ଚଶିକ୍ଷା ଲାଭ ନିମନ୍ତେ ଅନ୍ୟକୌଣସି ଶିକ୍ଷାନୁଷ୍ଠାନ ନଥିବାରୁ ଗାଁଠାରୁ ଛଅ ମାଇଲ ଦୂରରେ ଥିବା ଜଳେଶ୍ୱର ମଧ୍ୟଇଂରାଜୀ ଓ ତତ୍‌ପରେ ଉଚ୍ଚ ବିଦ୍ୟାଳୟକୁ ଅଧିକାଂଶଦିନ ପାଦରେ ଚାଲିଚାଲି ଓ ନୌକାରେ ସୁବର୍ଣ୍ଣରେଖା ନଦୀପାରିହୋଇ ଯାଉଥାଏଁ । ସେହିପରି ବାଧା ଓ ଅଭାବକୁ ଖାତିର ନକରି ବାଲେଶ୍ୱର ଫକୀରମୋହନ ମହାବିଦ୍ୟାଳୟରେ ବି.ଏ. ଓ କଟକର ରେଭେନ୍ସା ମହାବିଦ୍ୟାଳୟରୁ ଅର୍ଥନୀତିରେ ଉପାଧିଉତର ଶିକ୍ଷା ସମାପ୍ତ କରେଁ ୧୯୬୬ ମସିହାରେ ।

ରାଜନୀତି ମାଧ୍ୟମରେ ଜନସେବା କରିବାର ଇଚ୍ଛା ହଠାତ୍ ମନରେ ଜାଗ୍ରତ ହେବାରୁ ଜୀବନର ଅଧ୍ୟାପକ ହେବାର ଆବଲ୍ୟ ପୋଷିତ ଅଭିଳାଷକୁ ଆଉ ପୂରଣ କରିପାରି ନଥିଲି । ୧୯୬୭ ମସିହାରେ ଚମାରଗାଁ ସରପଞ୍ଚ ନିର୍ବାଚିତ ହୁଏ । ଠିକ୍ ସେତିକିବେଳେ କୋରାପୁଟ ଜିଲ୍ଲାର ଜୟପୁର କଲେଜର ଅର୍ଥନୀତି ବିଭାଗରେ ମିଳିଥିବା ଅଧ୍ୟାପକ ନିଯୁକ୍ତିକୁ ପ୍ରତ୍ୟାଖାନ କରେ । ତପ୍ରରେ ପୁଣି ମନରେ ଅବିରତ ସଂଗ୍ରାମ ଲାଗିରହେ ରାଜନୀତି କରିବା ଓ ଅଧ୍ୟାପକ ହେବା ମଧ୍ୟରେ । ସରପଞ୍ଚଙ୍କ କାର୍ଯ୍ୟକାଳ ଶେଷରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲି ୧୯୭୦ ମସିହାରେ ଜଳେଶ୍ୱର ଦୀନକୃଷ୍ଣ ମହାବିଦ୍ୟାଳୟରେ । ପୁଣି ରାଜନୀତି କରିବାର ବାସନା ପ୍ରବଳ ହେବାରୁ ସେ ଚାକିରି ଛାଡ଼ିଦେଲି ଓ ନିର୍ବାଚନ ପ୍ରାର୍ଥୀ ହେବାକୁ ଚାହିଁଲି । ମାତ୍ର ପ୍ରାର୍ଥୀ ହୋଇ ନ ପାରିବାରୁ ସେବେଠୁଁ ଚିରତରେ ପ୍ରତ୍ୟକ୍ଷ ରାଜନୀତି କରିବାର ଇଚ୍ଛାକୁ ପ୍ରତ୍ୟାଖ୍ୟାନ କରି ୧୯୭୧ ଅଗଷ୍ଟମାସରୁ ପୁଣି ଅଧ୍ୟାପକ ଭାବରେ କାର୍ଯ୍ୟକରି ୨୦୦୩ ମେ ମାସରେ ଅବସର ନେଲି । ଯା ହେଉ ଶେଷରେ ମୋର ଏକ ମହତୀ ଆକାଂକ୍ଷା ପୂରଣ କରିପାରିଲି ।

ତାପରେ, ପିଏଚ୍.ଡି. ଉପାଧି ହାସଲ ନିମନ୍ତେ ମନ ବଳାଇଲି । ଘରୋଇ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କୁ ଅନେକ ତୁଚ୍ଛତାଚ୍ଛଲ୍ୟ କରୁଥାନ୍ତି । କାର୍ଯ୍ୟରେ ସଫଳ ହେବାରେ ଅନେକ ପ୍ରତିବନ୍ଧକ ମଧ୍ୟ ରହିଥାଏ । ପ୍ରଥମତଃ, ସେତେବେଳେ ବେସରକାରୀ ମହାବିଦ୍ୟାଳୟର ଅଧ୍ୟାପକମାନଙ୍କୁ ଗବେଷଣା ନିମିତ୍ତ ନିର୍ଦ୍ଦିଷ୍ଟ ସମୟ ପାଇଁ ସଦରମା ଛୁଟି ବା ଆର୍ଥିକ ଅନୁଦାନ ମିଳୁନଥାଏ । ତଥାପି, ମୁଁ ନିଜର ସ୍ୱଳ୍ପ ଦରମାରୁ ସଞ୍ଚୟକରି ଏବଂ ଗ୍ରୀଷ୍ମ ଓ ପୂଜା ଅବକାଶକୁ ବିନିଯୋଗ କରି ଅର୍ଥନୀତି ଭଳି ଏକା କଷ୍ଟସାଧ ବ୍ୟପାରରେ ପିଏଚ୍.ଡି. କରିବାର ସଂକଳ୍ପ ନେଲି । ଅନେକ ବନ୍ଧୁ ହସିଲେ । ସହାନୁଭୂତି ଜଣାଇ

କହିଲେ, 'ହେଉ ଚେଷ୍ଟା କର ।' ମୁଁ ତାକୁ ଏକ ଚ୍ୟାଲେଞ୍ଜ ଭାବରେ ଗ୍ରହଣ କଲି, ଚେଷ୍ଟାକଲି ଓ ସଫଳ ହେଲି ମଧ୍ୟ । ୧୯୯୪ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି ଉପାଧି ହାସଲ କରି ମୋର ସ୍ୱପ୍ନକୁ ସାକାର କଲି । ମୋ ଥେସିସ୍‌ର ପରୀକ୍ଷକ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ପ୍ରଫେସର ଡି.କେ.ସି.ରେଡ୍‌ଡି ଓ ଆମେରିକା ହାର୍ଟଫୋର୍ଡ଼ ବିଶ୍ୱବିଦ୍ୟାଳୟ ମୋ ଗବେଷଣା ଓ ଉପଲବ୍ଧ ତଥ୍ୟର ପ୍ରଶଂସା କରିଥିଲେ । ଗ୍ରାମରୁ ଗ୍ରାମାନ୍ତର ବୁଲି ଅଗ୍ରଣୀବ୍ୟାଙ୍କ ଯୋଜନାରେ ଉପକୃତ ହିତାଧିକାରୀମାନଙ୍କର ଅଭିଜ୍ଞତା ଓ ସଫଳତାର କାହାଣୀ ସଂଗ୍ରହ କଲି ଓ ବମ୍ବେ, ଦିଲ୍ଲୀ ଓ ଓଡ଼ିଶାର ବିଭିନ୍ନ ଇନ୍‌ଷ୍ଟିଚ୍ୟୁଟ୍ ଓ ବିଶ୍ୱବିଦ୍ୟାଳୟର ବିଶେଷତଃ ରିଜାର୍ଭବ୍ୟାଙ୍କ ଅଫ୍ ଇଣ୍ଡିଆର ଲାଇବ୍ରେରୀରୁ ତଥ୍ୟ ସଂଗ୍ରହ କାଳରେ ବିଚିତ୍ର ଅଭିଜ୍ଞତାମାନ ଆଜି ବି ମୋର ସମ୍ବଳ ହୋଇ ରହିଛି । ଅଭୁଲା ସେ ସ୍ମୃତି, ଅଲିଭା ସେ ଦୁଃଖ କଷ୍ଟର ମାର୍ମିକ ସ୍ୱାକ୍ଷର । ସାରସ୍ୱତ ସୃଷ୍ଟିକ୍ଷେତ୍ରରେ ମୋର ସାଧନା ଆଜି ମୋର ସତୁରୀ ବର୍ଷ ବୟସରେ ବି ଅବ୍ୟାହତ ରହିଛି । ଅନେକ କ୍ଷୁଦ୍ରଗଳ୍ପ, ଶିଶୁଗଳ୍ପ, ଶିଶୁ କବିତା, କବିତା ଓ ପ୍ରବନ୍ଧର ସଂକଳନମାନ ପ୍ରକାଶ ପାଇବା ସହିତ ସେମାନଙ୍କ ସଂପର୍କରେ ଅଜସ୍ର ପ୍ରଶଂସା ମଧ୍ୟ ଅର୍ଜନ କରିଛି ।

ମୋଟ ଉପରେ ଲକ୍ଷ୍ୟସ୍ଥଳରେ ଉପନୀତ ହେବା ନିମନ୍ତେ ମୋର ସାରାଜୀବନର ସଂଗ୍ରାମର ପରିସମାପ୍ତି ଘଟିନାହିଁ । ଆଜିବି ଅବ୍ୟାହତ ରହିଛି, ଯଦିବା କ୍ଷେତ୍ର ଓ ଉଦ୍ଦେଶ୍ୟ ବଦଳି ଯାଇଛି ।



# ଜୀବନଯୁଦ୍ଧ

ଅରବିନ୍ଦ ଗିରି

ବିଶ୍ୱ ସ୍ରଷ୍ଟାଙ୍କର ଅମୃତମୟ ସୃଷ୍ଟି ଜୀବନକୁ ନେଇ ଅନୁପମ ଲୀଳାଖେଳା । ପ୍ରତିଟି ରୂପ ଅରୂପ, ଦୃଶ୍ୟ ଅଦୃଶ୍ୟ, ଶବ୍ଦ ନିଃଶବ୍ଦ, ସୁନ୍ଦର ଅସୁନ୍ଦରତା ମଧ୍ୟରେ ତାଙ୍କର ଅନନ୍ତ ସତ୍ତା ବିରାଜମାନ । ସମୁଦ୍ରର ଭୀମକାନ୍ତ ଉତ୍ତାଳ ତରଙ୍ଗମାଳାରେ ସେ ଯେପରି ଭୈରବ ରୂପର ପ୍ରକଟିତ ହୋଇଥାନ୍ତି, ପୁଣି ଅଥଳ ଜଳରାଶିର ଶାନ୍ତ, କାନ୍ତ ଓ କମନୀୟତା ମଧ୍ୟରେ ତାଙ୍କ ସରଳ, କୋମଳ ରୂପକାନ୍ତି ସେପରି ଜାଜ୍ୱଲ୍ୟମାନ ହୁଏ । ବହୁରୂପୀ ତାଙ୍କର ପ୍ରାଣ ସତ୍ତା । ସବୁ ଜୀବନାଂଶ ସେହି ମହାସତ୍ତା ବା ପରମସତ୍ତାର ଅଂଶବିଶେଷ । ଏତଏବ୍ ଜୀବ ଓ ଜୀବନ ଗୋଟିଏ ମୁଦ୍ରାର ଉଭୟ ପାର୍ଶ୍ୱ । ଜୀବ ନଥିଲେ ଜୀବନ ସତ୍ତାର ପ୍ରକଟ ଅସମ୍ଭବ ଏବଂ ଜୀବନ ସତ୍ତା ଥିଲେ ପ୍ରକାଶର ମାଧ୍ୟମ ଶରୀର ମଧ୍ୟ ଅତ୍ୟାବଶ୍ୟକ । ପାହାଡ଼ ପର୍ବତରୁ ଝରି ଆସିଥିବା ଅସଂଖ୍ୟ ଝରଣା ବା ଜଳଧାରା ସମତଳ ପ୍ରଦେଶରେ ସମ୍ମିଳିତ ହୋଇ ସ୍ରୋତସ୍ୱିନୀ ରୂପରେ ସର୍ପିଳ ଗତିରେ ବହୁ ବନ୍ଧୁରତା, ଜନପଦ ଓ ବନାନୀକୁ ଅତିକ୍ରମ କରି ସାଗର ସଂଗମରେ ତା'ଜୀବନର ପୂର୍ଣ୍ଣତାକୁ ସାର୍ଥକତା ଲାଭ କରିଥାଏ । ବଣି ଚଢ଼େଇଟିଏ ମଧ୍ୟ ପୋକଜୋକ ଆହାରରେ ଉଦରପୋଷଣକରି ନୀଳିମାପୂର୍ଣ୍ଣ ଅନନ୍ତ ଆକାଶର ମହାସତ୍ତାରେ କିଚିରିମିଚିର ଡାକ ଛାଡ଼ି ଆତ୍ମବିଭୋରତା ମଧ୍ୟରେ ନିଜର ପ୍ରାଣସତ୍ତାକୁ ହଜାଇଦେବାର ଅଫୁରନ୍ତ ଆନନ୍ଦ ଓ ଆତ୍ମତୃପ୍ତି ପାଇଥାଏ । ମଣିଷ ସେପରି ନିଜର ସତ୍‌କର୍ମ, ସତ୍‌ଭାବନା ତଥା ଈଶ୍ୱରାନୁରାଗୀ ଜୀବନଧାରାରେ କର୍ମଜବୀନକୁ ସାର୍ଥକ କରି ପରମାତ୍ମାଙ୍କ ପ୍ରାଣସତ୍ତାରେ ନିଜର ଆତ୍ମସତ୍ତା ହଜାଇ ଦେଇଥାଏ । ସେତେବେଳେ ତାର ମାନବଜୀବନ ପରିପୂର୍ଣ୍ଣ ହୁଏ । ଜନ୍ମ ତା'ର ଯଥାର୍ଥ ହୋଇଯାଏ ।

ତେବେ ବଗିଚାରେ ପ୍ରସ୍ଫୁଟିତ ସମସ୍ତ ଫୁଲ ଯେପରି ଦେବାର୍ଚ୍ଚନାରେ ଲାଗିବାରୁ ବଞ୍ଚିତ ହୋଇ ନିର୍ଦ୍ଦିଷ୍ଟ କିଛିଫୁଲ ସେହି ସୌଭାଗ୍ୟ ଲାଭ କରିଥାଏ, ସେହିଭଳି ସଂସାରରେ ଯେଉଁ ମଣିଷ ନିଜ ଜୀବନକୁ ଦେଶ ଓ ଦଶର କଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥାଏ,

ସେମାନଙ୍କ ଜୀବନ ହୁଏ ମହାର୍ଘ ଏବଂ ଜନ୍ମ ହୁଏ ସାର୍ଥକ । ସେହିମାନେ ହିଁ ଯୋଗଜନ୍ମା ମଣିଷ । ସାମାଜିକ ଜୀବନଧାରାରେ ପ୍ରଚଳିତ ଅନ୍ୟାୟ, ଅନୀତି, ଅନ୍ଧବିଶ୍ୱାସ, କୁସଂସ୍କାର, ଅନ୍ଧଶାସନ ଓ ସ୍ୱେଚ୍ଛାଚାରିତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ପ୍ରତିକୂଳ ପରିବେଶ ଓ ପରିସ୍ଥିତିରେ ବିରୁଦ୍ଧାଚରଣ ଦ୍ୱାରା ମାନବ ସମାଜର କଲ୍ୟାଣ ସାଧନ କରିଥାନ୍ତି । ସେହିମାନେ ହିଁ ଜୀବନ ସ୍ରୋତସ୍ୱିନୀର ଉଜାଣି ମଣିଷ, ଯେଉଁମାନେ ଅନ୍ୟପାଇଁ ନିଜକୁ ଆତ୍ମବଳି ଦେଇଥାନ୍ତି । କବିଙ୍କ ଭାଷାରେ-

"ଜୀବନ କି ଖାଲି ନିରାଶାର ବାଲି
ମରୁ ମରୀଚିକା ସେନେହ ପ୍ରୀତି,
ତେବେ କି ଆଶାରେ କହଏ ସଂସାରେ
ପର ଲାଗି ନର ମରୁଛି ନିତି ।"

ଜୀବନ କେବଳ ନିରାଶାର ବାଲିବନ୍ତ ନୁହେଁ । ଆଶାର ମରୀଚିକା ମଧ୍ୟରେ ବଞ୍ଚିବାର ପ୍ରୟାସ ସତତ ଜାରି ରହିଛି । ଏହି ଚେଷ୍ଟା ବା ପ୍ରୟାସ ସର୍ବଦା ସ୍ନେହ, ପ୍ରୀତି ଓ ମମତା ବନ୍ଧନରେ ଆବଦ୍ଧ । ଯେଉଁଥିପାଇଁ ମଣିଷ ମଣିଷକୁ ଭଲପାଏ, ତା' ଦୁଃଖରେ ଦୁଃଖୀ ଓ ତା ସୁଖରେ ସୁଖୀ ହୁଏ । ନିଜ ଜୀବନ ସେତେବେଳେ ପରାର୍ଥ ହୋଇଯାଏ । ପର ଓ ଆପଣାର ଭେଦଭାବ ତାକୁ ଦେଖାଯାଏ ନାହିଁ । ସମସ୍ତେ ତା'ର ଆପଣାର ଓ ନିଜର ପରି ଲାଗନ୍ତି ଏବଂ ସେ ସମସ୍ତଙ୍କ ପାଇଁ ଅଭିପ୍ରେତ ବୋଲି ଭାବନ୍ତି । ମୁଁ, ମୋର ଭାବନା ତୁଚ୍ଛ ହୋଇଯାଏ । ଆମେ, ସମସ୍ତେ ଈଶ୍ୱରଙ୍କ ସନ୍ତାନ ଭାବରେ ପ୍ରତୀୟମାନ ହେଉଁ । ସେଇଥିପାଇଁ ତ ଅନ୍ଧକବି ଭୀମଭୋଇ କହିଥିଲେ- "ମୋ ଜୀବନପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ" ଏବଂ ସମଭାବନାରେ ପରବର୍ତ୍ତୀ କବି ଉତ୍କଳବାସୀଙ୍କ ଦୁର୍ଦ୍ଦିନର ବନ୍ଧୁ ଗୋପବନ୍ଧୁ ଦାସ କହିଥିଲେ- "ମିଶୁ ମୋର ଦେହ ଏ ଦେଶ ମାଟିରେ / ଦେଶବାସୀ ଚାଲି ଯାଆନ୍ତୁ ପିଠିରେ / ଦେଶର ସ୍ୱରାଜ୍ୟ ପଥେ ଯେତ ଗାଡ଼ / ପଡ଼ି ପୂରୁ ତହିଁ ମୋର ମାଂସ ହାଡ଼ ।" ଏହି ଦୃଷ୍ଟିରୁ ବିଚାର କଲେ ସେହି କବିଙ୍କ ଭାଷାରେ "ଜୀବନଟି ପୁଷ୍ପଶଯ୍ୟା ନୁହେଁ" ବରଂ ଏହା ସଦାସର୍ବଦା ସତ୍‌କର୍ମରେ ପ୍ରବାହରେ ଚଳଚଞ୍ଚଳ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ଭାଷାରେ 'ଯଦି ତୋର ସାଥେ କେଉ ନା ଆସେ, ତବେ ଏକଲା ଚଲୋ' ନୀତିରେ ପର୍ଯ୍ୟବେସିତ ହେବା ଉଚିତ । ଭାରତବର୍ଷର ଅମର ସନ୍ତାନ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଇଂରାଜୀ କବିତାର ସାରମର୍ମ ଅନୁଯାୟୀ "ସୁନ୍ଦର ଯେତିକି ଅନ୍ଧାର ସେତିକି ଏହି ଯେ ଗହନ ବନ / ତେଣୁ ତୁ ଆପଣା କର୍ତ୍ତବ୍ୟେ

ଅଚଳ, ଅଟଳ ରହରେ ମନ / ଆଗରେ ପଡ଼ିଛି ପଥ ବହୁଦୂର ଆହୁରି କେତେ ଯେ ବାକି / ଚାଲିବୁ ଚାଲିବୁ ନପଡ଼ିବୁ ଥକି ମୁଦିବା ଆଗରୁ ଆଖି ।" କର୍ତ୍ତବ୍ୟର କଷଟି ପଥରରେ ଜୀବନ ହୁଏ ମୁକୁରିତ । ମଣିଷ ପଣିଆର ମହକ ଚହଟିଯାଏ ସାରା ଜଗତକୁ । ଦେଶବାସୀ ତଥା ବିଶ୍ୱବାସୀଙ୍କ ପାଖରେ ସେହି ମଣିଷ ଆତ୍ମାପାଲଟି ଯାଏ ମହାତ୍ମା । ଜଗତବାସୀଙ୍କ ବନ୍ଦାପନାରେ ସେ ପାଲଟି ଯାନ୍ତି ଚିରବନ୍ଦନୀୟ, ପୂଜନୀୟ, ସ୍ମରଣୀୟ ବ୍ୟକ୍ତିସତ୍ତା ।

ବିଶ୍ୱପୃଷ୍ଠାରେ ଏଭଳି ଅମର ଆତ୍ମାମାନଙ୍କର ଜୀବନ ସ୍ୱାକ୍ଷର କିଛି କମ୍ ନୁହେଁ । ଯେଉଁମାନେ ସ୍ୱୀୟ ସତ୍‌କର୍ମ ପ୍ରବାହରେ ମାନବ ସଭ୍ୟତାରେ କାହିଁ କେଉଁକାଳରୁ ବଞ୍ଚିରହିଛନ୍ତି ଏବଂ ଆଗାମୀ ଦିନପାଇଁ ବଂଚିବେ ମଧ୍ୟ । ଆଳସ୍ୟ ହିଁ ମଣିଷ ପାଇଁ ମୃତ୍ୟୁର କାରଣ । ସେବା, ତ୍ୟାଗ, ସ୍ନେହ, ପ୍ରୀତି, ମମତାର ବନ୍ଧନରେ ଏମାନେ ଯୁଗେଯୁଗେ ବିଶ୍ୱପ୍ରାଣରେ ସ୍ମରଣୀୟ । ନିଜପାଇଁ ଜିଇଁବା ପରିବର୍ତ୍ତେ ପରାର୍ଥେ ଆତ୍ମତ୍ୟାଗ ଏମାନଙ୍କୁ ମହାନ୍ କରିଛି । ସେ ଆତ୍ମତ୍ୟାଗ ଦେଶପାଇଁ ହୋଇପାରେ, ଜାତିପାଇଁ ହୋଇପାରେ, ଯାହାର ମୂଳ ଉଦ୍ଦେଶ୍ୟ ଦେଶ ବା ଜନମଙ୍ଗଳ, କିମ୍ବା ଧର୍ମ, ନ୍ୟାୟ, ସତ୍ୟ ଓ ଅହିଂସାର ପ୍ରତିଷ୍ଠା । କିଏ ବା ଜାଣିଛି କାଲିର ସୂର୍ଯ୍ୟୋଦୟ ସେ ଦେଖିପାରିବ କି ନାହିଁ ? ଏହି କ୍ଷଣଭଙ୍ଗୁର ଜୀବନ ପ୍ରଦୀପ କେତେବେଳେ, କେଉଁ ମୁହୂର୍ତ୍ତରେ ସାମାନ୍ୟ ହିଲ୍ଲୋଳରେ ନିର୍ବାପିତ ହୋଇନଯିବ ? ସେଇଥିପାଇଁ ତ ଭକ୍ତ କବି ମଧୁସୂଦନ ରାଓ ଶିଶୁମାନସରେ ନିଷ୍ଠୁର ସତ୍ୟ ଭାବନାକୁ ଜାଗରିତ କରି ଉଦାତ୍ତ କଣ୍ଠରେ ଗାଇଥିଲେ, ବାଲ୍ୟକାଳୁ ଧନଧର୍ମ ମୁଁ ସଞ୍ଚିବି ଏ ଜୀବନ ଅନିଶ୍ଚିତ / କେଜାଣେ କାହାର ଆଜି ମୃତ୍ୟୁକାଳ ହୋଇଯିବ ଉପସ୍ଥିତ । ଜୀବନଟି ପଦ୍ମପତ୍ର ବା ସାରୁ ପତ୍ର ପୃଷ୍ଠରେ ଢଳଢଳ ଜଳ କଣିକା ପରି । ଏହି ଅଛି ନାହିଁ ମଧ୍ୟରେ ତାର ଜୀବନଚର୍ଯ୍ୟା । ମାତ୍ର ଏହି କ୍ଷଣଭଙ୍ଗୁର ଜୀବନକୁ ସାର୍ଥକ ଓ ଜନ ସମର୍ପିତ କରିବା ତାର ମୁଖ୍ୟ ଉଦ୍ଦେଶ୍ୟ ହେବା ଉଚିତ୍ । ସଂସାରରେ ସ୍ୱାର୍ଥାନ୍ଧ ମଣିଷ ଅର୍ଥ, ପଦାର୍ଥ, ଭୂସମ୍ପତ୍ତି, ପ୍ରତିପତ୍ତି ଓ ପ୍ରତିଷ୍ଠା ପାଇଁ ଆଜି ପାଗଳ । ଜୀବନର କ୍ଷଣଭଙ୍ଗୁରତାକୁ ଗ୍ରହଣ କରିବାକୁ ସେ ମାନସିକ ଭାବରେ ପ୍ରସ୍ତୁତ ନୁହେଁ । ଏକଥା ସତ୍ୟ ଯେ ବଞ୍ଚିବା ପାଇଁ ବା ଜୀବନ ଧାରଣ ପାଇଁ କିଛି ଅର୍ଥ, ପଦାର୍ଥ ଓ ସମ୍ପତ୍ତିର ପ୍ରୟୋଜନୀୟତା ରହିଛି । ତା'ମାନେ ନୁହେଁ ସ୍ୱାର୍ଥରେ ମଣିଷ ଅନ୍ଧହୋଇ ନିଜର ପ୍ରୟୋଜନୀୟତାଠାରୁ ବହୁ ଅଧିକ ଅର୍ଥ ଅନ୍ୟାୟ ବା ଅସତ୍ ଉପାୟରେ ଉପାର୍ଜନ କରିବ । ପରିଣତି ହେବ, ଯାହା ପାଇଁ ସେ ଅସତ୍ ଓ ଅନ୍ୟାୟ ମାର୍ଗରେ ଗତିକରି ସ୍ୱୀୟ ଜୀବନକୁ ପୂତିଗନ୍ଧମୟ ନରକର ସାମଗ୍ରୀ କରିବସିବ, ସେ ଧନ ବା ସମ୍ପତ୍ତି ମାନବ ବା ସମାଜ କଲ୍ୟାଣରେ ନଲାଗି ଚୋର,

ଖଣ୍ଡମାନେ ହିଁ ଭୋଗ କରିବେ । ନଚେତ୍ ପରିବର୍ତ୍ତୀ କୁଳାଙ୍ଗାର ବଂଶଧର ସମସ୍ତ ଅର୍ଥ ଓ ସମ୍ପତ୍ତିକୁ ନାରଖାର କରିବସିବେ । ଦସ୍ୟୁରତ୍ନାକରଙ୍କ ଚୈତନ୍ୟ ଉଦୟ ହେବାଭଳି ତାଙ୍କର ମହାନ୍ ସାଧନା ତାଙ୍କୁ ଯେଭଳି ସାର୍ଥକ କବି ଆତ୍ମା ବାଲ୍ମୀକି ଋଷିର ପ୍ରତିଷ୍ଠା ଓ ଗୌରବ ପ୍ରଦାନ କରିଥିଲା, ସେହିଭଳି ମଣିଷ ଆତ୍ମାର ଚୈତନ୍ୟ ଉଦୟ ହେବା ବାଞ୍ଛନୀୟ । ଏହି କ୍ଷଣଭଙ୍ଗୁର ରକ୍ତମାଂସର ଶରୀରଟି ମାଟି ଓ ପବନରେ ମିଶିଯିବା ପୂର୍ବରୁ ତା'ର କାୟାମଧ୍ୟରେ ଆଶ୍ରିତ ଜୀବାତ୍ମାଟି ପୁଣ୍ୟ କର୍ମରେ ବା ସତ୍‌ଭାବନାରେ ତାକୁ ଅନୁପ୍ରେରିତ କରିବ ଏବଂ ମନୁଷ୍ୟ ଜୀବନ ତାର ଧନ୍ୟ ହୋଇଯିବ, ଏହି ଆତ୍ମବିଶ୍ୱାସ ତା' ମଧ୍ୟରେ ଦୃଢ଼ୀଭୂତ ହେବା ଉଚିତ୍ । ଇତିହାସ ପୃଷ୍ଠାରେ କେତେ ଅହଂ, ଔଦ୍ଧତ୍ୟ, ପ୍ରତିପତ୍ତି, ପରାକ୍ରମ, ପ୍ରତିଷ୍ଠା ସମୟର ବୁଦ୍‌ବୁଦ୍ ବା ପାଣିଫୋଟାକା ଭଳି ମିଳାଇ ଯାଇଛି । ସେମାନେ ନେପୋଲିୟନ, ହିଟ୍‌ଲର, ଚଣ୍ଡାଶୋକ, ବା ଲାଡେନ୍ ହୋଇ ପାରିଥାନ୍ତି । ସମୟ ଏହି ଐତିହାସିକ ଚରିତ୍ରମାନଙ୍କୁ ମହାନ୍ ଆତ୍ମାର ଆଖ୍ୟା ଦେଇନାହାନ୍ତି । ବରଂ ଏଭଳି ମଣିଷ ସମାଜ ପାଇଁ, ଜଗତ ପାଇଁ ଅନ୍ୟାୟ, ହିଂସାର ଦୃଷ୍ଟାନ୍ତ ଭାବରେ ପରିଣତି କେତେ ଯେ ଅଶ୍ଳୀଳ ଓ ଭୟାବହ, ତାହାର ନଜିର ସୃଷ୍ଟି କରିଛି । ପୁନଶ୍ଚ ଅହିଂସାର ପ୍ରତୀକ ଗାନ୍ଧୀ, ଗୋପବନ୍ଧୁ, ଆଧ୍ୟାତ୍ମିକ ଚେତନାର ପ୍ରାଣସତ୍ତା-ବୁଦ୍ଧ, ନାନକ, ଖ୍ରୀଷ୍ଟ, ମହମ୍ମଦ, କବିର, ସୁରଦାସ, ଜଗନ୍ନାଥ ଦାସ, ଭକ୍ତ ସାଲେବଗ୍ ବନ୍ଧୁମହାନ୍ତି, ରାମକୃଷ୍ଣ, ଇତ୍ୟାଦି ଯୁଗପୁରୁଷର ପ୍ରତିଷ୍ଠା ଦେଇଛି । ଏହି ଉଭୟ ଭାବନାର ମଣିଷ ତଥା ସେମାନଙ୍କ କର୍ମ ପ୍ରବାହରୁ ଉତ୍ତର-ମଣିଷ ନିଜକୁ ସଂସ୍କାରମୁଖୀ କରି କିଛି ସତ୍‌ଶିକ୍ଷା ଅର୍ଜନ କରିପାରିବ ଏବଂ ସଠିକ୍ କର୍ମମାର୍ଗରେ ଅନୁପ୍ରାଣିତ ହୋଇ ଜୀବନର ଚରମ ଓ ପରମ ଲକ୍ଷ୍ୟସ୍ଥଳରେ ଉପନୀତ ହେବ । କିନ୍ତୁ ଏଭଳି ମାର୍ଗକୁ ବା କେତେଜଣ ଅନୁସରଣ କରୁଛନ୍ତି ?

ଜୀବନ ଯୁଦ୍ଧ ହିଁ ସେହି ଯୁଦ୍ଧ, ଯେଉଁ ଯୁଦ୍ଧରେ ନଦୀଟି ସାଗର ସଂଗମର ପୂର୍ଣ୍ଣତା ଲାଭ କରି ନିଜର ପ୍ରାଣ ସତ୍ତାକୁ ସମ୍ପୂର୍ଣ୍ଣ ଭାବରେ ବିଲୁପ୍ତ କରିଦିଏ । ସେହିଭଳି ମଣିଷ ସଦାସର୍ବଦା ବ୍ୟକ୍ତିସ୍ୱାର୍ଥ ବା ଆତ୍ମସ୍ୱାର୍ଥ ମଧ୍ୟରେ ଆବଦ୍ଧ ହୋଇ ବିଶ୍ୱସ୍ୱାର୍ଥକୁ ଭୁଲିଯାଏ । ଈଶ୍ୱର ଦତ୍ତ ମହାର୍ଘ ଜୀବନକଣିକୁ ସେ ପରମାତ୍ମା ଅନୁଗାମୀ କରିବା ପରିବର୍ତ୍ତେ ସଂସାରର ପଙ୍କିଳ ସ୍ୱାର୍ଥ ଓ ମାୟାବନ୍ଧନରେ ଆବଦ୍ଧ ହୋଇ ମରା ନଈରେ ରୂପାନ୍ତରିତ ହୋଇଯାଏ । ଜୀବନ ସାୟାହ୍ନର ତାର ପରିସମାପ୍ତି ଘଟେ । ଅଥଚ ଜୀବନ ଗୋଧୂଳିର ବର୍ଣ୍ଣିଳ ରୂପଲାବଣ୍ୟରେ ମୁଗ୍ଧହେବାର, କି ସେହି ପୁଣ୍ୟଲଗ୍ନରେ ନୀଡ଼ ଫେରନ୍ତା ବିହଙ୍ଗ କୂଳର କଳରବ ଧ୍ୱନୀରେ ଆତ୍ମବିଭୋର ହେବାର ସୌଭାଗ୍ୟରୁ ସେ ବଞ୍ଚିତ ହୁଏ । ଜୀବନ

ସୂର୍ଯ୍ୟୋଦୟ ତା'ପାଇଁ ଯେତେ ପ୍ରାଣ ପ୍ରାଚୁର୍ଯ୍ୟ ପୂର୍ଣ୍ଣ ଥିଲା, ଜୀବନ ଗୋଧୂଳି ତା'ପାଇଁ ସେତିକି ଜୀବନ୍ତ ମରଣ ଯନ୍ତା ପାଲଟିଯାଏ । ସେ କେବଳ ଅନୁଭବ କରେ ଯନ୍ତ୍ରଣା ଓ ଯନ୍ତ୍ରଣା । ଆଉ ପଛକୁ ଫେରି ଚାହିଁବାର ବେଳ ନଥାଏ । ବରଂ ଅନୁଶୋଚନା, ଦୁଃଖ ଓ ଅଶ୍ରୁଳ ଜୀବନର କାରୁଣ୍ୟ-ପରିବେଶ ମଧ୍ୟରେ ମୃତ୍ୟୁକୁ ହାତଠାରି ଡାକେ । ସଂସାର ତା'ପାଇଁ ବିଷମୟ ହୋଇଯାଏ । ଯେଉଁମାନଙ୍କ ପାଇଁ ସେ ସ୍ୱାର୍ଥର ଓ ଅର୍ଥର ପାହାଡ଼ ନିର୍ମାଣ କରିଥିଲା, ସେମାନେ ତାଙ୍କଠାରୁ ଦୂରେଇ ଯାଆନ୍ତି । ସେହିଁ ସଂସାର ପଥରେ ଏକମାତ୍ର, ସର୍ବହରା, ଆଶା ଓ ଆଶ୍ରାହୀନ ପଥିକ ଭାବରେ ମୃତ୍ୟୁର ବାଟ ଚାହିଁ ବସିଥାଏ । ସେଥିପାଇଁ ଜୀବନ ଯୁଦ୍ଧ ଏଭଳି ହେବା ଉଚିତ୍ ଯେଉଁଥିରେ ଜୀବନ ସାୟାହ୍ନରେ ସେ ସ୍ୱୀୟଜୀବନ କଣିକା ପାଇଁ ଆତ୍ମଶୋଚନା ବା ଆତ୍ମଗ୍ଲାନିରେ ଘାଣ୍ଟି ହେଉନଥିବ । ବରଂ ତା ଜୀବନ ପ୍ରଦୀପ ବର୍ତ୍ତିକା ସଦୃଶ ଶତଶିଖାର ଆଲୋକ ସଂଚାର କରି ତା'ର ଚତୁର୍ପାଶ୍ୱର ଅଜ୍ଞାନତା-ଅନ୍ଧକାରକୁ ଦୂରକରିବାର ଆତ୍ମାନନ୍ଦରେ ସ୍ୱୀୟ ଜୀବନକୁ ସାର୍ଥକ ମଣିବ ।



# ଜୀବନ

ଅଭୟ ସୂତାର

"ମାନବ ଜୀବନ ନୁହଁଇ କେବଳ ବର୍ଷମାସ ଦିନ ଦଣ୍ଡ
କର୍ମେ ଜିଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।" (ଗୋପବନ୍ଧୁ)

ଜୀବନ, ଜନ୍ମଲାଭ ପରେ ଆରମ୍ଭ ହୋଇ ମୃତ୍ୟୁକାଳ ପର୍ଯ୍ୟନ୍ତ ସଂପ୍ରସାରିତ ହୋଇଥାଏ । ଜନ୍ମପରେ ମୃତ୍ୟୁ ଓ ମୃତ୍ୟୁ ପରେ ଜନ୍ମ ଲାଗି ରହିଥାଏ, କିନ୍ତୁ କର୍ମ ହିଁ ଜୀବନ । କର୍ମ ବିମୁଖ ଜୀବନ ହିଁ ମୃତ୍ୟୁ । କର୍ମ କରଣେ ଫଳ ପାଇ ପ୍ରାଣୀ ତା ଅବଶ୍ୟ ଭୁଞ୍ଜଇ । ନିଷ୍ଠାଜନିତ ଅଧ୍ୟବସାୟ ଓ ତ୍ୟାଗ ମଣିଷକୁ ସ୍ୱୟଂସଂପୂର୍ଣ୍ଣ କରେ ଏବଂ ଲକ୍ଷ୍ୟସ୍ଥଳରେ ପହଞ୍ଚାଏ । ମଣିଷ ନିଜର ମନ, ଚରିତ୍ର, ସ୍ୱଭାବ ଓ ପ୍ରକୃତିର ବଶବର୍ତ୍ତୀ ହୋଇ ବହୁ କୁକର୍ମ କରିଥାଏ । କାହାକୁ ଭୟ ନକରି ମାନବିକ ଧର୍ମ ପାଳନ କରି ନିଜ କର୍ତ୍ତବ୍ୟ ସଂପାଦନା କରିବା ହିଁ ବିଜ୍ଞତାର ପରିଚୟ । କାମନାକୁ ନେଇ ମଣିଷ ବଞ୍ଚେ । କର୍ମ ତ୍ୟାଗକରି ଏ ସମାଜରେ ବଞ୍ଚିବା ଖୁବ୍ କଷ୍ଟକର ବ୍ୟାପାର । ଜନ୍ମନେଲେ ମୃତ୍ୟୁ ନିଶ୍ଚିତ, ଏହା ମଧ୍ୟ ଏକ ସାର୍ବଜନୀନ ସତ୍ୟ । ଜନ୍ମ ଓ ମୃତ୍ୟୁ ମଧ୍ୟରେ ଥିବା ବ୍ୟବଧାନକୁ କେହି କେବେ ମାପି ପାରନ୍ତି ନାହିଁ । ଜୀବନର କ୍ଷଣିକ ସୁଖ ସ୍ୱାଚ୍ଛନ୍ଦ୍ୟ ମଧ୍ୟରେ ନିଜକୁ ହଜେଇ ଦେଲେ ଜୀବନର ସାର୍ଥକତା ପ୍ରତିପାଦନ କରିହୁଏନା । ଜୀବନକୁ ସତ୍‌ମାର୍ଗରେ ପରିଚାଳିତ କଲେ ଜୀବନର ମହାନତା ବୁଝିହୁଏ ।

ନିଜର କର୍ତ୍ତବ୍ୟ ପ୍ରତି ଯେ ଅତ୍ୟନ୍ତ ସଚେତନ, ତାଙ୍କୁ ହିଁ ଜଣେ ମହାନ୍ ପୁରୁଷ ବୋଲି ଆମେ ସମ୍ମାନଦେବା । ଜୀବନରେ ଅନ୍ୟତମ ଲକ୍ଷ୍ୟ ହେଉଛି ପରୋପକାର, ଅନ୍ୟର ମନ ଓ ହୃଦୟର ବିଜୟ ତଥା ସମାଜ ଗଠନ । ଆମେ ଯେମିତି ନିଜକୁ ନିଜେ ବେଶି ଭଲ ପାଉଛୁ, ଠିକ୍ ସେମିତି ଆମ ସମାଜରେ ଆମ ସହିତ ମିଶୁଥିବା ଲୋକଙ୍କୁ ଭଲପାଇଲେ ଜୀବନର ଲକ୍ଷ୍ୟ ସାଧିତ ହୋଇପାରିବ । ମଣିଷ ଲଲାଟେ ଚନ୍ଦନ ଟିକା ଚିରକାଳ ଶୋଭାପାଏ । ଏହି କଥାକୁ ଉପଲବ୍ଧି କରି ଆମ ଜୀବନ ନଉକା ଗଡ଼ି ଚାଲିବା ଉଚିତ୍ । "ଗୋଲାପ ଫୁଲର ଆସନ ସଜେଇ ବଡ଼ ହୋଇନାହିଁ କେହି, ଦୁଃଖର ଜୀବନ ଗଢ଼ିଅଛି ଯିଏ, ସୁଖ ଥୁଆ ତାହାପାଇଁ ।" ଆମେ ସବୁ ପ୍ରଭୁଙ୍କର

ଲୋକ, ତେଣୁ ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ଆମର କର୍ତ୍ତବ୍ୟଧାରା ରହିବା ଉଚିତ୍ । କର୍ମ ହିଁ ଉପାସନା ।

ମଣିଷ ଜୀବନ ପରୀକ୍ଷାମୟ । ଯେ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୁଏ, ସେ ସଫଳ ମଣିଷ । ଯଦି ପରୀକ୍ଷାରେ ଅକୃତକାର୍ଯ୍ୟ ହୁଏ, ସେ ସମାଜ ପାଇଁ କଳଙ୍କ । ତାର ବଞ୍ଚିବାର ସ୍ୱାଦ ନଥାଏ । ମୃତ୍ୟୁପ୍ରତି ସଚେତନ ରହି ମାନବିକ ଧର୍ମପାଳନ କରି କର୍ତ୍ତବ୍ୟ ସଂପାଦନା କରିବା ହିଁ ମଣିଷତ୍ୱ ।

ଶୁଭ ସତ୍‌କର୍ମ ପ୍ରଭାବରେ ଏକାଧିକବାର ଜନ୍ମ ହେବାପରେ ପୁଣ୍ୟ ଅର୍ଜନ କରେ । ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ, ଦେଖୁଦେଖୁ କେବା ସହୁ ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜୀବନ ଉଦ୍ଧାର ହେଉ । ଜଣେ ମଣିଷ ତ୍ରିକାଳଦର୍ଶୀ ହେବା ଦରକାର । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସମନ୍ୱୟ ରକ୍ଷା କରିବା ମଣିଷର ପରମ କର୍ତ୍ତବ୍ୟ । ନିଜର ପ୍ରଗାଢ଼ ଅଧ୍ୟବସାୟ, ନିଷ୍ଠା, ତ୍ୟାଗ, ଆଦର୍ଶ ଓ ଏକାଗ୍ରତା ବଳରେ ମଣିଷ ଲକ୍ଷ୍ୟସ୍ଥଳରେ ପହଞ୍ଚି ପାରିବ ।

ମନୁଷ୍ୟ ଦେହେ ଦିବ୍ୟଜ୍ଞାନ ଦେଖି ସନ୍ତୋଷ ଭଗବାନ । ଯିଏ ଯେପରି କର୍ମ କରିବ, ସେହି ଅନୁଯାୟୀ ସେ ଫଳ ପାଇବ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଯେଉଁଠାରେ ଅବସ୍ଥାନ କଲେ ମଧ୍ୟ ସେ କର୍ମ ଅନୁଯାୟୀ ନିଶ୍ଚୟ ଫଳ ପାଇବ । ତେଣୁ ବୁଝିବାକୁ ପଡ଼ିବ ଯେ, ଆମ ଜୀବନର ପ୍ରଗତି ହେଉଛି ଆମ କର୍ମଫଳ । ମର୍ତ୍ତ୍ୟମଣ୍ଡଳେ ଦେହ ବହି ଦେବତା ହୋଇଲେ ବି ମରଇ । ସମାଜରେ ଦେଶପ୍ରୀତି, ନୈତିକତା ଏବଂ କର୍ତ୍ତବ୍ୟ ଭାବନାର ଜାଗରଣ ଦୃଷ୍ଟିରୁ ଆମ ଚରିତ୍ରକୁ ସଂସ୍କାରିତ ତଥା ଜ୍ଞାନଦୀପ୍ତ କରିବାକୁ ପଡ଼ିବ ।

ଅହଂକାର, ଅସୂୟା, ପରଶ୍ରୀକାତରତା ଓ ଆତ୍ମବଡ଼ିମା ଭଳି ବହୁ ବଦ୍‌ଗୁଣରୁ ଦୂରରେ ରହି ସ୍ୱକୀୟ କର୍ମରେ ମଣିଷ ମଜ୍ଜି ରହୁ ।



# ଜୀବନାନୁଭୂତି

ସିନ୍ଧୁ ସେନ୍

ସଂଘର୍ଷରୁ ଜୀବନ ସୃଷ୍ଟି । ମାନବ ସଭ୍ୟତାର ପ୍ରାରମ୍ଭ କାଳରୁ ହିଁ ଏହି ସଂଘର୍ଷ ସତତ ଜାରି ରହିଛି । କେବଳ ମନୁଷ୍ୟ କାହିଁକି, ବୃକ୍ଷଲତା, ଜୀବଜନ୍ତୁ ତଥା ସୃଷ୍ଟିର ସମସ୍ତ ଜୀବ ଏଇ ସଂଘର୍ଷରୁ ଜାତ । ଜୀବନ ଓ ସଂଘର୍ଷ ତେଣୁ ଗୋଟିଏ ମୁଦ୍ରାର ଦୁଇପାର୍ଶ୍ୱ ଭଳି ।

ତେବେ, ଏଠାରେ ସ୍ୱତଃ ପ୍ରଶ୍ନ ଆସେ, ଏ ଜୀବନ କ'ଣ ? ଜୀବନର ସଂଜ୍ଞା କ'ଣ ? କେଉଁଠୁ ଏ ଜୀବନର ଆରମ୍ଭ ଆଉ କେଉଁଠି ଏହାର ଶେଷ ? ଏ ସମସ୍ତ ପ୍ରଶ୍ନବାଚୀ କେବଳ ଏକ ସାଧାରଣ ପ୍ରଶ୍ନବାଚୀ ନୁହେଁ ବରଂ କାହିଁ କେଉଁ ଆଦିମ କାଳରୁ ଏ ପ୍ରଶ୍ନର ସଠିକ୍ ଉତ୍ତର ଏଯାବତ୍ ମିଳିନାହିଁ । ବରଂ ଏହା ରହିଯାଇଛି ଅସମାହିତ ହୋଇ, ତେଣୁ ଜୀବନକୁ ନେଇ ଉଠିଛି ନାନା ପ୍ରଶ୍ନବାଚୀ । ସମଗ୍ର ବିଶ୍ୱର ଜନମାନସରେ ସୃଷ୍ଟି କରିଛି ଆଲୋଡ଼ନ ।

ଆଦିମ ପ୍ରସ୍ତର ଯୁଗର ମଣିଷ ବଣ ଜଂଗଲରେ ଘୂରି ବୁଲୁଥିଲା, ଜୀବଜନ୍ତୁ ଶୀକାର କରି କଞ୍ଚାମାଂସ ଭକ୍ଷଣ କରୁଥିଲା ଆଉ ପରେପରେ ପଥରକୁ ପଥର ସହ ଘଷି ନିଆଁର ବ୍ୟବହାର ଶିଖିଲା । ପରେ ବଦଳି ଯାଇଥିଲା ତାର ଜୀବନଯାପନର ପ୍ରଣାଳୀ । ଆଉ ଆଜି...ମଣିଷ ନିଜର ବୁଦ୍ଧି, ବିବେକ, ଜ୍ଞାନକୁ ଆୟୁଧ କରି ନିଜ ଜୀବନ ଶୈଳୀରେ ଆଣିଛି ଅନେକ ପରିବର୍ତ୍ତନ । ଜୀବନ ଏବେ ତା ପାଇଁ ଭୟଙ୍କର ନୁହେଁ, ବିଷାଦପୂର୍ଣ୍ଣ ନୁହେଁ । ବରଂ ହୋଇପରିଛି ମଧୁମୟ, ସ୍ୱର୍ଣ୍ଣମୟ, ବିଭବମୟ ସୌନ୍ଦର୍ଯ୍ୟ ପରିପୂର୍ଣ୍ଣ । ଜୀବନ କେବଳ ଭୋଗ ପାଇଁ ନୁହେଁ, ତ୍ୟାଗ ପାଇଁ । ମଣିଷ ଜୀବନ ତମାମ୍, ଜୀବନକୁ ନେଇ ତର୍ଜମା କରିଚାଲିଛି । ନିଜକୁ ନିଜେ ପ୍ରଶ୍ନ କରିଛି, ଜୀବନ ଶୂନ୍ୟ ନା ପୂର୍ଣ୍ଣ ? ଦୁଃଖ ନା ସୁଖ ? ମାୟା ନା ବନ୍ଧନ... ? ଭୋଗ ନା ମୁକ୍ତି ? ଏହାର ସଠିକ୍ ଉତ୍ତର ନ ପାଇଲେ ମଧ ଜୀବନକୁ ନେଇ ମଣିଷ ଏବେ ଆଉ ଆଗପରି ଏତେଟା ଦୁର୍ବିସହ ହୋଇ ଉଠୁନି । ବରଂ ଶରୀର ରୂପୀ ଖୋଳପା ମଧ୍ୟରେ ନିଜ ଜୀବନକୁ ସୁରକ୍ଷିତ କରି ରଖିବାକୁ ସତତ ଚେଷ୍ଟା କରି ଆସିଛି ।

ଦୁଇ ଆଖି ଡୋଳାଠାରୁ ଆକାଶର ଦୂରତା ଯେଉଳି ମାପି ହୁଏନି, ମଣିଷ ଜୀବନ ଯାତ୍ରାର ଅସରନ୍ତି ଚଲାପଥର ଦୀର୍ଘତ କେତେ ତାହା କହିହୁଏନି । ଏନ୍ତୁଡ଼ିଶାଳର ନିଆଁ ଆଉ ଜୁଇ ଚିତାର ଧୂଆଁକୁ ସଂଯୋଗ କରୁଥିବା ରାସ୍ତା ହିଁ ତ ଜୀବନ । ଜୀବନ ତେଣୁ କେବଳ ଏକ ସରଳରେଖା ନୁହେଁ; ବରଂ ଯାହାର ପଥଧାରରେ କେତେ କେତେ ଛକ... । ସେଇ ଅଙ୍କାବଙ୍କା ରାସ୍ତାରେ ଶରୀର ରୂପକ ରଥ ମଧ୍ୟରେ ଜୀବନର ଚକ ଗଡ଼ିଚାଲେ । ଆଗକୁ କେଉଁଠି କୋମଳ ଫୁଲର ପାଖୁଡ଼ା ତ କେଉଁଠି କଣ୍ଟା, ସେ ସବୁକୁ ଅତିକ୍ରମ କରି ଜୀବନ ଗତିକରେ, ଯାହାର ଆରମ୍ଭ ହୁଏ ଜନ୍ମରୁ ଆଉ ଇତି ହୁଏ ମୃତ୍ୟୁରେ ।

ଜୀବନତତ୍ତ୍ୱକୁ ବିଶ୍ଳେଷଣ କରିବାକୁ ଯାଇ ବହୁ ଦାର୍ଶନିକ ଭିନ୍ନଭିନ୍ନ ମତ ଦେଇଥାନ୍ତି । ଏ ଦେଶର ଆଧ୍ୟାତ୍ମିକ ଗୁରୁମାନେ ଜୀବନଦର୍ଶନ ଉପରେ ନିଜର ସୁଚିନ୍ତିତ ମତବାଦ ଦେଇ କେତେବେଳେ ପ୍ରଶଂସାର ପାତ୍ର ହୋଇଛନ୍ତି ତ କେତେବେଳେ ସମାଲୋଚନାର ଶିକାର ହୋଇଛନ୍ତି । କିଏ ତାକୁ ସୁଉଚ୍ଚ ଅଟ୍ଟାଳିକାର ଶୀତତାପ ନିୟନ୍ତ୍ରିତ କୋଠରିରେ ଦେଖିଛି ତ କିଏ ଦେଖିଛି ମୁକ୍ତ ଆକାଶ ଛାତ ତଳର ଫୁଟପାଥ ମଧ୍ୟରେ । ତେବେ ମଣିଷ ମଣିଷ ମଧ୍ୟରେ ଯେତେ ଭିନ୍ନତା ଥିଲେ ମଧ୍ୟ ସମସ୍ତେ ହିଁ ସୃଷ୍ଟିର ସେଇ ଅଦୃଷ୍ଟ ଶକ୍ତିକୁ ବିଶ୍ୱାସ କରନ୍ତି । ଅନେକଙ୍କ ମତରେ ଜୀବନ ଅଛି ମାନେ ଯନ୍ତ୍ରଣା ଅଛି, ଆଉ ଯନ୍ତ୍ରଣା ବିହୀନ ଜୀବନ, ଜୀବନ ନୁହେଁ । ତେବେ ଏହା ନିଶ୍ଚିତ ସତ୍ୟ ଯେ, ଆଲୁଅ ପରେ ଅନ୍ଧାର ପରେ ଜୀବନରେ ସୁଖ, ଦୁଃଖ ଲାଗି ରହିଛି । ସହରୀ ସଭ୍ୟତାର ଚିକ୍‌ଚିକ୍ ମଧ୍ୟରେ ଜୀବନ ବିତାଉଥିବା ମଣିଷ ଯେ ସୁଖୀ ଆଉ ଫୁଟ୍‌ପାଥରେ ଜୀବନ ଜୀବିକା ନିର୍ବାହ ପରି ବଞ୍ଚୁଥିବା ମଣିଷ ଯେ ଦୁଃଖୀ, ସେ କଥା କୁହାଯାଇ ପାରିବ ନାହିଁ । କାରଣ ସୁଖ, ଦୁଃଖ ନ ଥାଏ କେବଳ ବାହ୍ୟ ବେଶଭୂଷା ଆଉ ଆଡ଼ମ୍ବରରେ । ବରଂ ରହିଥାଏ ମଣିଷର ଅନ୍ତର୍ନିହିତ ସୌନ୍ଦର୍ଯ୍ୟରେ । ସନ୍ତୋଷ ମନରେ । ସେଇଥିପାଇଁ ବୁଦ୍ଧଙ୍କ ବାଣୀ, 'କାମନାର ବିନାଶରେ ଦୁଃଖର ବିନାଶ' ।

ମଣିଷ ଚିରଦିନ ସ୍ୱପ୍ନ ବିଳାସୀ । ଜୀବନ ଥିବା ପର୍ଯ୍ୟନ୍ତ ସେ ସ୍ୱପ୍ନ ଦେଖେ, ମନର ଆଶା, ଆକାଂକ୍ଷା, କାମନାକୁ ପୂରଣ କରିବା ପାଇଁ ସତତ ଚେଷ୍ଟା କରେ । ଆଉ ତାକୁ ପାଇବା ପାଇଁ ସଦାସର୍ବଦା ସଂଗ୍ରାମ କରେ । କେବେ କେବେ ସଫଳ ହୁଏତ କେବେ ପୁଣି ବିଫଳ । ତଥାପି ସେ ସଂଗ୍ରାମରୁ କ୍ଷାନ୍ତ ହୁଏନା, ବରଂ ଆଗକୁ ଆଗକୁ ଭିନ୍ନଭିନ୍ନ ଯୋଜନା କରେ । ନିଜ ସ୍ୱପ୍ନକୁ ସତ୍ୟ କେବଳ ଆଜିର ନୁହେଁ, କାହିଁ କେଉଁ ଯୁଗରୁ ପ୍ରାଚୀନ ପୁରାଣ ଯୁଗର ମୁନିଋଷିମାନଙ୍କ ମଧ୍ୟରେ ମଧ୍ୟ ଏହା ଉଦ୍‌ଜୀବିତ ଥିଲା । ମହାମୁନି ବ୍ୟାସଦେବଙ୍କୁ ମଧ୍ୟ ଜୀବନରେ ଦିନେ ଏହି ସତ୍ୟକୁ ସାମନା କରିବାକୁ

ପଡ଼ିଥିଲା । ପରମଜ୍ଞାନୀ ବ୍ୟାସଦେବ ନିଜ ମାତାଙ୍କ ନିର୍ଦ୍ଦେଶରେ ନିଜର ଜୀବନଶୈଳୀକୁ ବଦଳାଇବାକୁ ବାଧ୍ୟ ହୋଇଥିଲେ । ଏମିତି ବହୁ ମହାପୁରୁଷମାନଙ୍କ ଜୀବନଦର୍ଶନ ପର୍ଯ୍ୟାଲୋଚନା କଲେ ବହୁ ତଥ୍ୟ ଉନ୍ମୋଚିତ ହୁଏ । ବିଶ୍ୱପ୍ରସିଦ୍ଧ ସ୍ୱାମୀ ବିବେକାନନ୍ଦଙ୍କ ଜୀବନଦର୍ଶନ ବହୁ ତତ୍ତ୍ୱ ସମ୍ବଳିତ । ଜନ୍ମ, ମୃତ୍ୟୁ ଜୀବନ ଦର୍ଶନ ଉପରେ ତାଙ୍କର ତତ୍ତ୍ୱପୂର୍ଣ୍ଣ ଅଭିବ୍ୟକ୍ତି ସମଗ୍ର ବିଶ୍ୱବାସୀମାନଙ୍କ ଆଗରେ ଏକ ବିସ୍ମୟବାଚକ ହୋଇ ରହିଯାଇଛି ଚିରକାଳ ଲାଗି । ଗୁରୁ ରାମକୃଷ୍ଣଙ୍କ ଅତିପ୍ରିୟ ପରମ ଶିଷ୍ୟ ବିବେକାନନ୍ଦ ଜୀବନତମାମ୍ ଜୀବନଦର୍ଶନର ତତ୍ତ୍ୱ ସାରା ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ ବାଣ୍ଟି ଦେଇଛନ୍ତି । ମହାଭାରତର କୁରୁଶ୍ରେଷ୍ଠ ପିତାମହ ଭୀଷ୍ମଙ୍କ ଜୀବନଦର୍ଶନ ଆଜି ବି ସମଗ୍ର ବିଶ୍ୱରେ ବନ୍ଦନୀୟ । ଠିକ୍ ସେହିପରି ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କ ଜୀବନ ଦର୍ଶନ ତତ୍ତ୍ୱର ଧାରା ଯୁଗଯୁଗ ଧରି ଆଲୋକର ବର୍ତ୍ତିକା ଟେକି ଧରିଛି । ପୁରାଣ ଯୁଗର ବର୍ଣ୍ଣିତ ବିଭିନ୍ନ ସାଧୁମହାତ୍ମାଙ୍କ ଜୀବନ ଦର୍ଶନ ଯେ କେତେ ଜଟିଳ ଅବା ସରଳ ତାହା ହୁଏତ ଇତିହାସ କହିପାରିବ । ହେଲେ ପ୍ରତିଟି ବ୍ୟକ୍ତିବିଶେଷଙ୍କ ଜୀବନ ଶୈଳୀ ଯେ ଭିନ୍ନଭିନ୍ନ ଏହା ତ କେହି ଅସ୍ୱୀକାର କରିବ ନାହିଁ ।

ଶରୀର ରୂପୀ ଖୋଳପା ମଧ୍ୟରେ ଜୀବନ ରହିଥାଏ । ଯାହାର ଆଦ୍ୟ ରହିଛି ଅନ୍ତ ବି ରହିଛି । ଜୀବନକୁ ଯେତେ ସୁରକ୍ଷିତ କରି ରଖିଲେ ମଧ୍ୟ ଏହାର ଅନ୍ତ ନିଶ୍ଚୟ ଦିନେ ନା ଦିନେ ହେବ, ଏହା ସତ୍ୟ । ବିଜ୍ଞାନ ବଳରେ ମନୁଷ୍ୟ ପ୍ରକୃତିକୁ ଜୟ କରିବା ପାଇଁ ସତତ ଚେଷ୍ଟା କରିଛି ସତ, ହେଲେ ସଂପୂର୍ଣ୍ଣ ସଫଳ ହୋଇପାରେନି କି ହୋଇପାରିବନି ମଧ୍ୟ । ପ୍ରାକୃତିକ ଦୁର୍ବିପାକରୁ ଜୀବନକୁ ସୁରକ୍ଷିତ ରଖିବା ପାଇଁ ଅହରହ ସଂଗ୍ରାମ କରୁଛି, ନୂଆନୂଆ ଉଦ୍ଭାବନ କରୁଛି, ତଥାପି ମୃତ୍ୟୁକୁ ନିଜ ନିୟନ୍ତ୍ରଣ ମଧ୍ୟରେ ରଖିବା ସଫଳ ହୋଇପାରି ନାହିଁ । ଅଳନ୍ଧୁ ଭର୍ତ୍ତି ଇତିହାସର ପୃଷ୍ଠାକୁ ଓଲଟାଇଲେ ଇଚ୍ଛାମୃତ୍ୟୁର ଦୃଷ୍ଟାନ୍ତ ମିଳିଥାଏ । କିନ୍ତୁ ଅମରତ୍ୱ ଲଭିବାର କଥା କେବେ କେଉଁଠି ଘଟିଥିବାର ନଜର ନାହିଁ । ଏହି ଅମରତ୍ୱ ପାଇଁ ଯୁଗଯୁଗ ଧରି ଅନେକେ ତପସ୍ୟା କରିଛନ୍ତି । ଈଶ୍ୱରଙ୍କ କୃପା ଲାଭକରି ବରପ୍ରାପ୍ତ ହୋଇଛନ୍ତି । ହେଲେ ଅମରତ୍ୱ ପାଇ ପାରିନାହାନ୍ତି । ତେଣୁ ଲୟ, ବିଲୟ ମଧ୍ୟରେ ଜୀବନଚକ୍ର ଯେ ଗତିଶୀଳ ଏହା ସ୍ୱୀକାର କରିବାକୁ ଆମେ ବାଧ୍ୟ ।

ଆଧୁନିକ ଯୁଗର ସମାଜକୁ ପର୍ଯ୍ୟାଲୋଚନା କଲେ, ଜୀବନ ଦର୍ଶନର ବହୁ ତତ୍ତ୍ୱ ସ୍ୱତଃ ଉନ୍ମୋଚିତ ହୋଇଯାଏ । ଏ ଯୁଗରେ ବି, ବହୁ ସାଧୁ, ମହାପୁରୁଷ ନିଜର ନିଜର ଜୀବନ ଦର୍ଶନକୁ ନେଇ ବିଶ୍ୱ ଦରବାରରେ ବେଶ୍ ପ୍ରତିଷ୍ଠିତ । ପୁଟ୍ଟପର୍ତ୍ତିର ସତ୍ୟସାଇ ବାବା ଠାରୁ ଆରମ୍ଭ କରି ଯୋଗଗୁରୁ ବାବା ରାମଦେବଙ୍କ ଜୀବନ ଦର୍ଶନ ଆଜି ବି ସମଗ୍ର

ବିଶ୍ୱବାସୀଙ୍କ ପାଇଁ ଦୃଷ୍ଟାନ୍ତ ପାଲଟି ଯାଇଛି । ସମାଜସେବୀ ଆନ୍ନା ହଜାରେଙ୍କ ଜୀବନଶୈଳୀ ମଧ୍ୟ ଅନୁରୂପ ଭାବେ ଜନସାଧାରଣଙ୍କୁ ଆକୃଷ୍ଟ କରିପାରିଛି ।

ଜୀବନଦର୍ଶନକୁ ନେଇ କେତେ କେତେ ଦାର୍ଶନିକ, ବୈଜ୍ଞାନିକ, ବୁଦ୍ଧିଜୀବୀ, ପ୍ରଜ୍ଞାପୁରୁଷମାନଙ୍କର ଭିନ୍ନଭିନ୍ନ ତତ୍ତ୍ୱ ଆଜି ବି ଉଦ୍‌ଜୀବିତ କରୁଛି । ସାମାଜିକ ପରିବର୍ତ୍ତନ ପାଇଁ ପୁଣି କେତେ କେତେ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ..., ପ୍ରାନ୍ତ ନିର୍ଣ୍ଣୟ କରିହୁଏ ନାହିଁ; ଜୀବନକୁ ନେଇ ତେଣୁ ସ୍ୱରଚିତ ପଦିଏ କବିତାର

ଜୀବନ ଦର୍ଶନକୁ ନେଇ,<br>
ଯେତେ ଯାହା ଲେଖିଲେ ବି<br>
ଆଦ୍ୟ ଅବା ପ୍ରାନ୍ତ ତାର ନାହିଁ;<br>
କିଏ କହେ,<br>
ଜୀବନଟା ଖାଲି ନିରାଶାର ମରୁବାଲି<br>
ଧୂସର ଦିଗନ୍ତ ବକ୍ଷେ ମୁଠାଏ ବା ଧୂଳି ।<br>
କା'ପାଇଁ ସେ ବେଦନା ବିଧୂର ଭରା,<br>
କଣ୍ଟକିତ ନାଗଫେଣୀ ।<br>
କାଳର ଉତ୍ତାଳ ତରଙ୍ଗେ<br>
ଆସୁ ଯେତେ ଝଡ଼ଝଞ୍ଜା<br>
ଭାସୁଛି ବି ଭାସୁଥିବ, ଏ ଜୀବନ ବୋଇତ<br>
ଭବସିନ୍ଧୁ ପରେ,<br>
ଏ ଜୀବନ ଅଳୀକ ନୁହେଁ ବନ୍ଧୁ<br>
ଅନୁଭବେ ତାରେ ଖାଲି ବୁଝିହୁଏ,<br>
ବାନ୍ଧିଲେ ବାନ୍ଧିବ ତାରେ<br>
ସ୍ନେହ, ଶ୍ରଦ୍ଧା, ପ୍ରୀତି ଓ ମମତାର ଡୋରିରେ ।



# ‘ୱାଲଷ୍ଟ୍ରିଟ କବ୍‌ଜା କର’ ଅଭିଯାନର ଏକ ମୂଲ୍ୟାୟନ

ପ୍ରଫୁଲ୍ଲ ସାମନ୍ତରା

ବିଂଶ ଶତାବ୍ଦୀର ନବେଦଶକର ଆରମ୍ଭରେ ଆମେରିକା ସାମ୍ରାଜ୍ୟବାଦର ନେତୃତ୍ୱରେ ଜଗତୀକରଣ ନାମରେ ପୃଥିବୀର ସର୍ବତ୍ର ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାର ନଗ୍ନରୂପ ନବ ଉଦାରବାଦକୁ ଥୋପି ଦେବାକୁ ବିଶ୍ୱ ବାଣିଜ୍ୟ ସଂଗଠନ ଜରିଆରେ ବାଧ୍ୟ କରାଗଲା । ଆମ ଦେଶ ଭାରତର ସାମ୍ବିଧାନିକ ବ୍ୟବସ୍ଥାରେ ଥିବା ସାମାଜିକ ଓ ଆର୍ଥିକ ନ୍ୟାୟ ପାଇଁ ଉଦ୍ଦିଷ୍ଟ ଯୋଜନାରେ ବ୍ୟାପକ ପରିବର୍ତ୍ତନ ଘଟିଲା । ଏହାର ଫଳସ୍ୱରୂପ ନୂଆ ଅର୍ଥନୀତି, ଖୋଲାବଜାର ଅର୍ଥବ୍ୟବସ୍ଥା, ପ୍ରବର୍ତ୍ତନ କରି ଆର୍ଥିକ ବିଷମତାକୁ ଆକାଶଛୁଆଁ କରିସାରିଲାଣି । ଧନୀ, ପୁଞ୍ଜିପତିମାନେ ଲକ୍ଷପତିରୁ କୋଟିପତି ଓ କୋଟିପତିମାନେ ଅରବ୍‌ପତି ହେବାବେଳେ ସାଧାରଣ ଚାଷୀ, ଶ୍ରମିକ ଜୀବିକା ହରାଇଛନ୍ତି । ରାଷ୍ଟ୍ରୀୟ ଆର୍ଥିକ ଅଭିବୃଦ୍ଧିର ହାର ବଢୁଥିବାବେଳେ ଯୋଜନା କମିଶନ ଦ୍ୱାରା ଗଠିତ ଅର୍ଜୁନ ସେନ୍‌ଗୁପ୍ତ କମିଶନ ରିପୋର୍ଟ ଅନୁଯାୟୀ ଦେଶର ଗ୍ରାମାଞ୍ଚଳର ୭୭% ଲୋକଙ୍କର ଦୈନିକ ବ୍ୟୟ କରିବା ସାମର୍ଥ୍ୟ ୨୦ଟଙ୍କାରୁ କମ୍ । କିନ୍ତୁ ବିଶ୍ୱର ଖୋଲାବଜାର ତଥା ପୁଞ୍ଜିବାଦର ଚରମ ପର୍ଯ୍ୟାୟର କେବେବି ବିଫଳତା ନାହିଁ ଓ ସମାଜବାଦର ପତନ ପରେ ଇତିହାସର ଅନ୍ତ ବୋଲି କୁହାଗଲା ଏବଂ There is no alternatve (TINA) ଟିନା ବା ଦୁନିଆ ବିକଳ୍ପହୀନ ବୋଲି ଦାବି କରାଗଲା । କିନ୍ତୁ ଟିନା ସିଣ୍ଡ୍ରୋମ୍‌ରେ ପୀଡ଼ିତ ବୁଦ୍ଧିଜୀବୀ, ଅର୍ଥଶାସ୍ତ୍ରୀମାନେ ଆଉକିଛି ବିକଳ୍ପ ଦେଖିପାରୁ ନଥିଲେ ବୋଲି ଏହା ଯେ ଇତିହାସର ଆରମ୍ଭ ବୋଲି ଚିନ୍ତା ବି କରିନଥିଲେ । କିନ୍ତୁ ମାତ୍ର ୨୦ବର୍ଷର ଜଗତୀକରଣରେ ପୁଞ୍ଜିବାଦର ସଂକଟ ଉଗ୍ର ହେବାପରେ ପୁଞ୍ଜିବାଦ ମଣିଷ ସଭ୍ୟତା ପାଇଁ ଏକ ସାଂଘାତିକ ସଂକଟ ରୂପେ ଠିଆ ହୋଇଛି । ଯାହାଦ୍ୱାରା ପୃଥିବୀର ପ୍ରାକୃତିକ ସଂପଦ ସରିଯାଉଛି ଓ ବିଶ୍ୱ ତାପ ବୃଦ୍ଧି ବଡ଼ ବିପଦର ଖଣ୍ଡାରୂପେ ଝୁଲିବା ଆରମ୍ଭ କଲାଣି । ଏତିକିବେଳେ ୨୦୦୮ରେ ପୁଞ୍ଜି ଓ ଟେକ୍ନୋଲୋଜିର ସର୍ବୋଚ୍ଚ ମାଲିକ ବୋଲି ଗର୍ବ କରୁଥିବା ଯୁକ୍ତରାଷ୍ଟ୍ର ଆମେରିକାର ଅର୍ଥ ବ୍ୟବସ୍ଥା ଭୁଷୁଡ଼ି ପଡ଼ିଲା, ଯାହାକୁ କୁହାଗଲା ଅର୍ଥନୀତି ତରଳିଗଲା । ବଡ଼ବଡ଼ କମ୍ପାନୀ ଓ ବ୍ୟାଙ୍କଗୁଡ଼ିକ ଦେବାଳିଆ ହୋଇଗଲେ । ନିୟୁତ ନିୟୁତ ମଧ୍ୟବିତ୍ତ ପରିବାର

ବାସଗୃହଶୂନ୍ୟ ହୋଇଗଲେ । ବେଲ୍ ଆଉଟ୍ ପ୍ୟାକେଜରେ ସହସ୍ର ସହସ୍ର କୋଟି ଡଲାର ସାହାଯ୍ୟ ବି ଆର୍ଥିକ ସଂକଟ ମୋଚନ କରିପାରୁନି । ଅନେକ ନିଜନିଜ ଜୀବିକା ହରାଇ ବେକାରୀ ହୋଇଯାଇଛନ୍ତି । କିନ୍ତୁ ଆର୍ଥିକ କେନ୍ଦ୍ରୀକରଣ ମଜବୁତ ହେବାରେ ଲାଗିଛି । କର୍ପୋରେଟମାନଙ୍କ ପାଖରେ ପୁଞ୍ଜିବୃଦ୍ଧି ହେଉଛି । ସଂପଦର ଅସମ ବଣ୍ଟନ ଚରମ ସୀମାର ପହଞ୍ଚିଛି । ମାତ୍ର ଏକ ପ୍ରତିଶତ ଉପରଶ୍ରେଣୀର ଧନୀକମାନେ ୪୦% ସଂପଦର ମାଲିକ । ସୁପର ଧନୀମାନେ ଘରୋଇ ଉତ୍ପାଦନର ୨୫% ଆୟ କରନ୍ତି । ୧୦% ଧନୀଙ୍କ ହାତରେ ୫୦% ପ୍ରତିଶତ ସଂପତ୍ତି । ଉକ୍ତ ୧% ଧନୀ ଲୋକଙ୍କ ସଂପତ୍ତି ଅଶି ପ୍ରତିଶତ ସାଧାରଣ ଲୋକଙ୍କ ସଂପତ୍ତିର ଚାରିଗୁଣରୁ ଅଧିକ । ଫୋବର୍ସର ସୂଚୀ ଅନୁଯାୟୀ ୪୦୦ ସର୍ବୋଚ୍ଚ ଧନୀଙ୍କ ସଂପତ୍ତିର ପରିମାଣ ୫୦% ସାଧାରଣ ଲୋକଙ୍କ ସଂପତ୍ତି ସହ ସମାନ । ଏହି ଉଗ୍ର ବିଷମତା ମଧ୍ୟରେ ଆମେରିକାର ସଂପଦ ୪ଗୁଣ ବୃଦ୍ଧିହୋଇଥିଲାବେଳେ ସାଧାରଣ ନାଗରିକଙ୍କର ସଂପତ୍ତିରେ କୌଣସି ବୃଦ୍ଧି ହୋଇନାହିଁ । ଏହାର ମୂଳ କାରଣ ନବ ଉଦାରବାଦୀ ଆର୍ଥିକ ନୀତି ଯାହାକୁ ସତୁରି ଦଶକର ଶେଷବେଳକୁ ରାଷ୍ଟ୍ରପତି ରୋନାଲଡ୍ ରିଗନ ଓ ବ୍ରିଟିଶ ପ୍ରଧାନମନ୍ତ୍ରୀ ମାର୍ଗାରେଟ୍ ଥାଚରଙ୍କ ନେତୃତ୍ୱରେ ତ୍ୱରାନ୍ୱିତ ବେଗରେ ଲାଗୁ କରାଗଲା । ଏହାର ଲକ୍ଷ୍ୟ ଥିଲା ଘରୋଇକରଣ ଓ ଅନିୟମକରଣ (Deregulation) କରିଆରେ ଅର୍ଥ ବ୍ୟବସ୍ଥାକୁ ଲଗାମହୀନ ବିତ୍ତୀୟ ପୁଞ୍ଜି ଓ ୱାଲଷ୍ଟ୍ରିଟ୍ ଓ ଲଣ୍ଡନ ଷ୍ଟକ ଏକ୍ସଚେଞ୍ଜରେ ବସିଥିବା ନେତାମାନଙ୍କ ହାତରେ ଟେକିଦେବା, ତାହାହିଁ ହେଲା । ଆଜି ବିଶ୍ୱ ଅର୍ଥ ବ୍ୟବସ୍ଥାର ନିୟନ୍ତ୍ରକ ରୂପେ ଯୁକ୍ତରାଷ୍ଟ୍ର ଆମେରିକା ସାମ୍ରାଜ୍ୟବାଦ ନେତୃତ୍ୱରେ ଜି-ଆଠ ଦେଶମାନଙ୍କ ଏଜେଣ୍ଟ ରୂପେ କାର୍ଯ୍ୟରତ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ଏସିଆନ୍ ଡେଭଲପ୍ ବ୍ୟାଙ୍କ ତୃତୀୟ ବିଶ୍ୱ ସମେତ ସମସ୍ତ ଗରିବ ରାଷ୍ଟ୍ରମାନଙ୍କ ଅର୍ଥନୀତି ଉପରେ ନିୟନ୍ତ୍ରଣ ଜାରି କରି ସାରିଛନ୍ତି । ଏହି ଦେଶମାନଙ୍କର ସାଧାରଣ ଗରିବ ଲୋକଙ୍କ ପାଇଁ ଥିବା ଜନମଂଗଳ ଆର୍ଥିକ ବ୍ୟବସ୍ଥାକୁ ଘରୋଇ ମାଲିକାନା ଓ ପରିଚାଳନା ଅନ୍ତର୍ଭୁକ୍ତ କରାଯାଉଛି । ରାଷ୍ଟ୍ରୀୟ ସଂସ୍ଥାମାନଙ୍କର ପୁଞ୍ଜି ବାହାର କରି ଦେଶୀ ବିଦେଶୀ ପୁଞ୍ଜିର ଆଧିପତ୍ର ଜାହିର କରାଯାଉଛି ।

ପୁଞ୍ଜିବାଦୀ ଓ ସାମ୍ରାଜ୍ୟବାଦୀ ଜଗତୀକରଣର ପ୍ରବକ୍ତାମାନେ ପ୍ରଚାର କରି ଚାଲିଲେ Greed is Good ଅର୍ଥାତ୍ ଏମାନଙ୍କ ଧ୍ୟେୟ ବାକ୍ୟ ହୋଇଗଲା 'ଲାଲଚୟ ଭଲ ଜିନିଷ' । ଯାହାର ଉଦ୍ଦେଶ୍ୟ ହେଲା ପଇସାରୁ ପଇସା କମାଇବା ହିଁ ଏକମାତ୍ର ଆର୍ଥିକ ସଫଳତା । ଏହାର ପରିଣାମରେ ପ୍ରକୃତ ଉତ୍ପାଦନ ଓ ନିୟନ୍ତ୍ରିତ ଅର୍ଥତନ୍ତ୍ର ପଛକୁ ଚାଲିଗଲା । ଅଙ୍କୁଶହୀନ ବିତ୍ତୀୟପୁଞ୍ଜିର ଆବାହନରେ ସଟ୍ଟାବାଜି ସବୁଠାରୁ ପ୍ରମୁଖ ଆର୍ଥିକ ଗତିବିଧି

ହୋଇଗଲା । ଏହି ଆର୍ଥିକ ପୁଞ୍ଜିର ମୁନାଫା ଯୋଗୁଁ ମେକ୍ସିକୋ, ଆର୍ଜେଣ୍ଟିନା, ଦକ୍ଷିଣପୂର୍ବ ଏସିଆ, ଋଷ୍ ଦେଶମାନଙ୍କରେ ନୂଆ ନୂଆ ଆର୍ଥିକ ସଂକଟ ସୃଷ୍ଟି ହେଲା । ୱାଲଷ୍ଟ୍ରିଟ୍‌ର ଲାଞ୍ଜି ହୋଇଥିବା ବିଶ୍ୱ ଆର୍ଥିକ ସଂସ୍ଥାମାନେ ଆର୍ଥିକ ସଂକଟର ସମ୍ମୁଖୀନ ଏହି ଦେଶମାନଙ୍କୁ ସଂକଟ ତାରଣ ରୂପେ ପୁଣି ଘରୋଇକରଣ, ଉଦାରୀକରଣ ଓ ଜନମଂଗଳ ତଥା ମୌଳିକ ଆବଶ୍ୟକତା ପାଇଁ ସରକାରୀ ଖର୍ଚ୍ଚ ହ୍ରାସ କରିବାକୁ ବାଧ୍ୟତାମୂଳକ ସୁପାରିଶ କଲେ । ଅନ୍ୟ ଦିଗରେ ଆଫ୍ରିକା, ଏସିଆ ଓ ଲାଟିନ୍ ଆମେରିକାରେ ବିଦେଶୀ ପୁଞ୍ଜିକୁ ନିମନ୍ତ୍ରଣ କରାଯାଇ ପଦେଶୀ ବିଦେଶୀ କମ୍ପାନୀମାନଙ୍କ ଜରିଆରେ ପ୍ରାକୃତିକ ସଂପଦ ଲୁଟ୍ କରାଗଲା ।

ଏସବୁର ସୁଫଳ କେବଳ ଉଭୟ ପକ୍ଷର ଧନୀକ ଶ୍ରେଣୀ କର୍ପୋରେଟ୍ ଜଗତକୁ ହିଁ ମିଳିଲା । ଏହାର କୁଫଳ ଭୋଗିଲେ ତୃତୀୟ ବିଶ୍ୱର ସାଧାରଣ ଜନତା । ଏହା ସତ୍ତ୍ୱେ ଉତ୍ତର ଆମେରିକା ଓ ୟୁରୋପର ବିକଶିତ ରାଷ୍ଟ୍ରମାନଙ୍କରେ ବି ଆର୍ଥିକ ସଂକଟ ଅତିମାତ୍ରାରେ ଦେଖାଦେଇଛି । ଫଳରେ ସେହି ଦେଶମାନଙ୍କରେ ମାନ୍ଦା ବ୍ୟବସ୍ଥା ସାଂଗକୁ ବେନିଯୁକ୍ତି, ଛଟେଇ ଓ ବେକାରୀ ବୃଦ୍ଧି ଘଟୁଛି । ଏବେ ଆମେରିକା ସବୁଠାରୁ ବେଶି ଋଣଗ୍ରସ୍ତ ରାଷ୍ଟ୍ର । ଘରୋଇ ଉତ୍ପାଦନର ଶତ ପ୍ରତିଶତ ଋଣ ପ୍ରତିଦିନ ୫୪୮କୋଟି ଡଲାର ଋଣ କରୁଛି । ପ୍ରାୟ ୫୦ ଦେଶରୁ ଋଣ କରିଥିବା ପରିମାଣ୫୦.୨ ଖର୍ବ (ଟ୍ରିଲିୟନ) ଡଲାର ।

ଯୁକ୍ତରାଷ୍ଟ୍ର ଆମେରିକାରେ ଜର୍ଜ ବୁଶ୍‌ଙ୍କ ଆର୍ଥିକ ବିଫଳତାକୁ ପାଥେୟ କରି ଡେମୋକ୍ରାଟ୍ ଦଳର ବାରାକ୍ ଓବାମା ରାଷ୍ଟ୍ରପତି ହେଲେ । କିନ୍ତୁ ଅର୍ଥନୀତିରେ କୌଣସି ପରିବର୍ତ୍ତନ ହେଲାନାହିଁ । କାରଣ ଉଭୟଙ୍କ ନୀତି ଏକ । ସଂକଟ ସୃଷ୍ଟି କରିଥିବା କର୍ପୋରେଟ୍‌ମାନଙ୍କୁ ସଂକଟରୁ ମୁକ୍ତି କରିବାକୁ ପୁଣି ସେମାନଙ୍କ ମୁନାଫା ପାଇଁ ହିଁ ଆର୍ଥିକ ସହଯୋଗ ଦିଆଗଲା । କିନ୍ତୁ ଆମେରିକାର ସାମଗ୍ରିକ ଆର୍ଥିକ କ୍ଷେତ୍ରରେ (ଯେଉଁଠି ଜନସାଧାରଣଙ୍କ ସୁରକ୍ଷା ନିହିତ), କୌଣସି ସୁଧାର ଆସିପାରିଲା ନାହିଁ । ୧୯୮୦ ସର୍ବବୃହତ୍ ଆମେରିକୀୟ କମ୍ପାନୀମାନଙ୍କ ମୋଟ କର୍ମଚାରୀଙ୍କ ଆୟର ୪୨ଗୁଣ ଆୟ କରିଥିବାବେଳେ ୨୦୧୧ରେ ଏହି କମ୍ପାନୀମାନେ ଦେଶର କର୍ମଚାରୀଙ୍କ ମୋଟ ଆୟର ୫୩୧ଗୁଣ ଅଧିକ ଆୟ କରିଛନ୍ତି । କର୍ପୋରେଟମାନଙ୍କ ପ୍ରଚୁର ମୁନାଫା ହେଉଥିବାବେଳେ ୨୦୦୯ରେ କମ୍ପାନୀମାନଙ୍କରୁ ୨୫ଲକ୍ଷ ଲୋକଙ୍କୁ ଛଟେଇ କରାଯାଇଥିଲା, ଯାହାକି ଚଳିତ ଦଶନ୍ଧିର ମୋଟ ଛଟେଇର ଏକ ପଞ୍ଚମାଂଶ । ଅର୍ଥାତ୍ ଏକକୋଟି ପଚିଶ ଲକ୍ଷ ଲୋକ ଆମେରିକାରେ ଜୀବିକା ହରାଇଛନ୍ତି । ସାଧାରଣ ଭାବରେ ଆମ ଦେଶ ସମେତ ତୃତୀୟ ବିଶ୍ୱର ଉଚ୍ଚ ମଧ୍ୟବିତ୍ତଙ୍କ ସମତୁଲ ଆମେରିକୀୟ ମଧ୍ୟବିତ୍ତ ଓ

ତାର ତଳକୁ ଥିବା ନାଗରିକ ମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷର ଅଗ୍ନି ଜଳୁଛି । ଏହି ଅସନ୍ତୋଷକୁ ନିର୍ବାପିତ କରିବା ପାଇଁ ନୁହଁ କିନ୍ତୁ ପ୍ରଚଳିତ ବ୍ୟବସ୍ଥାକୁ ଚାଲୁରଖି ସରକାରର ଦୋଷ ବାଛିବାପାଇଁ ସ୍ୱାର୍ଥପର ସଂରକ୍ଷଣବାଦୀ ବିଚାରର ବ୍ୟକ୍ତିମାନେ 'ଟି ପାର୍ଟି ମୁଭ୍‌ମେଣ୍ଟ' ଆରମ୍ଭ କଲେ । କିନ୍ତୁ ତାହା ଥିଲା ପ୍ରତାରଣାମୂଳକ ରାଜନୀତି । ବାସ୍ତବ ସମସ୍ୟା ଯାହାକୁ ଆମେରିକୀୟ ଅର୍ଥ ବ୍ୟବସ୍ଥା ଭିତରେ ଥିବା ଅନ୍ୟାୟ ଓ ବୈଷମ୍ୟର ଭିତ୍ତିଭୂମିକୁ ଉପଲବ୍ଧ କରୁଥିବା ନାଗରିକମାନଙ୍କ ମଧ୍ୟରେ ଏକ ଆଓ୍ୱା ଉଠିଲା 'ଓ୍ୱାଲଷ୍ଟ୍ରିଟ୍‌କୁ କବ୍‌ଜା କର' । ଏହର ଅର୍ଥ ଅତି ସ୍ପଷ୍ଟ । ସମସ୍ତ ଆର୍ଥିକ ନୀତିର ନିୟନ୍ତକ ତଥା ଧନୀ-ଗରିବ ସୃଷ୍ଟି କରୁଥିବା ଅର୍ଥ ବ୍ୟବସ୍ଥାର କେନ୍ଦ୍ର ଓ୍ୱାଲଷ୍ଟ୍ରିଟ୍ (ଯେଉଁଠି ଆମେରିକାର ସମସ୍ତ ବଡ଼ବଡ଼ ବ୍ୟାଙ୍କ୍‌ମାନ ଅଛି)କୁ ଅଚଳ କରି ଲୋକଙ୍କୁ ଆର୍ଥିକ ନ୍ୟାୟ ଦେବାକୁ ଦାବି ଦାନା ବାନ୍ଧିଲା । କ୍ରମଶଃ ଅଳ୍ପସଂଖ୍ୟକ ସଚେତନ ନାଗରିକମାନଙ୍କ ଗଣଧାରଣାରୁ ସଂପ୍ରସାରଣ ହୋଇ ୫ହଜାର ପର୍ଯ୍ୟନ୍ତ ଯୋଗଦେଲେ ମ୍ୟାନହଟନ୍‌ର ଜୁକୋଟି ପାର୍କ ଗଣବିକ୍ଷୋଭରେ । ଲକ୍ଷାଧିକ ଜନସମାବେଶ ହେଲେ ଲସ୍ ଏଞ୍ଜଲସ୍, ସନଫ୍ରାନ୍‌ସିସ୍କୋ, ଚିକାଗୋ ଆଦି ସହରରେ । ସେପ୍ଟେମ୍ବର ୨୪ରେ ନିରସ୍ତ ସେହି ବିକ୍ଷୋଭକାରୀଙ୍କ ଉପରେ ଆକ୍ରମଣକରି ପୁଲିସ୍ ଅଫିସର୍ ଆଣ୍ଟୋନୀ ବେଲଗ୍ନା ବିଭାଗ ବ୍ୟବସ୍ଥାରେ ସମ୍ମୁଖୀନ ହୋଇଛନ୍ତି । ଅକ୍ଟୋବର ପହିଲାଦିନ ୭୦୦ ଗିରଫ ହୋଇଛନ୍ତି । ଏହି ପ୍ରତୀକ ଗଣ ଅଭିଯାନରେ ପରିଣତ ହୋଇଛି । ଏହି ବିକ୍ଷୋଭ ଓ ଧାରଣାରେ କେବଳ ବେକାରୀ ଓ ଗରିବ କେବଳ ଯୋଗଦେଇ ନାହାନ୍ତି ବରଂ ବିଭିନ୍ନ କଳକାରଖାନା, ବ୍ୟାଙ୍କ, କମ୍ପାନୀରେ ନିଯୁକ୍ତ କର୍ମଚାରୀମାନେ ଛୁଟିନେଇ ଯୋଗ ଦେଉଛନ୍ତି । ଏହି ଆନ୍ଦୋଳନ ବର୍ତ୍ତମାନର କ୍ଷମତାସୀନ ଦଳ ଡେମୋକ୍ରାଟିକ ଫ୍ରଣ୍ଟ ନେତୃମଣ୍ଡଳୀ ମଧ୍ୟ ସତକର୍ତାମୂଳକ ସମର୍ଥନ ଦେବାକୁ ବାଧ ହୋଇଛନ୍ତି । ଏପରିକି ଓ୍ୱାଲଷ୍ଟ୍ରିଟ୍‌ର କ୍ଷମତାସୀନ ବ୍ୟକ୍ତିମାନଙ୍କ ମଧ୍ୟରେ ମୂକ ହୋଇ ବସିଥିବାଙ୍କ ମଧ୍ୟରୁ କେତେକ ଡେମୋକ୍ରାଟିକ ପାର୍ଟି ସହ ହାତ ମିଳାଇଛନ୍ତି । ହଜାର ହଜାର ଲୋକ ଯେତେବେଳେ ଶୋଭାଯାତ୍ରା କରୁଛନ୍ତି, ଶିଳ୍ପ କ୍ୟାପଟନ ମାନଙ୍କ ଉପରେ ଟାର୍ଗେଟ କରୁଛନ୍ତି । ଜେପି ମୋର କମ୍ପାନୀର ଜାମି ଡାଇମନ (Jami Diamon) ଜି.ଇ. କମ୍ପାନୀର ଜେଫି ଇମଲେଟ ମାନିଲେ ବେକାରୀ ସଂକଟ ୯.୧୫% ଏହାଠାରୁ ଅଧିକ ଅର୍ଦ୍ଧନିଯୁକ୍ତଙ୍କ ସଂଖ୍ୟା, ତେଣୁ ଯୁବସମାଜ ବେକାର ହେବା ସ୍ୱାଭାବିକ ।

ଏହି ଅକୋପାଇ ଓ୍ୱାଲଷ୍ଟ୍ରିଟ୍ ଆନ୍ଦୋଳନକାରୀମାନେ ଇଂଲଣ୍ଡ ତଥା ୟୁରୋପର ବିଭିନ୍ନ ଦେଶକୁ ବ୍ୟାପିଲେଣି । ପ୍ରାୟ ୯୦୦ ସହରରେ ଗଣବିକ୍ଷୋଭ ହୋଇଛି । ସ୍ପେନ୍‌ର ବେକାରୀ ୨୧% । ସେଠାରେ ରାସ୍ତାରେ ଲୋକେ ବିକ୍ଷୋଭ ପ୍ରଦର୍ଶନ କରୁଛନ୍ତି । ଏହାର

କାରଣ ଆର୍ଥିକ ସଂକଟ ସୃଷ୍ଟି କରିଥିବା ଭୁଲ ଅର୍ଥନୀତି ବିରୋଧରେ ଅନ୍ତର୍ନିହିତ ଜନ ଅସନ୍ତୋଷ । ଓ୍ୱାଲଷ୍ଟ୍ରିଟ୍ କବ୍‌ଜା କରିଥିବା ଆନ୍ଦୋଳନକାରୀଙ୍କ ଧ୍ୱନିରେ ପୁଞ୍ଜି ଓ କ୍ଷମତାର କେନ୍ଦ୍ରୀକରଣ ବିରୋଧରେ ପ୍ରତିବାଦର ସ୍ୱର ଶୁଭୁଛି । ସ୍ଲୋଗାନ ହେଲା ଆମେ ୯୯% ବନାମ ଏକ ପ୍ରତିଶତ । ପ୍ରତିବାଦ ବକ୍ତବ୍ୟରେ ପ୍ରକୃତି, ପରିବେଶର ଧ୍ୱଂସଠାରୁ ଆରମ୍ଭ କରି ଅଳ୍ପସଂଖ୍ୟକ ମାନଙ୍କ ପ୍ରତି ପାତର ଅନ୍ତର ବିରୋଧ ବି ସ୍ଥାନ ପାଉଛି ।

ଏହି ଆନ୍ଦୋଳନର ବାର୍ତ୍ତା ଆମେରିକାର ବିଭିନ୍ନ ପ୍ରାନ୍ତରେ ପହଞ୍ଚିଛି । ଶହଶହ କି.ମି. ଦୂରରୁ ରେଳ ଯୋଗେ ଆସି ଲୋକ ଯୋଗ ଦେଉଛନ୍ତି । ଏପରିକି ଭୀଷଣ ଶୀତ ରାତିରେ ଟେଣ୍ଟ ଓ ଶୀତବସ୍ତ୍ରରେ ପଡ଼ି ରହିଛନ୍ତି । ନ୍ୟୁୟର୍କ ସହରର ପୁଲିସ୍ ଲଗାଇ ଜବରଦସ୍ତ ଓ୍ୱାଲଷ୍ଟ୍ରିଟ୍ ଖାଲିକରି ଦିଆଗଲାପରେ କୋର୍ଟରୁ ଆଦେଶ ଆଣିଛନ୍ତି ଧାରଣାରେ ବସିରହିବା ଅଧିକାର ନେଇ । ଏବେ ଏହି ଆନ୍ଦୋଳନର ସମୀକ୍ଷା ଓ ଅଧ୍ୟୟନ ଏକାନ୍ତ ଜରୁରି । ଏହି ଆନ୍ଦୋଳନର ଦୁର୍ବଳତା ହେଉଛି ନେତୃତ୍ୱ ଓ ସଂଗଠନ ଶୂନ୍ୟ । ଏହି ଅଭିଯାନର ଖାସ ଦାବି ବି ନାହିଁ । ପୁଞ୍ଜିବାଦ ବ୍ୟବସ୍ଥା ପ୍ରତି ପ୍ରଶ୍ନ ଉଠାଇଲେ ବି ଏକ ବିକଳ୍ପ ବ୍ୟବସ୍ଥା ପାଇଁ ରାଜନୈତିକ ବିକଳ୍ପ ଉପସ୍ଥାପନରୁ ଦୂରରେ । ଏସବୁ ସତ୍ତ୍ୱେ ଏହି ଆନ୍ଦୋଳନ ଆମେରିକୀୟ ସମାଜରେ ଥିବା ସ୍ଥାଣୁତାକୁ ଭାଂଗି ଦେଇଛି । ଏବେ ଧନୀ ଓ ଗରିବ ମଧ୍ୟରେ ଭେଦଭାବ ପାଇଁ କମ୍ପାନୀମାନଙ୍କ ଲାଳଚ, ଅତି ଧନୀ ହେବାପାଇଁ ଶୋଷଣ ପ୍ରକ୍ରିୟା ଦାୟୀ । ପ୍ରଚଳିତ ଅର୍ଥବ୍ୟବସ୍ଥା ବିରୋଧରେ ଆମେରିକାର ନିମ୍ନ ମଧ୍ୟବିତ୍ତ ଓ ତଳେ ଥିବା ଅଧିବାସୀଙ୍କ ଅଙ୍ଗୁଳି ପ୍ରଦର୍ଶନ ନିଶ୍ଚିତଭାବେ ପୁଞ୍ଜିବାଦ ଅର୍ଥଶାସ୍ତ୍ରୀ, ଖୋଲାବଜାର ଅର୍ଥନୀତିର ପ୍ରବକ୍ତା ଓ ରାଜନେତାମାନଙ୍କୁ କାଠଗଡ଼ାରେ ଠିଆ କରାଇଛି । ଏକ ବଡ଼ ପ୍ରଶ୍ନ ଆମ ସମସ୍ତଙ୍କ ସମ୍ମୁଖରେ 'The End of the History' (ଇତିହାସର ଅନ୍ତ)ର ଭବିଷ୍ୟବାଣୀ ଗଲା କୁଆଡ଼େ ? ବରଂ ଓଲଟା ହୋଇଛି The Beginning of the History ଅର୍ଥାତ୍ ଇତିହାସ ଆରମ୍ଭ ହେଲା । ଏବେ ବିଶ୍ୱର ସବୁଠାରୁ ବଡ଼ ଚ୍ୟାଲେଞ୍ଜ, ବାୟୁମଣ୍ଡଳ ପରିବର୍ତ୍ତନକୁ ଅଟକାଇ ସନ୍ତୁଳିତ ପ୍ରକୃତି ମଧ୍ୟରେ ମଣିଷ ସମାଜର ସୁରକ୍ଷା କିପରି ସମ୍ଭବପର । ତେଣୁ, ଆଜି 'ଓ୍ୱାଲଷ୍ଟ୍ରିଟ୍ କବ୍‌ଜା' ଆନ୍ଦୋଳନକାରୀମାନେ ସ୍ଲୋଗାନ ଦେଉଛନ୍ତି ବର୍ତ୍ତମାନ ହାଇ-ଟେକ୍ନୋଲୋଜି ଦ୍ୱାରା ଆଧୁନିକ ଅର୍ଦ୍ଧ ସମୃଦ୍ଧି (Economic Growth) ପ୍ରକୃତରେ ସମୃଦ୍ଧି ନୁହଁ, ଏହା ଡକାୟତି । ଏପରି ଭାଷା କ୍ରୋଧରୁ ଆସିଛି ।

(୨)

କ୍ରୋଧ ହେଉଛି ବିଷମତା ଓ ଲୁଟ୍ ବିରୋଧରେ । ଆମେରିକା ଓ ୟୁରୋପରେ ଏପରି ପ୍ରତିଧ୍ୱନି ଶୁଭିଲାବେଳେ ଆମଦେଶର ଶାସକମାନେ ନିରବ । ଏହି ନିରବତା

ଭିତରେ ଲୁଚିରହିଛି ଆମେରିକାର ଲାଞ୍ଜ ହୋଇ ଆର୍ଥିକ ସଂକଟ ଗୁଡ଼ିକୁ ଡାକିଆଣୁଥିବା ଆମ ଶାସକମାନଙ୍କ କମ୍ପାନୀ ପ୍ରୀତି ଓ କମ୍ପାନୀ ନିୟନ୍ତିତ ରାଜନୀତି । ଆମଦେଶରେ ଜଗତୀକରଣର ପ୍ରବାହ ଆରମ୍ଭରୁ ନବେ ଦଶକରୁ ଏହି ନବ ଆର୍ଥିକ ସଂସ୍କାର ମାନବିକ, ସାମାଜିକ, ସାଂସ୍କୃତିକ ଓ ସର୍ବୋପରି ସାଧାରଣ ଲୋକଙ୍କ ପାଇଁ ଆର୍ଥିକ ସଂକଟ ସୃଷ୍ଟିକରିବ ବୋଲି ପ୍ରତିବାଦର ସ୍ୱର ଉଠିଆସିଛି । ଏକ ବୈଷମ୍ୟ ଓ ଶୋଷଣଭିତ୍ତିକ ସମାଜରୁ ଦାରିଦ୍ର୍ୟ ଓ ଅସମତା ହଟାଇବା ପାଇଁ ସମ୍ବିଧାନରେ ରାଷ୍ଟ୍ରୀୟ ନିର୍ଦ୍ଦେଶାବଳୀ ପରିଚ୍ଛେଦ ଥିଲେ ବି ବିଷମତା ଆକାଶଛୁଆଁ ହେଲାଣି । ରାଷ୍ଟ୍ରର ଦାୟିତ୍ୱକୁ ଶେଷକରି ଦିଆଗଲା ନବ ଉଦାରବାଦୀ ଅର୍ଥନୀତି ଜରିଆରେ । ଏବେ ଆମ ଦେଶରେ ଘରୋଇକରଣ ଓ ବିଦେଶୀ ପୁଞ୍ଜିନିବେଶକୁ କିପରି ନିୟନ୍ତିତ କରାଯାଇ ଶିକ୍ଷା, ସ୍ୱାସ୍ଥ୍ୟ, କୃଷିକୁ କମ୍ପାନୀମାନଙ୍କ ହାତରେ ବ୍ୟବସାୟିକ ପରିଚାଳନା କରାଯିବ ସେଥିରେ ସରକାରମାନେ ନିୟୋଜିତ । ଜମି, ଜଂଗଲ, ଖଣି ଓ ପାଣିକୁ ଶିଳ୍ପାୟନ ନାମରେ ଲୁଟ୍‌କରଣର ପ୍ରକ୍ରିୟା ଆରମ୍ଭ ହୋଇଯାଇଛି । ଫଳରେ ଦେଶରେ କୃଷି ସଂକଟ ଘନୀଭୂତ ହେବାବେଳେ କୃଷକ ଆତ୍ମହତ୍ୟା କରୁଛି । ଅନ୍ୟପଟେ ଜଂଗଲକୁ କର୍ପୋରେଟ୍ ମାନଙ୍କ ଅକ୍ତିଆର ପାଇଁ ଆଦିବାସୀଙ୍କୁ ବିସ୍ଥାପନ ଜବରଦସ୍ତ କରାଯାଉଛି । ବିକାଶ ନାମରେ ବିନାଶକୁ ଆଇନଗତ ମାନ୍ୟତା ଦିଆଗଲାଣି ।

୨୦ବର୍ଷର ଜଗତୀକରଣରେ ଯେଉଁ ଆର୍ଥିକ ଅଭିବୃଦ୍ଧି ହୋଇଛି, ଆମେରିକା ପରି ଆମଦେଶରେ ମଧ୍ୟ କେତେକ ଧନୀମାନଙ୍କ ହାତରେ ପ୍ରଚୁର ସମ୍ପତ୍ତି ଠୁଳ ହୋଇଛି ଓ ସାଧାରଣ ଜନତା ନିଜର ଆର୍ଥିକ ସାମର୍ଥ୍ୟ ହରାଇଛନ୍ତି । ଯେହେତୁ କୋଟିକୋଟି ଜୀବିକାର ମୂଳସ୍ରୋତ ପ୍ରାକୃତିକ ସଂପଦର ଲୁଟ୍‌କରଣ ହେଉଛି । ପ୍ରାକୃତିକ ବିପର୍ଯ୍ୟୟ ଅନିବାର୍ଯ୍ୟ ହୋଇଯାଇଛି । ଆମ ଘରୋଇ ଉତ୍ପାଦନରେ କୃଷିର ଅଂଶମାତ୍ର ୧୭%କୁ ଖସି ଆସିଛି । ୧୯୬୦ବେଳେ ଏହା ୬୨% ଥିଲା, ଯଦିଚ ଏହି ସମୟ ଅବଧିରେ କୃଷି ଉତ୍ପାଦନ ୪ଗୁଣ ବୃଦ୍ଧି ହୋଇଛି । ଏହାର କାରଣ ଜାତୀୟ ଆର୍ଥିକ ଅଭିବୃଦ୍ଧିର କେନ୍ଦ୍ର ସେବାକ୍ଷେତ୍ରର ଆୟ ଉପରେ ଅଧିକ ଆଧାରିତ କିନ୍ତୁ ଉତ୍ପାଦନଭିତ୍ତିକ ନୁହଁ । ପ୍ରକୃତ ଉତ୍ପାଦନ କୃଷି ଓ ଜଂଗଲରେ । ସାଧାରଣ ଲୋକଙ୍କ ମୌଳିକ ଆବଶ୍ୟକତାକୁ ନେଇ ଶିଳ୍ପ ଉତ୍ପାଦନ ଦରକାର । କିନ୍ତୁ ଶିଳ୍ପ ଉତ୍ପାଦନ ହେଉଛି ଧନୀକ ଶ୍ରେଣୀର ପ୍ରାଚୁର୍ଯ୍ୟ ପାଇଁ, ବିଳାସ ବ୍ୟସନର ଆଧୁନିକୀକରଣ ପାଇଁ ପୁଞ୍ଜିନିବେଶକୁ ପ୍ରାଧାନ୍ୟ ଦିଆଯାଉଛି । ଅତ୍ୟଧିକ ଭୋଗବାଦକୁ ଆର୍ଥିକ ପ୍ରୋତ୍ସାହନ ଦିଆଯାଉଛି । ଯାହାରଫଳ ଅନିୟନ୍ତିତ ଦରବୃଦ୍ଧି ଓ ଦାରିଦ୍ର୍ୟର ସ୍ଥାୟିତ୍ୱ । ଯେଉଁଠି ୭୭% ଗ୍ରାମାଞ୍ଚଳ ଲୋକଙ୍କ ବ୍ୟକ୍ତିଗତ କ୍ରୟ ସାମର୍ଥ୍ୟ ୨୦ଟଙ୍କାରୁ କମ୍ ସେହି ଦେଶର ବିଧାୟକ ସାଂସଦମାନଙ୍କ ଦୈନିକ ଦରମା ୨

ହଜାରରୁ ୪ହଜାର ଟଙ୍କା । ପୁଣି ସରକାରୀ ଅଫିସରଙ୍କ ଦରମା ୫ହଜାର ଟଙ୍କା ପର୍ଯ୍ୟନ୍ତ । ପୁଞ୍ଜିପତି, ଶିଳ୍ପପତି ତଥା ଧନୀବ୍ୟକ୍ତିମାନଙ୍କ ମଧ୍ୟରୁ ମାତ୍ର ୫୦ଜଣ ସର୍ବୋଚ୍ଚ ଧନୀଙ୍କ ହାତରେ ଜାତୀୟ ଘରୋଇ ଉତ୍ପାଦନର ୨୦% ଓ ଷ୍ଟକ୍ ମାର୍କେଟରେ ନିବେଶ ହୋଇଥିବା ମୋଟ ପୁଞ୍ଜିର ୮୦% । ଏକଥା କହିଛି ଏସୀୟ ଉନ୍ନୟନ ବ୍ୟାଙ୍କର ୨୦୦୯ ରିପୋର୍ଟ । ୨୦୦୫ ବିଶ୍ୱବ୍ୟାଙ୍କର ରିପୋର୍ଟ ଅନୁଯାୟୀ ୭୫.୬% ବ୍ୟକ୍ତି ୨ଡଲାର ଅର୍ଥାତ୍ ୧୦୦ଟଙ୍କାରୁ କମ୍ ଆୟ କରନ୍ତି ଓ ୪୬% ବ୍ୟକ୍ତିଙ୍କ ଆୟ ୧.୨୫ଅର୍ଥାତ୍ ୭୩ଟଙ୍କାରୁ କମ୍ ଅର୍ଥାତ୍ ଅତି ଦରିଦ୍ର୍ୟ । ଦେଶର ସୁପରଧନୀଙ୍କ ସଂଖ୍ୟା ୮୨୦୦, ଯାହାଙ୍କ ସମ୍ପତ୍ତିର ମୂଲ୍ୟ ୯୪୫୦୦କୋଟି ଡଲାର ଅର୍ଥାତ୍ ୪୭୨୫୦୦୦କୋଟି ଟଙ୍କା, ଯାହାକି ଭାରତୀୟ ଅର୍ଥନୀତିର ମୋଟ ସଂପତ୍ତିର ପ୍ରାୟ ୭୦% । ଏମାନଙ୍କ ମଧ୍ୟରୁ ୧୧୫ଜଣ ପ୍ରତ୍ୟେକ ୧୦୦କୋଟି ଟଙ୍କାର ଅଧିକ ସଂପତ୍ତିର ମାଲିକ । ଆମେରିକାର ଅର୍ଥ ବ୍ୟବସ୍ଥା ତରଳିଗଲା ବୋଲି ଆମ ଦେଶର କମ୍ପାନୀମାନଙ୍କୁ ସୁରକ୍ଷା ଦେବାପାଇଁ ୩ବର୍ଷର କେନ୍ଦ୍ର ବଜେଟ୍ ଜରିଆରେ ୫.୮କୋଟି ଟଙ୍କାର ଟିକସ ଛାଡ଼ କରାଗଲା । ବିଭିନ୍ନ ଶିଳ୍ପ ଉତ୍ପାଦନର ବ୍ୟକ୍ତି କମିଲେ ବି ୨୦୦୯ରେ ଥିବା କୋଟିପତି ସଂଖ୍ୟା ୨୨୬୭୦୦ରୁ ୨୦୧୦ରେ ୨୫୩୦୦୦କୁ ବୃଦ୍ଧିହେଲା । ଅର୍ଥାତ୍ କରୋଡ଼ପତି (୪.୫କୋଟିରୁ ଅଧିକ) ସଂଖ୍ୟା ୨୦ ପ୍ରତିଶତ ବୃଦ୍ଧି ହୋଇପାରୁଥିବାବେଳେ ବିଭିନ୍ନ ଶିଳ୍ପ, ବ୍ୟାଙ୍କରୁ କୋଟିଏରୁ ଅଧିକ ନିଯୁକ୍ତି ହରାଇଛନ୍ତି ୨୦୦୮ରେ ଜାତୀୟ ଘରୋଇ ଉତ୍ପାଦନ କମିଯିବାରୁ ୨୦୦୯ରେ ୩.୩୬ କୋଟି ଲୋକ ଦାରିଦ୍ର୍ୟ ସୀମାରେଖା ତଳକୁ ଆସିଗଲେ ।

ତେଣୁ, ତୁଳନାତ୍ମକ ଦୃଷ୍ଟିରେ ଦେଖିଲେ ଆଧୁନିକ ଆମେରିକାର ପୁଞ୍ଜିବାଦ ଅର୍ଥବ୍ୟବସ୍ଥା ଶୋଷଣ ଓ ଲୁଟ୍ ଉପରେ ପର୍ଯ୍ୟବସିତ । ଲୋହିତ ଭାରତୀୟ ଓ ଗରିବ ଚାଷୀଙ୍କୁ ଜମି, ଜଂଗଲ ଓ ଜଳରୁ ବିସ୍ଥାପିତ କରି ୟୁରୋପର ଗୋରାମାନେ ନିଗ୍ରୋଙ୍କ ଶ୍ରମରୁ ୱାଂଶିଟନ୍, ରିଆଟଲ ଓ ନ୍ୟୁୟର୍କର ଆର୍ଥିକ ସାମ୍ରାଜ୍ୟ ଠିଆ କରାଇଛନ୍ତି । ଏହି ଆର୍ଥିକ ସାମ୍ରାଜ୍ୟ ଆଜି ବି ଗରିବ ଦେଶମାନଙ୍କ ଅର୍ଥବ୍ୟବସ୍ଥାକୁ ଦୁର୍ବଳ କରି ନିଜର କର୍ପୋରେଟ୍ ଦୁନିଆର ସମୃଦ୍ଧିରେ ଲାଗିଛି । ସେହି ସାମ୍ରାଜ୍ୟବାଦୀ ପୁଞ୍ଜିବାଦ ଆଜି ନିଜ ସୃଷ୍ଟ ସଂକଟର ଶିକାର, ଯାହାର ପରିଣାମରେ ସେଠାର ସାଧାରଣ ସଂପନ୍ନ ବ୍ୟକ୍ତିମାନେ ନିଜକୁ ଅସୁରକ୍ଷିତ ମନେକରି ଏକ ନିଶ୍ଚିତ ଭବିଷ୍ୟତ ପାଇଁ ପ୍ରଚଳିତ ଅର୍ଥ ବ୍ୟବସ୍ଥା ପ୍ରତି ଅସନ୍ତୋଷ ଓ ବିରୋଧ ପ୍ରକାଶ କରୁଛନ୍ତି ।

ଆମଦେଶରେ ଏହା ଅଧିକ ସଂକଟଆଡ଼କୁ ଯାଉଛି । ଆମ କୃଷି, ଜଳ ଓ ଜଂଗଲ ଶେଷ ହୋଇଯିବ ଓ ପ୍ରଦୂଷଣର ଶିକାର ହେବାପରେ ଆମ ଜୀବନ ଜୀବିକା

ଦୁର୍ବିସହ ହୋଇଯିବ । ଉକ୍ତ ବୈଷମ୍ୟ ସମାଜକୁ ଭାଂଗିଦେବ । ରାଷ୍ଟ୍ରର ଏକତା ଓ ସର୍ବଭୌମତ୍ୱର ସୁରକ୍ଷା ଅସମ୍ଭବ ହୋଇପଡ଼ିବ । ଆଜିର ପୁଲିସ ମିଲିଟାରୀକୁ ପୁଞ୍ଜିବାଦ ବ୍ୟବସ୍ଥାର ସୁରକ୍ଷାପାଇଁ ନିୟୋଜିତ । ଯେତେବେଳେ ସାଧାରଣ ଜନତା ନିଃସ୍ୱ ହୋଇଯିବେ, ସମ୍ବଳ ସରିଯାଇଥିବ, ସେତେବେଳ ଦେଶକୁ ମିଲିଟାରୀ ଓ ପୁଲିସ ରକ୍ଷା କରିପାରେ ନାହିଁ କାରଣ ଦେଶର ଜନତା ଦୁର୍ବଳ ହୋଇଯାଇଥିବେ କିମ୍ବା ରାଷ୍ଟ୍ର ଶକ୍ତି ବିରୋଧରେ ବିଦ୍ରୋହ କରୁଥିବେ । ତେଣୁ, ଆମ ଦେଶର ଶାସକମାନେ ଆତ୍ମନିରୀକ୍ଷଣ କରିନପାରନ୍ତି କିନ୍ତୁ ପ୍ରଗତିଶୀଳ ଗଣତାନ୍ତ୍ରିକ ସଂଗଠନର ରାଜନୀତିକ ଓ ସାଧାରଣ ନାଗରିକମାନେ ମୂଲ୍ୟାୟନ କରନ୍ତୁ । 'ଓ୍ୱାଲଷ୍ଟ୍ରିଟ୍ କବ୍ଜା' ଅଭିଯାନର ମୂଳରେ ଯେଉଁ ଚେତନା ଆତ୍ମପ୍ରକାଶ କରୁଛି, ତାହା ଆମଦେଶରେ ଚାଲିଥିବା ଜମି, ଜଳ, ଜଂଗଲ ସୁରକ୍ଷା ପାଇଁ ବିସ୍ଥାପନ ବିରୋଧୀ ଜନଆନ୍ଦୋଳନମାନଙ୍କ ମୌଳିକ ପ୍ରସଂଗ ଓ ଦାବିଗୁଡ଼ିକୁ ଅଧିକ ଯଥାର୍ଥ ବୋଲି ପ୍ରମାଣିତ କରୁଛି । ଜୀବନ-ଜୀବିକାର ସୁରକ୍ଷା ଓ ଗ୍ୟାରେଣ୍ଟି ପାଇଁ Sustainable Development ବା ନିରନ୍ତର ବିକାଶ ଅପରିହାର୍ଯ୍ୟ, ଯାହାର ମୂଳମନ୍ତ୍ର ମହାତ୍ମାଗାନ୍ଧୀଙ୍କ ବିଚାରରେ ପୃଥିବୀରେ ଥିବା ସଂପଦ ସମସ୍ତଙ୍କ ଆବଶ୍ୟକତା ପାଇଁ ଯଥେଷ୍ଟ କିନ୍ତୁ ଏହାର ଲାଳଚ ବିକାଶ ପାଇଁ ନୁହଁ । ସେହିପରି ପୁଞ୍ଜିବାଦର ଧ୍ୱଂସକାରୀ ଚରିତ୍ରକୁ ବ୍ୟାଖ୍ୟାକରି ସାମ୍ୟବାଦ ଦର୍ଶନର ପ୍ରବର୍ତ୍ତକ କାର୍ଲମାର୍କ୍ସଙ୍କ ଭାଷାରେ- ଯଦି ମଣିଷ ମରିବାକୁ ଚାହେଁ ନାହିଁ ତାହାହେଲେ ପ୍ରକୃତି ସହ କିପରି ମିଳିମିଶି ରହିବାକୁ ହେବ ସେ ଚିନ୍ତା କରିବା ଏକାନ୍ତ ଜରୁରି । ସେ କହିଛନ୍ତି ପୁଞ୍ଜିବାଦ ଯେବେ ଆରମ୍ଭ ଏକ ବ୍ୟବସ୍ଥାରୂପେ ତାହା ପ୍ରକୃତି ଓ ସର୍ବସାଧାରଣ ସମ୍ବଳଗୁଡ଼ିକ ଉପରେ ଜବରଦସ୍ତ ହକ ଜାହିର କରେ । ୧୮୪୪ରେ ଅର୍ଥନୀତିକ ଓ ଦାର୍ଶନିକ ପାଣ୍ଡୁଲିପିରେ କାର୍ଲମାର୍କ୍ସ କହିଛନ୍ତି ମଣିଷ ପ୍ରକୃତିରୁ ହିଁ ଜୀବନ ପାଇଛି । ପ୍ରକୃତି ତା'ର ଶରୀର । ତେଣୁ, ସର୍ବଦା ପ୍ରକୃତି ସହ ମଣିଷର ବାର୍ତ୍ତାଳାପ ଚାଲିବା ଉଚିତ । ଯଦି ମଣିଷ ମରିବାକୁ ଚାହେଁନାହିଁ, ମଣିଷର ମାନସିକ ଓ ଶାରୀରିକ ସଂପର୍କ ପ୍ରକୃତି ସହ ଅତି ନିବିଡ଼ । ମଣିଷ ପ୍ରକୃତିର ଏକ ଅଂଶ ।

Marx 1844- Economic & Philosophical Manuscripts-

"Man lives from natrure, nature is his body and he musmaintain a continuing dialogue with it if he is not .... die. To say that man .... physical and mental life linked to nature simple means that nature linked to itself for men part of nature."

ଯେଉଁ ପୁଞ୍ଜିବାଦ ଆମେରିକାରେ ଆର୍ଥିକ ବୈଷମ୍ୟ ପାଇଁ ଦାୟୀ

କର୍ପୋରେଟମାନଙ୍କ ମୁନାଫା ତୃଷା, ସେଥିପାଇଁ ଦେଶ ମଧ୍ୟବିତ୍ତ ନାଗରିକ ଅସୁରକ୍ଷା ପରେ କରୁଛି ଓ କର୍ପୋରେଟ୍ ବିରୋଧରେ ସଚେତନ ହୋଇଛନ୍ତି, ଯେ ମୋଡେଲର ଅନୁଧାବକ ଆମ ଦେଶରୁ ଶିକ୍ଷିତ ଯୁବକ/ଯୁବତୀମାନେ ଆମେରିକା ଆର୍ଥିକ ସଂକଟ ଅଧ୍ୟୟନ କରିବା ଏକାନ୍ତ ଜରୁରି । କର୍ପୋରେଟ ଜଗତର ବିଜ୍ଞାପନ ଓ ଅନ୍ଧ ଶିଳ୍ପାୟନର ପ୍ରଲୋଭନ ସ୍ୱପ୍ନ ବିଭୋର ଯୁବ ସମାଜ ଏକ ରଂଗିନ୍ ଭାର ଉପଭୋଗ କରିବାକୁ ଆତୁର ହୋଇଯାଇଛି । ଏହି ଆତୁରତା ପାଖରେ ବାସ୍ତବତାର ଘୋର ଅଭାବ । କାରଣ, ଯେଉଁଠି ମୁନାଫାର ତୃଷ୍ଣା କର୍ପୋରେଟ୍ ସାମ୍ରାଜ୍ୟର ଶୋଷ ମରିବା ପର୍ଯ୍ୟନ୍ତ ଶେଷ ବନ୍ଦହେବାର ନାହିଁ । ଜଣଙ୍କ ଲାଭପାଇଁ ଆଉ ଜଣେ ଆବଶ୍ୟକତା ବଳିପଡୁଛି, ଏହାହିଁ ହେଉଛି ବିଶ୍ୱସ୍ତରରୁ ଗାଁ ପର୍ଯ୍ୟନ୍ତ । ତେଣୁ ଆମ ଯୁବକ/ଯୁବତୀଙ୍କୁ ଦେଖିବାକୁ ହେବ ବିଜ୍ଞାପନରୁ ନୁହଁ କିନ୍ତୁ ଜ୍ଞାନ ବିଜ୍ଞାନରୁ । ବିଜ୍ଞାନ କହୁଛି ପ୍ରକୃତିଦତ୍ତ ସଂପଦ ଆଜି ନୁହଁ, ଲକ୍ଷଲକ୍ଷ ବର୍ଷ ଲାଗିଛି ନଦୀ, ଝରଣା, ଜମି, ଜଂଗଲ ସୃଷ୍ଟିପାଇଁ । ଏସବୁ ଆମର ପ୍ରକୃତ ପୁଞ୍ଜି, ଯାହାକି କାହାରି ମାଲିକାନାର ନୁହଁ । ଏହାର ସଦ୍‌ଉପଯୋଗ ଓ ମିତବ୍ୟୟିତା ପାଇଁ ଜ୍ଞାନ ଆବଶ୍ୟକତା ଅଛି । ତେଣୁ, ଜ୍ଞାନ ଓ ବିଜ୍ଞାନକୁ ଜୀବନର ସଫଳତା ପାଇଁ ବାସ୍ତବରେ ଦେଖିବାକୁ ହେବ, ଯେଉଁଠି ବୈଷମ୍ୟ ଓ ଶୋଷ ସମାଜ ସମ୍ଭବପର ।



# ନୂତନ ସାହିତ୍ୟାଦର୍ଶ

କୃଷ୍ଣ ମିଶ୍ର

ଆଜିକାଲି ଆମ ସାହିତ୍ୟ ସମାଲୋଚକମାନେ କୌଣସି କାବ୍ୟ କବିତା ବା ଗଳ୍ପ ଉପନ୍ୟାସର ଆଲୋଚନା କଲାବେଳେ ସାଧାରଣତଃ ଗୋଟିଏ କଥା କହିଥାନ୍ତି । ତାହା ହେଲା କବି ବା ଗାଳ୍ପିକର ସାମାଜିକ ପ୍ରତିବଦ୍ଧତା ସାମାଜିକ ପ୍ରତିବନ୍ଧତା କଥା ଯଦି ସେ ଲେଖାରେ ନାହିଁ, ତେବେ ଟାଣି ଉଟାରି ତାକୁ ଭର୍ତ୍ତି କରିବାକୁ ହୁଏ, ନଚେତ୍ ଲେଖାଟି ଗ୍ରହଣ ଯୋଗ୍ୟ ହୁଏ ନାହିଁ ।

ଅସଲରେ ସମାଜକୁ ଛାଡ଼ି, ମାଟି ପାଣିପବନକୁ ଛାଡ଼ି କେହି କ'ଣ କିଛି ଲେଖିଲାନି ବା ଲେଖିବା ସମ୍ଭବ ? ଅନ୍ୟ କଥାରେ କହିଲେ, ସମାଜକୁ ଛାଡ଼ି, ମାଟି ପାଣି ପବନ ଓ ଆଲୋକକୁ ଛାଡ଼ି କେହି କିଛି ଲେଖି ପାରେନା । ପ୍ରତ୍ୟେକ ମଣିଷ ପରିବେଶ ଦ୍ୱାରା ପରିପୁଷ୍ଟ ହୁଏ । ତା'ର ଧ୍ୟାନ ଧାରଣା, ଅନୁଭୂତି ସବୁ ପରିବେଶରୁ ଉଦ୍‌ଭବ । ଏଣୁ ତା'ର'ଭାଷା, ଲେଖା ବା କାର୍ଯ୍ୟରେ ପରିବେଶର ପ୍ରଭାବ ପଡ଼ିଥାଏ । ସମୟର ପ୍ରଭାବ ମଧ କମ୍ ନୁହେଁ । ଅର୍ଥାତ୍ ଜଣେ ଶିଳ୍ପୀ, କବି ବା ଲେଖକ ଯେଉଁ ସମୟରେ ବଞ୍ଚେ ସେ ସମୟର ରାଜନୀତି, ସମାଜନୀତି ଓ ନୈତିକ ବିଚାର ତାର ଲେଖାକୁ ପ୍ରଭାବିତ କରିଥାଏ । ଏଣୁ ସବୁ କବି, ଲେଖକ, ବା ଶିଳ୍ପୀ ସମାଜ ସହିତ ପ୍ରତିବଦ୍ଧ । ଏହି ପ୍ରତିବଦ୍ଧତା ଅପରିବର୍ତ୍ତୀୟ ନୁହେଁ । ଏହା ସବୁବେଳେ ଯୁଗାନୁସାରୀ, ଅର୍ଥାତ୍ ଗୋଟିଏ ଯୁଗର୍ ନୀତି ନୈତିକତା, ତା'ର ପରବର୍ତ୍ତୀ ଯୁଗରେ ଅକାମୀ ହୋଇଯାଏ । ଆମ ପୁରାଣ ଯୁଗର ସାହିତ୍ୟ କଥା ବିଚାର କରନ୍ତୁ, ସାରଳା ଦାସ ତାଙ୍କ ମହାଭାରତର ଆଦ୍ୟକାଣ୍ଡ ସାରଳା ବନ୍ଦନା ପବର୍ନରେ ଲେଖିଛନ୍ତି-

"ଏକଲୟେ କରିଣ ଶୁଣସି ସାବଧାନେ
ଫିଟିବାଜ ପାତେକ ସବୁ ଦୁଷ୍କୃତମାନେ,"

ଅର୍ଥାତ୍ ପୁରାଣ ପଠନ ବା ଶ୍ରବଣ କଲେ ପାପ ତାପ ଦୂର ହୁଏ, ପୁଣ୍ୟ ଅର୍ଜନ ହୁଏ ଓ ମୃତ୍ୟୁ ପରେ ଯମଦଣ୍ଡ ଭୋଗିବାକୁ ପଡ଼େନାହିଁ ।

ଜଗନ୍ନାଥ ଦାସ ମଧ୍ୟ ତାଙ୍କ ଭାଗବତରେ ଏକଥା ଲେଖିଛନ୍ତି-

"ଅଶେଷ ଜଗତର ହିତେ,
ବର୍ଣ୍ଣଇ ଦାସ ଜଗନ୍ନାଥେ ।
ନିର୍ମଳ ମୁନିଙ୍କର ମତେ,
ହରି ଚରିତ ଭାଗବତେ ।
କହିବି ଅଛି ଯେତେ ଗୁଣ,
ସୁଜନେ ସାବଧାନେ ଶୁଣ ।
× × ×
ଶ୍ରବଣ ମାତ୍ରେ ମୋକ୍ଷ ପାଇ,
ତାପ ତ୍ରିତୟ କ୍ଷୟ ଯାଇ ।
ହୃଦୟେ ବସଇ ତକ୍ଷଣ
ଅନାଦି ପ୍ରଭୁ ନାରାୟଣ ।
ଏଣୁ ଅଧିକ ଅନ୍ୟ ଗ୍ରନ୍ଥେ
କି ପ୍ରୟୋଜନ ଏ ଜଗତେ ।(ପ୍ରଥମ ସ୍କନ୍ଦ, ପ୍ରଥମ ଅଧ୍ୟାୟ)

ଏହାପରେ ଆମ ସାହିତ୍ୟରେ ଯେଉଁ ରୀତି ଯୁଗର ଆରମ୍ଭ ହେଲା, ସେଥିରେ ମଧ୍ୟ କବିମାନେ ଏହି କଥା ଲେଖିଛନ୍ତି । ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତ ସିଂହାର ଆଦି ପ୍ରତ୍ୟେକ କବି କହିଛନ୍ତି ଯେ ତାଙ୍କ ଲେଖା ପାଠ କଲେ ବା ଶୁଣିଲେ ପାପ ନାଶ ହେବ, ମଲେ ବୈକୁଣ୍ଠ ବାସ ହେବ । ଆଉ ପୁନର୍ଜନ୍ମ ହେବନାହିଁ ଇତ୍ୟାଦି । ଆମର ଭୀମ ଭୋଇ ମଧ୍ୟ ତାଙ୍କ ସ୍ତୁତି ଚିନ୍ତାମଣିରେ ଠାଏ ଲେଖିଛନ୍ତି-

ମୋ ଜୀବନ ପଛେ ନର୍କେ ପଡ଼ିଥାଉ,
ଜଗତ ଉଦ୍ଧାର ପାଉ ।

ଅର୍ଥାତ୍, ସେ ଯେଉଁ ଭଜନ ମାର୍ଗ ଦେଖାଇଲେ ତାହାଦ୍ୱାରା ଜଗତ ଉଦ୍ଧାର ପାଇଯିବ ବୋଲି ପ୍ରଚାର କଲେ ।

ଏକଥା କହିବାର ଉଦ୍ଦେଶ୍ୟ ହେଲା- ଆମର ପୁରାଣ ଯୁଗ ବା ମଧ୍ୟଯୁଗର କବି ଲେଖକମାନେ ସେମାନଙ୍କ ରଚନାଗୁଡ଼ିକ ସମାଜର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ବୋଲି କହିଛନ୍ତି । ଏଣୁ, ଏହିସବୁ କବି ଲେଖକମାନଙ୍କର ସାମାଜିକ ପ୍ରତିବଦ୍ଧତା ଥିଲା ବୋଲି ଧରିନେବାକୁ ହେବ । କିନ୍ତୁ ସେ ଯୁଗର ସାମାଜିକ ପ୍ରତିବଦ୍ଧତା ଓ ଆଜିର ପ୍ରତିବଦ୍ଧତା ସମାନ ନୁହେଁ । ତେବେ ଆଜିର ସାମାଜିକ ପ୍ରତିବଦ୍ଧତାର ସ୍ୱରୂପ କ'ଣ, ବା କ'ଣ ହେବ ଉଚିତ ?

ଲକ୍ଷ୍ୟ କଲେ ଜଣାଯିବ ଯେ ପ୍ରତ୍ୟେକ କବି ବା ସାହିତ୍ୟିକ କୌଣସି ନା କୌଣସି ଦର୍ଶନ ବା ମତବାଦର ପ୍ରଚାରକ । ଜ୍ୟେଷ୍ଠ ମାସ ଶେଷରେ ବା ଆଦ୍ୟ ଆଷାଢ଼ ମାସରେ ଶିମୂଳୀ ଗଛ ତୁଳା ଉଡ଼ାଏ । ଅସଲରେ ଶିମୂଳୀ ଗଛର ତୁଳା ଉଡ଼ାଇବା ଉଦ୍ଦେଶ୍ୟ ନୁହେଁ । ଅସଲ ଉଦ୍ଦେଶ୍ୟ ହେଲା- ବୀଜ ବିକ୍ଷେପ । ଶିମୁଳୀ ତୁଳାର କେନ୍ଦ୍ରରେ ଯେଉଁ ମଞ୍ଜିଟି ଥାଏ, ତାହା ତୁଳା ସାହାଯ୍ୟରେ ପବନରେ ଉଡ଼ି ଇତଃସ୍ତତ ପଡ଼େ । ଏହିପ୍ରକ୍ରିୟାରେ ଶିମୁଳୀ ଗଛ ତା'ର ବଂଶ ବୃଦ୍ଧି କରିଥାଏ । ସେହିପରି କବି ବା ଲେଖକ ତା'ର ଶିଳ୍ପ ଚାତୁରୀ ମାଧ୍ୟମରେ ତା'ର ବିଶ୍ୱାସ ବା ପ୍ରତ୍ୟୟକୁ ପ୍ରଚାର କରେ । ତେଣୁ ସାମାଜିକ ପ୍ରତିବଦ୍ଧତା ଯଦି ଏକ ବିଶ୍ୱାସ କିମ୍ବା ପ୍ରତ୍ୟୟ ହୁଏ, ତେବେ ତାହା ପରିବର୍ତ୍ତନଶୀଳ । ଯୁଗକୁ ଯୁଗ ଭିନ୍ନଭିନ୍ନ ହୋଇଥାଏ ।

ମହାଭାରତରେ ଯେଉଁ ବୀରତ୍ୱର କାହାଣୀମାନ ଗ୍ରଥିତ ହୋଇଛି ତାହା ସେ ଯୁଗର ଆବଶ୍ୟକତା ପାଇଁ । ସେହିପରି ନାରୀ ଚରିତ୍ର ଉପସ୍ଥାପନା ଓ ତା'ର ସୃଷ୍ଟିକାମୀ ମହନୀୟତା ମଧ୍ୟ ସେ ସମୟର ଲୋକକ୍ଷୟକୁ ପୂରଣ କରିବା ପାଇଁ ଉଦ୍ଦିଷ୍ଟ । ଏଣୁ ସାମାଜିକ ଆବଶ୍ୟକତାକୁ ପୂରଣ କରିବା ପାଇଁ କଲମ ଧରିବା ମଧ୍ୟ ଏକ ସାମାଜିକ ପ୍ରତିବଦ୍ଧତା । ତେବେ ମୁଖ୍ୟତଃ ଧର୍ମ ଓ ଦର୍ଶନର ପ୍ରଚାର କବିମାନଙ୍କର ଧ୍ୟେୟ । ଦେଖିବାକୁ ଗଲେ ଧର୍ମ ଓ ଦର୍ଶନ ମଧ୍ୟ ସାମାଜିକ ଜୀବନର ଅନୁଭବରୁ ଜାତ । ବେଳେବେଳେ ଶାସକବର୍ଗ ତାଙ୍କ ସ୍ୱାର୍ଥସିଦ୍ଧି ପାଇଁ ତାଙ୍କୁ ସୁହାଉଥିବା ଧର୍ମ-ଦର୍ଶନ ମାର୍ଗକୁ କବିମାନଙ୍କ ଦ୍ୱାରା ପ୍ରଚାର କରାଇଥାନ୍ତି । ଏହି ମାର୍ଗରେ ଆମେ ଏବେ ପୁରାତନ ସାମାଜିକ ଜୀବନ ଓ ତତ୍‌କାଳୀନ ଧର୍ମ ଧାରଣା କଥା ବିଚାର କରିବା ।

ଅତି ପ୍ରାଚୀନ କାଳରେ ଯେତେବେଳେ ମାନବଗୋଷ୍ଠୀ ଜଙ୍ଗଲରେ ବାସ କରୁଥିଲା, ସେତେବେଳେ ଈଶ୍ୱର ବୋଲି କୌଣସି କାଳ୍ପନିକ ପୁରୁଷ ନ ଥିଲା କି ସେ ଈଶ୍ୱରଙ୍କ ପୂଜା ଆରାଧନା ମଧ୍ୟ ନଥିଲା । ତେବେ ପ୍ରାକୃତିକ ବିପର୍ଯ୍ୟୟ ଯଥା ବାତ୍ୟା, ବନ୍ୟା, ଅଗ୍ନି ଉଦ୍‌ଗୀରଣ, ବିଜୁଳି ଘଡ଼ଘଡ଼ି ଆଦି ଆଦିମ ମଣିଷକୁ ଭୟଭୀତ କରୁଥିଲା । ଏହି ପ୍ରାକୃତିକ ବିପର୍ଯ୍ୟୟର ଲୋକକ୍ଷୟକାରୀ ଶକ୍ତିମଧ୍ୟ ଭୟର କାରଣ ଥିଲା । ଏହି ଭୟରୁ ଭକ୍ତିର ଉତ୍ପତ୍ତି । ସେହି ଆଦିମ ମଣିଷ ପ୍ରକୃତିର ବିଭିନ୍ନ ରୂପକୁ ଭୟକରିବା ସହିତ ଭକ୍ତି କରିବାକୁ ଲାଗିଲା । ଏଣୁ, ସେହି ପ୍ରାକୃତିକ ଶକ୍ତିର ବିନାଶକାରୀ ଶକ୍ତିରୁ ରକ୍ଷା ପାଇବା ପାଇଁ ବିଭିନ୍ନ ଉପାୟ ଖୋଜିଲା । ଏହି ଉପାୟମାନଙ୍କ ମଧ୍ୟରୁ ଗୋଟିଏ ହେଲା- ପୂଜା ଆରାଧନା । ପରେପରେ ଜୀବ, ପାହାଡ଼ ପର୍ବତ, ନଦୀକୁ ମଧ୍ୟ ପୂଜା କରିବା ଆରମ୍ଭ କଲା । ଏହି ପୂଜା-ଆରାଧନା ବ୍ୟକ୍ତି ମୂଳକ ନ ହୋଇ ଗୋଷ୍ଠୀ ମୂଳକ ଥିଲା ।

ପରବର୍ତ୍ତୀ କାଳରେ ସାମାଜିକ ଜୀବନ ଶୃଙ୍ଖଳିତ ଓ ପ୍ରତିଷ୍ଠିତ ହେଲା ପରେ ସୃଷ୍ଟି ହେଲେ ଈଶ୍ୱର । ଧର୍ମ ଓ ଦର୍ଶନର ଉତ୍ପତ୍ତି ହେଲା ସେହି କଳ୍ପିତ ଈଶ୍ୱରଙ୍କୁ କେନ୍ଦ୍ରକରି । କାରଣ, ଆଦିମ ମାନବ ଗୋଷ୍ଠୀର ପ୍ରକୃତି ପୂଜା ଜନ୍ମ ଦେଲା ପୁରୋହିତ ଗୋଷ୍ଠୀଙ୍କୁ । ଏହି ପୁରୋହିତ ଗୋଷ୍ଠୀ ସମୟ କ୍ରମେ ଈଶ୍ୱରଙ୍କ ସ୍ରଷ୍ଟା ହେଲେ । ଏହି ପୁରୋହିତ ଗୋଷ୍ଠୀ କାଳକ୍ରମେ ଶାସକ ଶ୍ରେଣୀକୁ ଉନ୍ନୀତ ହେଲେ ଏବଂ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ଈଶ୍ୱର ବିଶ୍ୱାସକୁ ମୂଳଧନ କଲେ । ପରେପରେ ଶାସନର ଡୋରି ଗଲା ମୁଖିଆ ହାତକୁ । ପୁରୋହିତର ଦାୟିତ୍ୱ ହେଲା ଈଶ୍ୱର ଉପାସନା । ପରବର୍ତ୍ତୀ କାଳରେ ଦଳର ମୁଖିଆ ହେଲା ରାଜା । ପୁରୋହିତ, ମୁଖିଆ ମୁଣ୍ଡରେ ରାଜମୁକୁଟ ପିନ୍ଧାଇ ନିଜେ ବରିନେଲା ଈଶ୍ୱର ଉପାସାନା, କାରଣ ଏଥିରେ ଥିଲା ଅସଲ କ୍ଷମତା । ରାଜା ମଧ୍ୟ ପୁରୋହିତ ପ୍ରତି ଅନୁରକ୍ତ ରହିଲା । କାରଣ, ପୁରୋହିତ ହିଁ ତାକୁ ରାଜମୁକୁଟ ଦେଇଛି । ଏହି ପରମ୍ପରା ଆଜି ପର୍ଯ୍ୟନ୍ତ ବଳବତ୍ତର ରହିଛି । ଏହି ପରମ୍ପରାରୁ ଜନ୍ମ ନେଲା ରାଜତନ୍ତ୍ର ବା ସାମନ୍ତତନ୍ତ୍ର । ରାଜା ଓ ପୁରୋହିତଙ୍କ ସମ୍ମିଳିତ ଉଦ୍ୟମରେ ଜନ୍ମ ନେଲା ଆଧାତ୍ମ୍ୱବାଦୀ ଦର୍ଶନ । ପୁରୋହିତ ଶ୍ରେଣୀ ଖାଲି ରାଜତନ୍ତ୍ରର ରକ୍ଷକ ବା ସମର୍ଥକ ନଥିଲେ, ସେମାନେ ମଧ୍ୟ ଥିଲେ ସାହିତ୍ୟ ସଂସ୍କୃତିର ରକ୍ଷକ ଓ କର୍ତ୍ତା । ଅନ୍ୟମାନଙ୍କର ଏସବୁ ଭିତରକୁ ପ୍ରବେଶ ନଥିଲା ବା ପ୍ରବେଶ କରାଇ ଦିଆଯାଉ ନଥିଲା । ଏହି ପୁରୋହିତ ଶ୍ରେଣୀ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଶ୍ରେଣୀକୁ ଶାସନ କରିବାର କ୍ଷମତା ଅର୍ପଣ କଲେ ଭଗବାନଙ୍କ ନାମରେ । ଏହି ବ୍ୟବସ୍ଥାକୁ ବଳବତ୍ତର କରି ରଖିବା ପାଇଁ କୁହାଗଲା ଭଗବାନ ହିଁ ଚାରିପ୍ରକାର ଶ୍ରେଣୀ ସ୍ରଷ୍ଟା । "ଚତୁର୍ବର୍ଣ୍ଣଂ ମୟା ସୃଷ୍ଟ" ଅର୍ଥାତ୍ ମୁଁ ଭଗବାନ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୁଦ୍ର- ଏହି ଚାରିବର୍ଣ୍ଣର ମଣିଷଙ୍କୁ ସୃଷ୍ଟି କରିଛି । ଖାଲି ସୃଷ୍ଟିକରି ନାହିଁ, ସେମାନଙ୍କ କର୍ମକାଣ୍ଡ ମଧ୍ୟ ନିର୍ଦ୍ଦିଷ୍ଟ କରିଛି । ବେଦାଧ୍ୟୟନ, ଦେବାର୍ଚ୍ଚନା, ସାହିତ୍ୟ ସଂସ୍କୃତିର ରକ୍ଷଣାବେକ୍ଷଣ ହେଲା ବ୍ରାହ୍ମଣମାନଙ୍କର କାର୍ଯ୍ୟ । ରାଜ୍ୟ ଶାସନ, ଯୁଦ୍ଧବିଗ୍ରହ ଆଦି ହେଲା କ୍ଷତ୍ରିୟମାନଙ୍କର କାର୍ଯ୍ୟ, ବ୍ୟବସାୟ ବାଣିଜ୍ୟ ହେଲା ବୈଶ୍ୟମାନଙ୍କର ଅଧିକାର ଓ ୪ର୍ଥ ଶ୍ରେଣୀଙ୍କର କର୍ତ୍ତବ୍ୟ ହେଲା ପୂର୍ବ ତିନି ଶ୍ରେଣୀଙ୍କ ସେବା କରିବା । ଏକଥା କହିଲେ ଦେବତା ଓ ମାନବ ମଧ୍ୟରେ ମଧ୍ୟସ୍ଥ ଥିବା ଜନୈକ ବ୍ରାହ୍ମଣ । ଅନ୍ୟମାନେ ଏକଥାକୁ ମାନିନେଲେ । କହିଲେ-କେଜାଣି ! ହୋଇଥିବ ହୁଏ ତ । କାରଣ, ଦେବତା ତାଙ୍କ ସେବକ ବା ପୁରୋହିତଙ୍କ ମାଧ୍ୟମ କଥା ହୁଅନ୍ତି । ରାଜା ଯେପରି ତାଙ୍କ ପାତ୍ରମନ୍ତ୍ରୀ ଅମାତ୍ୟଙ୍କ ମାଧ୍ୟମରେ ତାଙ୍କ ଆଦେଶ ପ୍ରଚାର କରନ୍ତି, ଠିକ୍ ସେହିପରି ।

ବେଦାନ୍ତ ଦର୍ଶନରେ ସୃଷ୍ଟିର ସର୍ଜନା ଓ ଲୋକପିତାଙ୍କ ଜନ ସୃଷ୍ଟି ସମ୍ପର୍କରେ ଏକ ସୁନ୍ଦର ଗଳ୍ପ ରହିଛି । ତାହା ଏକ କାଳ୍ପନିକ ଗଳ୍ପଠାରୁ ବେଶି ମଜାଦାର । ଏଥିପାଇଁ ଆମେ ବ୍ୟାସଦେବଙ୍କ କୃତ ଭାଗବତ ମହାପୁରାଣର ଦ୍ୱିତୀୟ ସ୍କନ୍ଦ ୫ମ ଅଧ୍ୟାୟକୁ ଯିବା । ଏଥିରେ ଲେଖାହୋଇଛି- କ୍ଷୀର ସମୁଦ୍ରରେ ଶୋଇଥିବା ଭଗବାନଙ୍କ ନାଭିରୁ ଏକ ପଦ୍ମଫୁଲ ବାହାରିଲା । ଏହି ପଦ୍ମଫୁଲରୁ ବ୍ରହ୍ମାଙ୍କର ଜନ୍ମ । ବ୍ରହ୍ମା ବହୁକାଳ ତପସ୍ୟା କଲା ପରେ ଭଗବାନଙ୍କ ଦର୍ଶନ ପାଇଲେ । ଭଗବାନ ବ୍ରହ୍ମାଙ୍କୁ ଆଦେଶ ଦେଲେ- ସୃଷ୍ଟି ସର୍ଜନା କର । ପ୍ରଥମ ଏକ ଅଣ୍ଡା ସୃଷ୍ଟି ହେଲା, ଏହା ସହସ୍ର ବର୍ଷ ଧରି ପାଣିରେ ଭାସିଲା । ଶେଷରେ ପରମତ୍ମା ସେହି ଅଣ୍ଡାକୁ ପ୍ରାଣଦାନ କଲେ । ଫଳରେ ସେହି ଅଣ୍ଡାରୁ ଏକ ବିରାଟ ପୁରୁଷ ଜାତ ହେଲେ । ତାଙ୍କର ହଜାରେ ମୁଣ୍ଡ, ହଜାର ହଜାର ପାଦ, ବାହୁ, ଚକ୍ଷୁ, ହଜାରେ ପାଟି ଇତ୍ୟାଦି । ଏହି ବିରାଟ ପୁରୁଷଙ୍କର ଅଣ୍ଟା ଠାରୁ ଉପରକୁ ସପ୍ତଲୋକ ଓ ଅଣ୍ଟାଠାରୁ ତଳକୁ ସପ୍ତଲୋକ ସୃଷ୍ଟିହେଲା । ଏହିପରି ଚଉଦ ଭୁବନରେ ସୃଷ୍ଟି ହେଲା । ଏହି ମହାପୁରୁଷର ପାଟିରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁ ଦେଶରୁ ବୈଶ୍ୟ ଓ ପାଦରୁ ଶୁଦ୍ରମାନଙ୍କର ସୃଷ୍ଟି ହେଲା (ପଦ ୩୭) । ସେହି ବ୍ୟାସଦେବଙ୍କ କୃତ ଭାଗବତ୍ ଗୀତାରେ ଏହି ଚରିବର୍ଣ୍ଣଙ୍କର କାର୍ଯ୍ୟ ବଣ୍ଟନ କରାଯାଇଛି । "ଚତୁର୍ବର୍ଣ୍ଣ୍ୟ, ମାୟାସୃଷ୍ଟଂ ଗୁଣକର୍ମ ବିଭାଗଶଃ" । ଏହି ବିଭାଗ ମନୁସଂହିତା ବା ମନୁସ୍ମୃତିରେ ବିଶଦ ଭାବେ ବର୍ଣ୍ଣନା କରାଯାଇଅଛି । ପ୍ରଥମ ଅଧ୍ୟାୟ ଶ୍ଳୋକ ୮୮ ରୁ ୯୧ରେ ଏହି ଚରିବର୍ଣ୍ଣଙ୍କର କର୍ମବଣ୍ଟନ କରାଯାଇଛି ।

ଏସବୁ କଥା କହିବାର ଅର୍ଥ ହେଲା- ରାଜତନ୍ତ୍ରକୁ ସୁଦୃଢ଼ କରି ପ୍ରଜାପାଳିବା ପାଇଁ ଅର୍ଥାତ୍ ସମାଜରେ ଶାନ୍ତି ଶୃଙ୍ଖଳା ରକ୍ଷାର୍ଥେ ଏହିସବୁ ଶାସ୍ତ୍ର ସୃଷ୍ଟି କରାଯାଇଛି । ଏଣୁ ଟିକିଏ ଗଭୀର ଭାବେ ଚିନ୍ତା କଲେ ଜାଣିହେବ ଯେ ସମସ୍ତ ଆଧ୍ୟାତ୍ମିବାଦ ରାଜତନ୍ତ୍ର ବା ସାମନ୍ତବାଦର ରାଜନୈତିକ ଦର୍ଶନ ବ୍ୟତୀତ ଅନ୍ୟ କିଛି ନୁହେଁ । ଯଜନଯାଜନ, ଅଧ୍ୟୟନ ଓ ଅଧ୍ୟାପନାରେ ପ୍ରବୃତ୍ତ ରହୁଥିବା ହେତୁ ବ୍ରାହ୍ମଣମାନଙ୍କର ପେଟ ପାଇଁ ଆବଶ୍ୟକ ହେଉଥିବା ପଦାର୍ଥକୁ ଦାନା ରୂପେ ଗ୍ରହଣ କରାଯାଉଥିଲା ଏବଂ ଦାନ ମିଳୁଥିଲା ରାଜା ଓ ବୈଶ୍ୟମାନଙ୍କଠାରୁ ।

ପରବର୍ତ୍ତୀ କାଳରେ ଏହି ଚରିବର୍ଣ୍ଣ ବ୍ୟବସ୍ଥା ଭାଙ୍ଗିଗଲା ଓ ରାଜତନ୍ତ୍ର ବଦଳରେ ପୃଥିବୀକୁ ଆସିଲା ଗଣତନ୍ତ୍ର । ଯେତେବେଳେ ଚରିବର୍ଣ୍ଣ ବ୍ୟବସ୍ଥା ଚାଲୁଥିଲା, ବ୍ରାହ୍ମଣ, କବି ଲେଖକ ଚିନ୍ତାଶୀଳ ଲୋକେ ଏହି ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ସବୁମତେ ଚେଷ୍ଟା କରୁଥିଲେ । ଏଣୁ ସବୁ ଶାସ୍ତ୍ର, କାବ୍ୟ କବିତା, ନାଟକ ଏହି ବ୍ୟବସ୍ଥାକୁ ସମର୍ଥନ

କରି ବା ସଂସ୍କାର କରିବା ଉଦ୍ଦେଶ୍ୟରେ ରଚିତ ହେଉଥିଲା । ଏବେ ରାଜତନ୍ତର ବିଲୋପ ହୋଇଛି । ଏଣୁ, ପୂର୍ବର ସାହିତ୍ୟାଦର୍ଶ ଆଧାତ୍ମବାଦ ବଦଳରେ ନୂଆ ଆଦର୍ଶ ସୃଷ୍ଟ ହେବା ଉଚିତ । ଆମେ ଜାଣିଲେଣି ପୃଥିବୀରେ ଜୀବ ସୃଷ୍ଟି କିପରି ହେଲା । ଏଣୁ ଏବେ ଯଦି ଆମେ କହିବା- ବ୍ରହ୍ମାଙ୍କର ଅଣ୍ଡ ବା ଅଣ୍ଡାରୁ ବ୍ରହ୍ମାଣ୍ଡର ସୃଷ୍ଟି, ଏହା ହାସ୍ୟାସ୍ପଦ ହେବ ହିଁ ହେବ ।

ଅଳ୍ପକଥାରେ କହିଲେ- ଶାସ୍ତ୍ର ପୁରାଣ, କାବ୍ୟ-କବିତା ସବୁର ଉଦ୍ଦେଶ୍ୟ ହେଲା- ମଣିଷସମାଜ ତଥା ପୃଥିବୀର ସବୁ ଜୀବଜନ୍ତୁଙ୍କୁ ଶୃଙ୍ଖଳିତ ତଥା ସୁବ୍ୟବସ୍ଥିତ ଭାବେ ରଖିବାର ମାନସିକତା ସୃଷ୍ଟି କରିବା । ଅନ୍ୟ କଥାରେ କହିଲେ ରାଜନୀତି ଓ ସମାଜ ନୀତିକୁ ଉଚିତ ବାଟରେ ପରିଚାଳିତ କରିବା ପାଇଁ ଆବଶ୍ୟକ ମାନସିକତା ସୃଷ୍ଟି କରିବା ସାହିତ୍ୟର ଧ୍ୟେୟ । ସମାଜ ପାଇଁ ପୂର୍ବେ କବି ଲେଖକ ସମାଜଶାସ୍ତ୍ରୀମାନେ ଏକ ଅଧାତ୍ମବାଦୀ ଆଦର୍ଶ ସୃଷ୍ଟକରିଥିଲେ । ଯାହା ବହୁଦିନ ଧରି ଚାଲିଲା । ସେହି ଆଦର୍ଶ ଏବେ ଧନବାଦୀ ଶାସକ ଗୋଷ୍ଠୀଙ୍କ ହାତରେ । ଏହି ଧନବାଦୀ ଶାସକ ଗୋଷ୍ଠୀ ଓ ତାଙ୍କର ସମର୍ଥକମାନେ ଜୀବନକୁ ଦୁର୍ବିସହ କରିସାରିଲେଣି । ଅନିଶ୍ଚିତା, ଅସ୍ଥିରତା, ଅସମାନତା, ଅଶାନ୍ତି ଆଦି ଯେତେ ଅବକ୍ଷୟୀ ଭାବ, ଏବେ ପ୍ରବଳ । ଏଣୁ, ଆଜିର ସମାଜ ପାଇଁ ପୂର୍ବର ସେ ବ୍ୟକ୍ତିବାଦୀ ଜୀବନାଦର୍ଶ ବିଶେଷ କାମ ଦେବନାହିଁ କି ଦେଉନାହିଁ ମଧ୍ୟ । ଏଥିପାଇଁ ଏକ ସାହିତ୍ୟିକ ଆଦର୍ଶ ଆବଶ୍ୟକ । ବିଶେଷକରି ଆମ ଓଡ଼ିଆ ସାହିତ୍ୟ ପାଇଁ ଏକ ପ୍ରଗତିଶୀଳ ଭାବଧାରା ଦରକାର, ଯାହା ଆଜିର ବସ୍ତୁବାଦୀ ଦୁନିଆକୁ ସାମନା କରିପାରିବା । ବସ୍ତୁବାଦୀ ଦୁନିଆ ପାଇଁ ବସ୍ତୁବାଦୀ ଚିନ୍ତା ଦରକାର । ବିଜ୍ଞାନ ଏ ଦିଗରେ ଆଗେଇ ଚାଲିଛି । ଆମକୁ ସେ ବୈଜ୍ଞାନିକ ଦୃଷ୍ଟିକୋଣରୁ ମାନବ ସମାଜର ଇତିହାସ ପଢ଼ି ପରବର୍ତ୍ତୀ ମାନବ ସମାଜର ରୂପରେଖ ସମ୍ପର୍କରେ ଚିନ୍ତା କରିବାକୁ ହେବ ଏବଂ ସେଥିପାଇଁ ଲୋକଚରିତ୍ର ଗଢ଼ିବାକୁ ହେବ । ଏଣୁ, ମୁଁ ନୁହେଁ କି ମୋର ନୁହେଁ, "ଆମେ ଆମ୍ଭର" ଭାବ ସୃଷ୍ଟି କରିବାକୁ ହେବ । ଏଥିପାଇଁ ପୂର୍ବରୁ ପାପଭୟ, ଯମଦଣ୍ଡ, ସ୍ୱର୍ଗବାସ ବା ବୈକୁଣ୍ଠ ପ୍ରାପ୍ତି ଆଜି କଳ୍ପିତ ବ୍ୟକ୍ତିଗତ ଭାବବାଦୀ ଚିନ୍ତାକୁ ଛାଡ଼ିବାକୁ ହେବ ଏବଂ ବ୍ୟକ୍ତି ବଦଳରେ ସମାଜକୁ ପ୍ରାଧାନ୍ୟ ଦେବାକୁ ହେବ । ଆଗେ କଥା ଥିଲା, ବ୍ୟକ୍ତି ବଦଳିଲେ ସମାଜ ବଦଳିବ ।" କଥାଟି ଠିକ୍ ନୁହେଁ । ଠିକ୍ ହେଲା- ସମାଜ ବଦଳିଲେ ବ୍ୟକ୍ତି ବଦଳିବ ।

କଥାଟି ନୂଆ ନୁହେଁ ନୂଆ ହେଉଛି, ଏହାର ପୁନର୍ବିନ୍ୟାସ । ମାନବସମାଜର ଆଦ୍ୟ କାଳରେ ଏହି ସାମ୍ୟବାଦୀ ସମାଜ ଥିଲା । ମଝିରେ ସ୍ୱାର୍ଥୀ ମଣିଷ ଏ ସମାଜକୁ

ଭାଙ୍ଗି ବ୍ୟକ୍ତିବାଦୀ ସମାଜ ଗଢ଼ିଲା । ଏବେ ଏହି ସମାଜ ଚରମ ସୀମାରେ ପହଞ୍ଚିଛି । ଆଉ ଆଗକୁ ଯିବାର ବାଟ ନାହିଁ । ଫଳରେ ଦେଖା ଦେଇଛି ଅସ୍ଥିରତା । ଜଣେ ଖଣି ଖାଦାନ ଖୋଳି, ଗଛ ହାଣି ପ୍ରାକୃତିକ ସନ୍ତୁଳନକୁ ନଷ୍ଟ କରି କୋଟିପତି ହେଉଥିବାବେଳେ ବହୁଲୋକ ବେଘର ହୋଇଯାଇଛନ୍ତି । ଏହାକୁ ଏବର ସରକାର ପ୍ରୋତ୍ସାହିତ କରୁଛି । ଏ ସରକାର କାହାର ? ଜଣେ କୋଟିପତିର ନା ବହୁଲୋକଙ୍କର ?

ଏ ଦିଗରେ ଆମେ ଆଉ ଅଧିକ ଦୂର ଯିବା ନାହିଁ । ଆମ ସୀମା ହେଲା ସାହିତ୍ୟିକ ଆଦର୍ଶକୁ ନେଇ । ସାହିତ୍ୟ ଭିତରକୁ ରାଜନୀତି ପଶି ଆସିବା ହିଁ ଆସିବ । କାରଣ, ସମାଜ ପାଇଁ ସାହିତ୍ୟ । ପୁଣି ସମାଜକୁ ନେଇ ରାଜନୀତି । ଏଣୁ ସାହିତ୍ୟ ଓ ରାଜନୀତିର ସୀମା ବିବାଦ ରହିବ ହିଁ ରହିବ । ଏଥର ଆମେ ପୂର୍ବକଥାକୁ ଫେରିଯିବା । ନୂଆ ସାହିତ୍ୟିକ ଆଦର୍ଶ କଥା ଚିନ୍ତା କରିବା ।

ଏବର ଧନତାନ୍ତ୍ରୀକ ବ୍ୟକ୍ତିବାଦ ଦୁନିଆକୁ ଗ୍ରାସକରି ଗଲାଣି । ଏହାର ଭୟଙ୍କର ବିନାଶକାରୀ ଶକ୍ତି ସମାଜ ଜୀବନକୁ ଅସ୍ତବ୍ୟସ୍ତ କରି ସାରିଲାଣି । ଭାରତ ଭଳି ରାଷ୍ଟ୍ରପାଇଁ, ବିଶେଷ କରି ଓଡ଼ିଶା ପରି ଏକ ଭାଷାଭିତ୍ତିକ ଜନବାଦୀ ଦରିଦ୍ର ଦେଶ ପାଇଁ ଏହା ଆହୁରି ଭୟଙ୍କର ମନେ ହେଉଛି । ଆମକୁ ଏହାର ପ୍ରତିକାର ଚିନ୍ତା କରିବାକୁ ହେବ । ଏଥିପାଇଁ ପୂର୍ବର ଆଧାତ୍ମ୍ୟବାଦୀ ଦର୍ଶନ ଆମକୁ ବାଟ ଦେଖାଇ ପାରିବ ନାହିଁ । ଆମର ଦରକାର ବାସ୍ତୁବାଦୀ ଦର୍ଶନ ଓ ସମାଜବାଦୀ ଆଦର୍ଶ । ସାହିତ୍ୟରେ ଏହି ଆଦର୍ଶର ନାଁ ହେଉଛି- ସମାଜବାଦୀ ବାସ୍ତବବାଦ । କଥାଟି ନୂଆ ନୁହେଁ । ପୂର୍ବ ସାହିତ୍ୟରେ ଏହା ପ୍ରୟୋଗ ହୋଇଛି । ଅନ୍ୟାୟ, ଅତ୍ୟାଚ଼ର, କୁଶାସନ ବିରୁଦ୍ଧରେ ଠିଆହେବା ପାଇଁ ଆବଶ୍ୟକ ହେଉଥିବା ସାହସ, ଚ଼ରିତ୍ରିକ ଦୃଢ଼ତା ଓ ସାଙ୍ଗଠନିକ ଶକ୍ତି ସମର୍ଥ୍ୟର ଉପଯୋଗିତା ବିଷୟରେ ସାହିତ୍ୟରେ ଚର୍ଚ୍ଚା ହୋଇଛି । ତେବେ ହୋଇଛି ସାମନ୍ତବାଦୀ ସମାଜ ବା ପୁଞ୍ଜିବାଦୀ ସମାଜର ପୁଷ୍ଟି ଓ ବ୍ୟାପ୍ତି ପାଇଁ । ଏହା ଯାହା ହେବ ତାହା ହେବ ସମାଜବାଦୀ ସମାଜ ପାଇଁ । ଏଥି ପାଇଁ ଆମକୁ ସମାନ୍ତବାଦୀ ସମାଜ, ପୁଞ୍ଜିବାଦୀ ବା ଧନବାଦୀ ସମାଜ ଓ ସମାଜବାଦୀ ସମାଜ ଭିତରେ ଥିବା ବିଭେଦ ବା ପାର୍ଥକ୍ୟକୁ ବୁଝିବାକୁ ହେବ । ଗୋଟିଏ ଉଦାହରଣ- ଗୀତାରେ ଶ୍ରୀକୃଷ୍ଣ କହିଛନ୍ତି ଅର୍ଜୁନକୁ- "ହତୋବା ପ୍ରାପ୍ୟସିସ୍ୱର୍ଗଂ ଜିତ୍ୱା ବା ଭୋକ୍ଷସେ ମହୀଂ, ତସ୍ମାତ୍ ଉତ୍ତିଷ୍ଠ କୌନ୍ତେୟ ଯୁଦ୍ଧାୟକୃତ ନିଶ୍ଚୟଃ" (ଶ୍ଳୋକ- ୩୭, ୨ୟ ଅଧ୍ୟାୟ) । ଏହାର ଅର୍ଥ ହେଲା- ତୁମେ ମଲେ ସ୍ୱର୍ଗ ପ୍ରାପ୍ତି ହେବ, ଯୁଦ୍ଧରେ ଜିତିଲେ ରାଜା ହୋଇ ମହୀଭୋଗ କରିବ । ତୁମର ଏ ଦୁଇଟି ଲାଭ । ତେଣୁ ଉଠ ଯୁଦ୍ଧ କର । ଚିନ୍ତା କାହିଁକି ? ଏଣୁ ସାମନ୍ତବାଦୀ ଯୁଗରେ ଯୁଦ୍ଧ କରିବାର ଶ୍ରେୟ ହେଲା-

କ୍ଷମତା ବା ରାଜ୍ୟଭୋଗ, ଆଉ ଯେଉଁ ସୈନ୍ୟସାମନ୍ତ ମରନ୍ତି ସେମାନେ ତ ଭୂମିବାସ, ମଲେ ସ୍ୱର୍ଗକୁ ଯିବେ, ଇହଧାମର ଯନ୍ତ୍ରଣାରୁ ରକ୍ଷା ପାଇବେ ।

ଆଉ ଗୋଟିଏ ଉଦାହରଣ ଦେବା ଧନବାଦୀ ଦର୍ଶନରୁ । ଏଥର ଆମ ଯିବା ସେକ୍ସପିୟରଙ୍କ "ମର୍ଚ୍ଚେଣ୍ଟ ଅଫ୍ ଭେନିସ୍"କୁ । ଅଣ୍ଟୋନିଓ ବାସାନିଓ ଦୁଇ ବନ୍ଧୁ । ଅଣ୍ଟୋନିଓ ଜଣେ ବ୍ୟବସାୟୀ ! ବାସାନିଓ ମଧ ଜଣେ ବ୍ୟବସାୟୀ । ବାସାନିଓର ବ୍ୟବସାୟ ମାଡ଼ ଖାଇଯାଇଛି । କାରଣ, ତା'ର ଜାହାଜ ସାମୁଦ୍ରିକ ବାତ୍ୟାର ସମ୍ମୁଖୀନ ହୋଇ ବୁଡି ଯାଇଥିବାର ଖବର ଆସିଛି । ଏଣୁ ସେ ଟଙ୍କା ଯୋଗାଡ଼ କରି ବ୍ୟବସାୟ ଆରମ୍ଭ କରିବାକୁ ଚାହିଁଛି । ଯାଇଛି ବନ୍ଧୁ ଅଣ୍ଟୋନିଓ ପାଖକୁ । ଅଣ୍ଟୋନିଓ କହିଛି ତା' ପାଖରେ ଏବେ ଟଙ୍କା ନାହିଁ । ତେବେ ଖୁବ୍ ଶୀଘ୍ର ତା ହାତକୁ ଟଙ୍କା ଆସିଯିବ ବ୍ୟବସାୟ ସୂତ୍ରରୁ । ଏଣୁ ଅଳ୍ପକାଳୀନ ଋଣ କରି ବାସାନିଓ ବ୍ୟବସାୟ ଆରମ୍ଭ କରିପାରେ । ସେତେବେଳେ ଜୀଉମାନେ ବ୍ୟାଙ୍କ ବ୍ୟବସାୟ କରୁଥିଲେ । ସେ ଦୁହେଁ ଗଲେ ସାଇଲକ୍ ନାମକ ଜଣେ ଜୀଉ ପାଖକୁ । ସାଇଲକ୍ ଖ୍ରୀଷ୍ଟିୟାନମାନଙ୍କୁ ଟଙ୍କା କରଜ ଦେବାକୁ ଚାହେଁନା । ତେବେ ସେ ଯାହାହେଉ ଅତି କଡ଼ା ସର୍ତ୍ତରେ ସେମାନେ ଟଙ୍କା ଆଣିଲେ । ସେ ଟଙ୍କା ବ୍ୟବସାୟକୁ ଅଣ୍ଟିଲା ନାହିଁ । ଏହି ସମୟରେ ଖବର ମିଳିଲା ଯେ ଜଣେ ଖୁବ୍ ଧନଶାଳୀ ମହିଳା ସର୍ତ୍ତ ରଖିଛନ୍ତି ଯିଏ ତାଙ୍କ ପାଖରେ ଥିବା ତିନିଗୋଟି ଭାଣ୍ଡରୁ କେଉଁଥିରେ ସୁନା ଅଛି କହିଦେବ ସେ ତାକୁ ବାହାହେବ ଓ ତାଙ୍କର ସମସ୍ତ ଅଚଳାଚଳ ସମ୍ପତ୍ତିର ମାଲିକ ହେବେ । ଏହି ଖବର ପାଇଁ ବସାନିଓ ଯାଇଛି ସେ ଭଦ୍ରମହିଳାଙ୍କ ସର୍ତ୍ତପୂରଣ କରିବା ପାଇଁ ଏବଂ ବାଜିଜିତି ପୋର୍ସିଆ ନାମ୍ନି ସେ କନ୍ୟାକୁ ବିବାହ କରି ପ୍ରଚୁର ସମ୍ପତ୍ତିର ମାଲିକ ହୋଇଛନ୍ତି । ପୁଞ୍ଜିବାଦୀ ସାହିତ୍ୟରେ ଏହା ଏକ ଉଦାହରଣ । ଗୋବିନ୍ଦ ଦାସଙ୍କ ଅମାବାସ୍ୟାର ଚନ୍ଦ୍ର ମଧ ଆଉ ଏକ ଉଦାହରଣ ।

ଏଥିରୁ ଲକ୍ଷ୍ୟ କରିବା କଥା, ସମାନ୍ତବାଦୀ ଯୁଗରେ ବିଭାଘର ହେଉଥିଲା ରାଜନୈତିକ ସୁବିଧା ହାସଲ ପାଇଁ । ଭଲପାଇବା ଗୌଣ । ପୁଞ୍ଜିବାଦରେ ସେହିପରି ଟଙ୍କା ପାଇଁ ବିବାହ ହେଉଥିଲା । ଏବେ ଆମ ସମାଜରେ ଯେଉଁ ଯାନିଯୌତୁକ କଥା ଚାଲିଛି, ତାହା ସେହି ପୁଞ୍ଜିବାଦୀ ମନୋଭାବରୁ । ଏଥିରେ ପ୍ରେମ, ଭଲପାଇବା ଆଦି ମାନବିକ ଆବେଗ ମାଡ଼ ଖାଇଛି । ଏଥିରେ "ରିସ୍କ" ନେବାକୁ "ଭେଞ୍ଚର୍" କୁହାଯାଏ । ଏଥିପାଇଁ କୌଣସି ବ୍ୟବସାୟକୁ ଏଣ୍ଟରପ୍ରାଇଜ୍ ବୋଲି କୁହାଯାଏ । ଏଣୁ, ଅନିଶ୍ଚିତତା ଲାଗି ରହେ । ଫଳରେ ମଣିଷ ଭାଗ୍ୟବାଦୀ ହୁଏ । ଏହି ଭାଗ୍ୟବାଦୀ ପୂର୍ବର ସମାନ୍ତବାଦୀ ସମାଜର ଫଳଶ୍ରୁତି । ଏଣୁ, ସମାଜବାଦର ସାହିତ୍ୟ ଆଦର୍ଶ ପୂର୍ବୋକ୍ତ ଦୁଇଟି ବ୍ୟବସ୍ଥାର

ସାହିତ୍ୟିକ ଆଦର୍ଶଠାରୁ ପୃଥକ ହେବ । ଏଥିରେ ଭାଗ୍ୟ ନାହିଁ, ଭଗବାନ ନାହିଁ । ମଣିଷ ଗଢ଼େ ମଣିଷ ସମାଜ । ସୁଖ ଦୁଃଖ ବାଣ୍ଟିନିଏ ନିଜ ଭିତରେ । ବିଜ୍ଞାନ ଏଥିରେ ବାଟ ଦେଖାଏ । ଅନ୍ୟକଥାରେ କହିଲେ ପୂର୍ବରୁ ଆଧ୍ୟାତ୍ମିକବାଦ ବଦଳରେ ବସ୍ତୁବାଦ ସମାଜବାଦୀ ସମାଜର ଆଶ୍ରୟ । ଏଣୁ, ସମାଜବାଦୀ ସମାଜ ପାଇଁ ଯେଉଁ ସାହିତ୍ୟାଦର୍ଶ ଦରକାର ତାହା ହେବ ସମାଜବାଦ ବାସ୍ତବବାଦ ।

ଇତିହାସ ଦୃଷ୍ଟିରୁ ବିଚାର କଲେ ଜଣାଯିବ ଯେ ମଣିଷ ସମଜାର ଗତି ବିବର୍ତ୍ତିତ ହୋଇ ଚାଲିଛି ସାମାଜିକ ଉତ୍ପାଦନ ଓ ଉତ୍ପାଦନ ସମ୍ପର୍କର ପରିବର୍ତ୍ତନ ହେତୁ । ଏହି ପ୍ରାକୃତିକ ନିୟମରେ ପୁଞ୍ଜିବାଦୀ ସମାଜ ପରିବର୍ତ୍ତିତ ହେବି ସମାଜବାଦୀ ସମାଜକୁ । ଏହି ପରିବର୍ତ୍ତନ କୌଣସି ଭଗବାନ ବା ଦୈବ ଶକ୍ତି ବଳରେ ହେବ ନାହିଁ । ହେବ ଶ୍ରେଣୀ ସଂଘାତ ଦ୍ୱାରା । ସେ ଦିନ ଆଉ ବେଶି ଡେରି ନାହିଁ । ଏଣୁ କବି ଶିଳ୍ପୀ, ଭାବୁକମାନେ ଭବିଷ୍ୟତ କଥା ଭାବନ୍ତୁ ।



# ସବୁଠାରୁ ଭୟାନକ

## ମୂଳରଚନା : ବିପ୍ଳବୀ କବି ପାଶ୍

## ଭାଷାନ୍ତର : ବିଜୟ ଉପାଧ୍ୟାୟ

*( ବିପ୍ଳବୀ କବି ପାଶ୍ ଖଲିସ୍ତାନୀ ଆକ୍ରମଣ ବିରୁଦ୍ଧରେ ଲେଖନୀ ଚାଳନା କରି ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ ମଧ୍ୟ ପଞ୍ଜାବୀ ପାରମ୍ପରିକ ସାହିତ୍ୟଧାରାରେ ବିପ୍ଳବୀ ସାହିତ୍ୟର ଅଭିନବ ସ୍ୱର ଓ ଶୈଳୀ ପ୍ରବର୍ତ୍ତନ କରି ସପ୍ତମ ଦଶକରେ ନିଜକୁ ସୁପ୍ରତିଷ୍ଠିତ କରିପାରିଥିଲେ । ତାଙ୍କର କବିତାମାନଙ୍କୁ ନେଇ କେନ୍ଦ୍ରସାହିତ୍ୟ ଅକାଦେମୀ ତରଫରୁ ଏକ ସଂକଳନ ପ୍ରକାଶ ପାଇଛି । ପଞ୍ଜାବୀ ବିପ୍ଳବୀ ସାହିତ୍ୟର ସେ ଏକ ପ୍ରତିନିଧି ସ୍ଥାନୀୟ ସ୍ୱର । ସେହି ଖଲିସ୍ତାନୀମାନଙ୍କ ଗୁଳିରେ ନବମ ଦଶକରେ ସେ ସହିଦ ହୋଇଥିଲେ ।)*

ମେହେନତୀ ମଣିଷର
ଶ୍ରମ ଲୁଟ୍ ସବୁଠାରୁ ଭୟାନକ ନୁହେଁ
ପୁଲିସ୍‌ର ଲାଠି ଗୁଳି
ସବୁଠାରୁ ଭୟାନକ ନୁହେଁ
ବିଶ୍ୱାସଘାତୀ ଲୋଭର ମୁଠା ବି
ସବୁଠାରୁ ଭୟାନକ ନୁହେଁ ।

କିଛି ହିଁ ନକରି
ଘରେ ବସି କିମ୍ବା କେଉଁ ରେସ୍ତୋରାଁରେ ବସି
ତୁଚ୍ଛାଟାରେ ଗିରଫ ହେବା
ହାସ୍ୟାସ୍ପଦ ନିଶ୍ଚୟ
କିଛି ନ ଜାଣି ହଠାତ୍ ସହିଦ ହେବା
ଖରାପ ନିଶ୍ଚୟ
କିନ୍ତୁ ସବୁଠାରୁ ଭୟାନକ ନୁହେଁ !

କପଟ ସିଂହର ନାଦ ଶୁଣି
ଠିକ୍‌ଥିବା ମଣିଷଟି ହଠାତ୍ ସଂକୁଚି ଯିବା
ପରିହାସ ଯୋଗ୍ୟ ତ ନିଶ୍ଚୟ
ବଡ଼ଲୋକ ହେବାର ନିଶାରେ
ଖାଲି ନିଜ କେରିଆର୍ ପାଇଁ
ପୁସ୍ତକକୀଟ ସାଜି ପଢ଼ି ଚାଲିବା

ଖରାପ ନିଶ୍ଚୟ
ଆପଣାର ସ୍ୱାର୍ଥପାଇଁ
ମିଳୁଥିବା ସୁଯୋଗକୁ
ମୁଠାଭରି ଓଟାରି ଆଣିବା
ନିନ୍ଦନୀୟ ନିଶ୍ଚୟ
କିନ୍ତୁ ସବୁଠାରୁ ଭୟାନକ ନୁହେଁ ।

ସବୁଠାରୁ ଭୟାନକ ହେଉଛି
ଶ୍ମଶାନିତ ଶାନ୍ତିକୁ ସ୍ୱାଗତ କରିବା
ବିନା ଆବାଜ୍‌ରେ
ସବୁକିଛି ସହ୍ୟ କରିନେବା
ପ୍ରତିଦିନ ଠିକ୍‌ବେଳେ କାମକୁ ବାହାରିଯିବା
ଏବଂ କାମସାରି ଘରକୁ ଫେରିବା
ସବୁଠାରୁ ଭୟାନକ ହେଉଛି
ସ୍ୱପ୍ନମାନଙ୍କର ଶବ ସଙ୍କୁଳିବା !

ତୁମ ମଣିବନ୍ଧର
ସେଇ ଘଣ୍ଟାଟି ସବୁଠାରୁ ଭୟାନକ,
ଯିଏ ସବୁବେଳେ ଟିକ୍‌ଟିକ୍ କରୁଥିଲେ ସୁଦ୍ଧା
ତୁମ ଆଖିପାଇଁ ଗୋଟିଏ ଜାଗାରେ
ଅଟକି ହୋଇ ରହିଯାଇଥାଏ !
ସବୁଠାରୁ ଭୟାନକ ହେଉଛି
ସେଇ ଆଖି
ଯିଏ ସବୁକିଛି ଦେଖୁଥିଲେ ସୁଦ୍ଧା
କଠିନ ବରଫ ଭଳି
ନ ତରଳି ରହିଯାଇଥାଏ !

ଦୁନିଆର ସବୁକିଛି ଭଲପାଇବାକୁ
ଆଶ୍ଳେଷ ଓ ବୋକଦେବା ଯିଏ ଭୁଲିଯାଏ,
ଟି.ଭି., ଫ୍ରିଜ୍, ମଟରଗାଡ଼ିର
ଅନ୍ଧପଣ ମୋଦକ ବାଷ୍ପରେ
ଯିଏ ଢୁଳେଇ ଯାଏ;

ନିତିଦିନ ଘୋଡ଼ା ଦଉଡ଼ର
ଲକ୍ଷ୍ୟହୀନ ପାଗଳକ୍ରମକୁ
ଦୋହରାଉ ଦୋହରାଉ ଯିଏ ନିଖୋଜି ହୋଇଯାଏ -
ସବୁଠାରୁ ଭୟାନକ ହେଉଛି ସେଇ ଜହ୍ନ
ଯିଏ ପ୍ରତିଟି ହତ୍ୟାକାଣ୍ଡ ପରେ
ଭଂଗାରୁଜା ପାଚିରି ଚଢ଼ି
ଉଙ୍କିମାରେ ରକ୍ତମୟ ଅଗଣା ମଧ୍ୟକୁଁ
ଅଥଚ ନିଷ୍ପନ୍ଦ ଆଖି
ଥରେ ହେଲେ ଉଠେନି କୁହୁଳି !

ସବୁଠାରୁ ଭୟାନକ ହେଉଛି ସେଇ ଗୀତ
ଯିଏ ତୁମ କାନଯାଏ ପହଞ୍ଚିବା ପାଇଁ
ଦଇନି ବାଢ଼େ,
କିମ୍ବା ଗୁଣ୍ଡାରାଜର ପ୍ରଶସ୍ତି ପଢ଼ି
ଅତର୍କିତ ଲୋକଙ୍କର
ଦରଜାରେ ଢାଇ ଢାଇ କରେ !

ସବୁଠାରୁ ଭୟାନକ ହେଉଛି ସେଇ ଦିଗନ୍ତ
ଯେଉଁଠାରେ ବୁଡ଼ିଯାଏ ଆତ୍ମାର ସୂର୍ଯ୍ୟ
ଆଉ ତା'ର ମୁର୍ଦ୍ଦାର ପାଉଁଶ
ବିଞ୍ଚି ହୋଇ ଚୁମିଯାଏ
ତୁମ ତନୁ ପୂର୍ବାକାଶ ହାୟ !

ମେହେନତୀ ମଣିଷର ଶ୍ରମଲୁଟ୍
ସବୁଠାରୁ ଭୟାନକ ନୁହେଁ;
ପୁଲିସ୍‌ର ଲାଠିଗୁଳି
ସବୁଠାରୁ ଭୟାନକ ନୁହେଁ,
ବିଶ୍ୱାସଘାତୀ ଲୋଭର ମୁଠାବି
ସବୁଠାରୁ ଭୟାନକ ନୁହେଁ !



# ବହି

## ମୂଳରଚନା : ବିଶ୍ୱନାଥ ପ୍ରସାଦ ତିୱାରୀ

## ଭାଷାନ୍ତର : ବିଜୟ କୁମାର ମହାନ୍ତି

*(ଦୀର୍ଘ ଚାରିଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଲେଖନୀ ଚାଳନା କରିଆସୁଥିବା ଡ. ବିଶ୍ୱନାଥ ପ୍ରସାଦ ତିୱାରୀ ହିନ୍ଦୀ ଜଗତରେ ଜଣେ ଲବ୍ଧପ୍ରତିଷ୍ଠ କବି, ଆଲୋଚକ ଓ ସଂପାଦକ ରୂପେ ସୁପରିଚିତ । 'ଚୀଜୋଁ କୋ ଦେଖକର', 'ସାଥ ଚଲତେ ହୁଏ', 'ବେହତର ଦୁନିଆ କେ ଲିଏ', 'ଆଖର ଅନନ୍ତ', 'ଶବ୍ଦ ଔର ଶତାବ୍ଦୀ', 'ଫିର୍ ଭୀ କୁଛ୍ ରହ ଯାଏଗା' ଆଦି ତାଙ୍କର ଉଲ୍ଲେଖଯୋଗ୍ୟ କବିତା ସଂକଳନ । ଦୀର୍ଘ ୩୪ବର୍ଷ ଧରି 'ଦସ୍ତାୱେଜ' ପତ୍ରିକାର ସଂପାଦନା କରି ଆସୁଥିବା ବିଶ୍ୱନାଥ ପ୍ରସାଦଙ୍କୁ ଇତି ମଧ୍ୟରେ ବିଶିଷ୍ଟ ସାହିତ୍ୟ ସମ୍ମାନଠାରୁ ଆରମ୍ଭ କରି 'ବ୍ୟାସ ସମ୍ମାନ' ପର୍ଯ୍ୟନ୍ତ ବହୁ ସମ୍ମାନ ମିଳିଛି । ସଂପ୍ରତି ସେ କେନ୍ଦ୍ରସାହିତ୍ୟ ଅକାଦେମୀ, ଦିଲ୍ଲୀର ଉପସଭାପତି ରୂପେ କାର୍ଯ୍ୟରତ । 'ବହି' କବିତାଟି ତାଙ୍କର 'ପୁସ୍ତକେଁ' କବିତାର ଓଡ଼ିଆ ରୂପାନ୍ତର ।)*

ନା, ଏ କୋଠରିରେ ନୁହେଁ
ସେ ଆଡ଼େ
ସେଇ ସିଡ଼ି ତଳକୁ
ନେଇଯାଅ ବହିସବୁ;
ସେଇ ଗ୍ୟାରେଜ୍ କୋଣରେ
ରଖିଦିଅ ସେଗୁଡ଼ିକୁ ।
ସେଇଠି, ଯେଉଁଠି ଫ୍ରିଜ୍ ପାଇଁ ଜାଗା ଅଣ୍ଟୁନି
ଯେଉଁଠି ରଖିହେଉନି ମଣିଷେ ଦର୍ପଣ,
ସେଠି ରଖିଦିଅ ।

ବସ୍ତାରେ ବାନ୍ଧି
ଚଟରେ ଢାଙ୍କି
ଖଟତଳେ ରଖିଦିଅ ସେଗୁଡ଼ିକୁ,
କିମ୍ବା ଥୋଇଦିଅ
ଭଂଗା ଫୁଲକୁଣ୍ଡ ଉପରେ ।

ନେଇଯାଅ ଏଗୁଡ଼ିକୁ ତକ୍ଷଶିଳା-ବିକ୍ରମଶିଳାକୁ
ଅବା ତୁମର ଇଚ୍ଛା ଯେଉଁଠି,
ଲୋଡ଼ାନାହିଁ ଏସବୁ ଆମକୁ ଉତ୍ତରାଧିକାର ସୂତ୍ରେ ।

କାହାର ପାସବୁକ୍ ଉପରେ ନଜରଥିବ ତ
କିଏ ଅଣ୍ଡାଳିବ ଲକରର ଚାବି,
କାହାର ଆଖି ଆଗରେ ଝଲସିବ ବିଲ-ବାଡ଼ି
କାହାର ଦୃଷ୍ଟି ରହିବ ଟଙ୍କାପଇସା ଉପରେ,
ହାୟରେ, ଏ କି ସମୟ !
ଜେଜେମା' ଭଳି ଉଦାସ ହୋଇଯିବେ ବହିସବୁ ।

ଆରେ ବହି !
ଯେଉଁଠି ବି ଥୋଇଦିଅନ୍ତୁ ସେମାନେ
ଅପେକ୍ଷାରେ ପଡ଼ିଥାଅ ତୁମେ;
ନିଶ୍ଚୟ ଆସିବ କେହି ନା କେହି
ଦିଗ୍‌ଭ୍ରାନ୍ତ ବାଳକଟିଏ
କୌଣସି ଏକ ଶତାବ୍ଦୀରେ
ଅନ୍ଧାରରେ ଖୋଜିଖୋଜି ପଥ ।

ସ୍ପର୍ଶ ଦ୍ୱାରା ଚିହ୍ନିନେବ
ଧୀରେଧୀରେ ଖୋଲିବ ଆପଣା ହୃଦୟ
ଯେଉଁଥିରେ ଶୋଇଛି ଅନନ୍ତ ସମୟ
ଆଉ ଥକି ଯାଇଥିବା ସତ୍ୟ
ଦବି ରହିଥିବା କ୍ରୋଧ
ଏବଂ ମୂକ ସ୍ନେହ
ଯାହାକୁ ଧରିପାରି ନାହିଁ
ଶତ୍ରୁ ମାନଙ୍କର ଷଡ଼ଯନ୍ତ୍ର ।



# ଦୋହଲୁଥିବା ସିଂହାସନ

## ମୂଳରଚନା : ଭଗବତୀ ପ୍ରସାଦ ନିଦାରିୟା

## ଭାଷାନ୍ତର : ବିଜୟ କୁମାର ମହାନ୍ତି

*(ବୃତ୍ତିରେ ପ୍ରାଶାସନିକ ଅଧିକାରୀ, ପ୍ରବୃତ୍ତିରେ ସାହିତ୍ୟସାଧକ ଡ. ଭଗବତୀ ପ୍ରସାଦ ନିଦାରିୟା ସଂପ୍ରତି କେନ୍ଦ୍ରୀୟ ହିନ୍ଦୀ ନିର୍ଦ୍ଦେଶାଳୟ, ନୂଆ ଦିଲ୍ଲୀର ଉପନିର୍ଦ୍ଦେଶକ ରୂପେ କାର୍ଯ୍ୟରତ । ଦୀର୍ଘ ତିନିଦଶନ୍ଧିରୁ ଉର୍ଦ୍ଧ୍ୱକାଳ ଧରି ନିରଳସ ସାହିତ୍ୟ ସାଧନା କରି ଆସୁଥିବା ନିଦାରିୟା ବାବୁଙ୍କ ଲେଖନୀରୁ ବହୁ କାବ୍ୟ-କବିତା, ଗଳ୍ପ ସଂକଳନ, ପ୍ରବନ୍ଧ ଓ ଅନୁବାଦ ପ୍ରକାଶ ପାଇଛି । 'ଚୌଥେ ପହର କା ସପନା', 'ଡରେ ହୁଏ ବହଲିୟେ', 'ସୁବଲ କା ଇନ୍ତଜାର' ପ୍ରଭୃତି ତାଙ୍କର ବିଶିଷ୍ଟ କାବ୍ୟକୃତି ।*

*ସେ ବିଶିଷ୍ଟ ହିନ୍ଦୀପତ୍ରିକା 'ଯୁଗସ୍ପନ୍ଦନ'ର ସଂପାଦକ ରୂପେ ଅଶେଷ ଖ୍ୟାତି ଅର୍ଜନ କରିଛନ୍ତି । ଡ. ନିଦାରିୟା ରାଷ୍ଟ୍ରୀୟ ସ୍ତରରେ ବହୁ ପୁରସ୍କାର ଓ ସମ୍ମାନରେ ସମ୍ମାନିତ ।)*

ଯେବେ ଉପରେ ଦୋହଲି ଉଠେ
କୌଣସି ଏକ ସିଂହାସନ
ସେବେ ଆରମ୍ଭ ହୋଇଯାଏ କୌଶଳ
ତଳ ଲୋକର ତପସ୍ୟା ଭାଂଗିବାକୁ ।

ଯେବେ
ନିଷ୍ଫଳ କୌଶଳ ସବୁ ନଜରକୁ ଆସନ୍ତି
ସେବେ ସିଂହାସନରେ ବିରାଜମାନ ଦେବଗଣ
ତଳକୁ ପଠାଇ ଦିଅନ୍ତି
ନିଜର ଅପ୍ସରୀମାନଙ୍କୁ ।

ସତରେ ସେମାନେ ସବୁବେଳେ
କାହିଁକି ଉପରେ ରହିବାକୁ ଚାହାଁନ୍ତି ?

ସେମାନଙ୍କୁ କାହିଁକି ଖରାପ ଲାଗେ
ତଳ ଲୋକଙ୍କର ଉପରସ୍ତରକୁ ଆଗମନ ?

ଯେବେ ଦେବଲୋକରେ ସକଳ ଇନ୍ଦ୍ରିୟ
ଏଭଳି ତୃପ୍ତ ରହନ୍ତି
ତେବେ କାହିଁକି ବିକାର ହୁଏ
ସିଂହାସନ ଦୋହଲିବାରେ ?

ଆଉ ବିଳାସୀ ଦେବଗଣଙ୍କ
ଇସାରାରେ ନାଚୁଥିବା
ତପସ୍ୱୀମାନଙ୍କୁ ନିଜ ଇସାରାରେ
କାହିଁକି ନଚାଇବାକୁ ଚାହାଁନ୍ତି ଅପ୍ସରୀଗଣ ?
ମୋକ୍ଷ ଅଭିଳାଷୀ ତପସ୍ୱୀଙ୍କ ତପସ୍ୟାରେ ସୃଷ୍ଟି ହୁଏ ବାଧା,
ଅପ୍ସରୀମାନେ ବିଚାରୀ ବ୍ୟବହୃତା ହୁଅନ୍ତି
ଏହି ଅନ୍ୟାୟ ଅନୀତିପୂର୍ଣ୍ଣ ଆଚରଣରେ,
ପୂଜନୀୟା ଦେବୀଗଣ କାହିଁକି ମୌନ ରହନ୍ତି ?



# କହ କେଉଁ ଜାତି ପାଇଛି ମୁକତି ?

## ବାଞ୍ଛାନିଧି ମହାନ୍ତି

କହ କହ କେଉଁ ଜାତି ପାଇଛି ମୁକତି
କରି ହୁରି ହାରି ଗୁହାରି;
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ
ମାଗି ମାଗି ପଥ ଭିକାରୀ (ଧ୍ରୁବ) ।୦।

ଯେବେ ବାଘ ମୁହେଁ ପଡ଼େ ଶିକାର
ମିନତିରେ ପାଏ କି ସେ ଉଦ୍ଧାର
ଛାଡ଼ିକି ଦିଏ କେବେ ଧୀବର ଜାଲରୁ
ନ ଗଲେ ମୀନ ଆପେ ବାହାରି ।୧।

ଦେଖ ଆଇରିସ୍, ଋଇନା, ଜାପାନ
ଆମେରିକା, ଆଫ୍‌ଗାନ ପଠାନ
ପରାଣ ପାତି ହେଲେ ମୁକତି
ଜୀବନ-ମରଣ ନ ବିଋରି ।୨।

(ଆଜି) ଅଭିମନ୍ୟୁ ପରି ଘେରି ଚଉଦିଗୁଁ ଜନନୀ କୁମାରୀ
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ ଚକ୍ରଟି କରିଦେବ ପାରି ।୩।



# କମାଣ ପରାଏ କଲମ ଧର

## ବୀରକିଶୋର ଦାସ

କବି, ବାଜେ କବିତା ବନ୍ଦ କର, କମାଣ ପରାଏ କଲମ ଧର,

ଥରେ ବଜାରେ ସମର-ଭେରୀ,

ତରୁଣ ଯେତେ ସେଇ ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।

ଗୋଲାପୀ ଅଧର ଯାଉଛି ଶୁଖି, କବିତା ଲେଖିବୁ କାହାକୁ ଦେଖି

ଚାନ୍ଦ ବଦନେ ନାହିଁରେ ହସ,

ଶରଦ ରାସ ଦେଖିବ କିଏ ଚାଖିବ କିଏ ବସନ୍ତ ରସ ।

କଣ୍ୱ ମୁନିର ନାହିଁ ତପୋବନ, ମୁଗ୍ଧ କଲା ଯେ ନରପତି ମନ,

ବନ ଛବି ତୋର ଜୀର୍ଣ୍ଣ ବେଶ,

ଯଜ୍ଞ ଧୂମ ସପନ ସମ ବିଷ ବାଷ୍ପରେ ଥରଇ ଦେଶ ।

ଦମୟନ୍ତୀ ପ୍ରେମ ଆସିବ କାହୁଁ, ବିଳାସ-ଦାନବ ଶୋଷଇ ଲୁହ,

ସଂଯମ ଚିନ୍ତା ଗଲାଣି ଚାଲି,

ଶିକ୍ଷା ଏଥି ଭିକ୍ଷା ପାଇଁ କି, ବିବେକ ପଙ୍ଗୁ ବଢ଼ନ୍ତି ଖାଲି ।

ଗୀତା ଗୀତାଞ୍ଜଳି ପଢୁଛି କିଏ, କୁଟୁମ୍ବ ଜଞ୍ଜାଳ କମ୍ପାଇ ଦିଏ,

ପଲ୍ଲୀ ହୃଦୟ ଜଳଇ ନିତି,

କଙ୍କାଳ ବୁକେ ଲୋଡ଼ିବ କିଏ ଅଭିସାରିକାର ଗୁପ୍ତ ପ୍ରୀତି ।

ସାବିତ୍ରୀ ଜଠର ଉଠଇ ଯମ ସଙ୍ଗେ କିଏ କରିବ କଳି,

ଅର୍ଣ୍ଣବ ପୋତେ ଯାଉଛି ଅନ୍ନ,

ତ୍ରିଶ କୋଟି ଦ୍ୱିପଦ ସାଥି ଥାଆନ୍ତି ଏଠି ବସ୍ତ୍ରହୀନ ।

ମସୀଧାର ଆୟୁ ନେଉଛି ହରି, ଅସିଧାର ଦେଖି ଉଠନ୍ତି ଥରି,

ଆତ୍ମ ସମ୍ମାନ ପାଇଛି ବଳି,

ରସିଧାର-ବନ୍ଧା, ପଶୁଦଳ ପରି ଆପଣା ଭିତରେ ଲଗାନ୍ତି କଳି ।

ନାଦୀର ଶାହାର ଲୁଣ୍ଠନ ଭଲ, ମରହଟ୍ଟା ପଛେ କରୁ କଲବଲ,

xxx

ଏ ରକ୍ତଶୋଷୀ ଶାସନ ନୀତି

ହୀରା ଠାରୁ ଜିରା ସବୁ ଶୋଷି ନିଏ ପୁତନା ପରାଏ ଦେଖାଇ ପ୍ରୀତି ।

କବି ବାଜେ କବିତା ବନ୍ଦକର, କମାଣ ପରାଏ କଲମ ଧର

ଥରେ ବଜାରେ ସମର-ଭେରୀ,

ତରୁଣ ଯେତେ ସେହି ସଙ୍କେତେ ଆସନ୍ତୁ ତୋତେ ହର୍ଷେ ଘେରି ।

*(ବିଦ୍ରୋହୀ ବୀଣା)*

❒❒❒

# ଦୁଇଟି କବିତା

## ଅନନ୍ତ ପଟ୍ଟନାୟକ

### ୧. ସର୍ବହରା

ଜୀବନ ଧରି ହେ ଢାଳିଲୁ ରକ୍ତ ତୋଳିଲୁ ସଉଧମାଳା
ଆମରି ଲାଗିରେ ଶାସନ ଶକ୍ତ ଆମେଇ ସର୍ବହରା ।
ଝାଞ୍ଜି ପବନ ସହିରେ ସଘନ ଗହୀରେ ରୋଇଲୁ ଧାନ
ବରଷା କାଦୁଅ ଚକଟି କେତେରେ ଖିନ୍ନ କରିଲୁ ପ୍ରାଣ ।

ପଉଷ ପ୍ରଭାତେ କାଟିଲୁ ଶସ୍ୟ ହସିଲେ ନିଖିଳ ବାସୀ
ଶକ୍ତିଶାଳୀର କରାଳ କବଳ ନେଲାରେ ସକଳ ଗ୍ରାସୀ ।
କେତେ ଯେ ଦେଏଣା କେତେ ଯେ ପାଉଣା ମହାଜନ ଜମିଦାର
ନେଲେଟି ଶୋଷିରେ ଚାହିଁଲୁ ନିରବେ ଘେନି କଙ୍କାଳମାଳ;
ସନ୍ତାନ ଆମ ଆମରି ଆଗରେ ଶମଶାନେ ପଡ଼େ ଟଳି
ମୂକ ପାଷାଣର ପରାଣ ବହିରେ ରହିଛୁ ସଭୟେ ଥରି ।

ଯେ ଯୁଗେ ମାନବ ଉଡ଼ଇ ଆକାଶେ ବୁଡ଼ଇ ସାଗର ଜଳେ
ସେ ଯୁଗେ ଆମେରେ 'ହା ଅନ୍ନ ହା ଅନ୍ନ' ଡାକି ବୁଲୁ ନତଶିରେ ।
ଭାଗ୍ୟ ଆଦରି ଦେଉଳ ଦୁଆରେ ମୁଣ୍ଡ ପିଟୁରେ ବସି
କରଭାର ସହି ଦୀନ ଦୁର୍ବଳ ନ ପାରୁ ଜୀବନେ ହସି ।

ଆମେଇ ଗଢ଼ିଲୁ ବନ୍ଧୁକ, ତୋପ ତରବାରୀ ଆମ ପାଇଁ
ଆମେଇ ତୋଳୁରେ କାରାର ପ୍ରାଚୀର ବନ୍ଧନ ଗୀତ ଗାଇ ।
ସମାଜର ଶତ ଶୃଙ୍ଖଳ ଜାଲେ ଛନ୍ଦି ଆପଣା ଛାଏଁ
ଆଲୋକର ପଥ ରୁଦ୍ଧ କରୁରେ ଯୁଗ ଯୁଗାନ୍ତ ଯାଏ ।

ପୁଞ୍ଜିତ ରୋଷେ ବଞ୍ଚିତ ଆମେ ଦୀପ୍ତ ଚେତନା ବହି
ନ ବୁଲିବୁ ଆଉ ଭିକ୍ଷୁକ ବେଶେ ଦୁଃଖ ବେଦନା ସହି ।
ପ୍ରାପ୍ୟ ଆମର ନେବୁରେ ମୁକର ଆମେ ଶ୍ରମିକର ଜାତି
ଫୁଟାଇବୁ ଆଜି ରକ୍ତପ୍ରଭାତ ଚିରି ଅନ୍ଧାର ରାତି ।

ନିଃସ୍ୱ ଯେତେକ ବିଶ୍ୱର କୋଳେ ସକଳ ଶ୍ରମିକ ଚାଷୀ
ମିଳିତ ହୁଅରେ ଆମରି ସଂଗେ ଶଙ୍କା ଜଡ଼ତା ନାଶି ।
ଥରୁରେ ଧରଣୀ ଆକାଶ ପବନ ଥରୁରେ ଶୋଷକ କୂଳ ।
ହସିଉଠୁ ଆଜି ସମତା ଜଗତେ ଭାଙ୍ଗୁରେ ପାହାଡ଼ ଚୂଳ ।

## ୨. ଆମେ ମୂଲିଆର ଜାତି ଜାଗିବୁ

ଆମେ ମୂଲିଆର ଜାତି ଜାଗିବୁ
ମରୁଛୁ ତ ନିତି ଭୋକେ ଉପାସରେ
ଥରେ ହେଲେ ଶିର ଟେକିବୁ ।
ଆମ ହାଡ଼-ମାଂସେ ଯେ ଗଢ଼ିଲେ କୋଠା
ଆମ ଲହୁ ଶୋଷି ଯେ ବା ହେଲେ ମୋଟା
ସେଇ ଜମିଦାର, ସାହୁକାରକୁଳ
ଆସ୍ଫାଳଣ ସବୁ ସାରିବୁ ।
ବାସ ଓଳିତଳ, ଘରେ ନାହିଁ ଦାନା
ହଂସା ଉଡ଼ିଯାଏ, ହାଡ଼ ହୁଏ ଗଣା
କଂସା, ଥାଳି ବିକି ଦେଲୁଣି ଖଜଣା
ଆଉ କାହିଁ ପାଇଁ ଡରିବୁ ?
ଘରଡିହ ଖଣ୍ଡି ନୋହେଁ ତ ଆମର
ନିଜ ଘରେ ଆମେ ଗୋଲାମ ପରର,
ଗୋଇଠା ଖାଇରେ ଅଇଁଠା ଚାଟୁଛୁ
କେତେଦିନ ଆଖି ବୁଜିବୁ ?
ଆମ ଆଗେ ଲୋକେ ଉଡ଼ନ୍ତି ଆକାଶେ
ଚଢ଼ନ୍ତି ମଟର ଖେଳନ୍ତି ବତାସେ
କେଉଁ ଦୋଷୁ ଆମେ ମରିବୁ ଉପାସେ
ପୋକମାଛି ପରି ସଢ଼ିବୁ ?
ସଂଗୀନ୍ ମୁନରେ ଏଇ ସରକାର
ଶୋଷେ ଆମ ରକ୍ତ, ପୋଷେ ଜମିଦାର,
ଆମରି ଗୁହାରି, ଆମ ହାହାକାର
ନ ଶୁଣାଇ ତାକୁ ନାଶିବୁ ।



## ଆମେ ମଣିଷର ଯୁଗ ଆଣିବୁ

### ସଚ୍ଚି ରାଉତରାୟ

ତମେ ମାର ଯେତେ ଆଜି ମାରିବ
ନିତି ଯେ ମରଇ ବେଠି ବେଗାରିରେ
(ଦିନେ) ମରିବାକୁ ସେ କି ଡରିବ ?

ଶୋଷିତ ଜୀବନେ କିବା ଅଛି ଆଉ
ମାଟିର ଦିହଟା ଯିବ ଯେବେ ଯାଉ;
ନଳୀ ଆଗେ ତାହା ଫିଙ୍ଗି ଦେବା ପାଇଁ
କି ମାୟା ଆଜି ହେ ଘାରିବ ?

ଆମ ଧନେ ଯେହୁ ବଢ଼ଇ ଅୟସେ
ମରଣକୁ ସିନା କରିବ ଭୟ ସେ;
ଭୋକ ଉପାସର ଜୀବନକୁ କହ
କାହିଁ ପାଇଁ କିଏ ବରିବ ?

ମଡ଼ା ତ କରିଚ ମଢ଼ କର ଏବେ
ଲୁହ ଦେଇଅଛୁ, ଲହୁ ଦେବୁ ଏବେ;
ମରିଥାନ୍ତା ଭୋକେ ଯିଏ ପୋକ ପରି,
(ଆଜି) ବୀର ପରି ସେ ତ ମରିବ ।

ରଖିଚ ଫଉଜ ଆମ ଧନ ଶୋଷି
ହାତୀ ଘୋଡ଼ା ବହୁ ରଖିଚ ତ ପୋଷି
ଆମ ଡର ତମ ବଡ଼ ହତିଆର,
ନ ହେଲେ ତାହା କି ଚଳିବ ?

ଶୁଖିଲା ଚମକୁ ମଣ ନାହିଁ ସାନ
(ତମ) ଜୀବନ-ନାଟିକା ଧରିଚି ସେ ଜାଣ,
କମାରର ଭାତି ତରଳାଏ ଲୁହା
(ତାର) ହିମତ କି କଳି ପାରିବ ?

ଆସିଅଛୁ ଆଜି ମୁଠା କରି ଟାଣ
ପଳାଅନା ଲୁଚି, ନେବୁ ନାହିଁ ପ୍ରାଣ,
ମାଛି ପରି ଯାକୁ ଘୃଣା କରୁ ଆମେ
ଛୁଇଁବୁନି ତାକୁ ଜାଣିବ ।

ଗୁଳି ଗୁଳା ଆଉ ବାରୁଦର ଘରେ
କେତେ ଦିନ ଆଉ ଲୁଚିବ ହେ ଡରେ ?
ଜଣା ପଡ଼ିଲାଣି ଅଲଣା ଚାତର
ମୁହଁ ଟାଣ ଆଜି ସରିବ ।

ଧୂଳିଖେଳ ଛାଡ଼ି ଗୁଳି ଚୋଟେ ଆଜି
ମରେ ଯେ ଦେଶର ବାଳପୁଅ 'ବାଜି'
ସେ ଜାତିକୁ ତମେ ବନ୍ଧୁକ ଦେଖାଇ
ଭାବିଚ କି ପଦେ ଦଳିବ ?
ଭୟ ତେଜି ଆଜି ଜାଗ ନିର୍ଜୀବ
ଯିବ ଯଦି ପାଦୁ ଶାଂକୋଳି ଯିବ,
ସବୁ ତ ଯାଇଚି, ତାହା ଅଛି ବାକି,
ତୁମ ସାଥେ ଖସି ପଡ଼ିବ ।

କୋଟି ମନ ଆଜି ଝଡ଼ ପରି ଛୁଟେ
କୋଟି ହାତମୁଠା ଉପରକୁ ଉଠେ,
ଜାଗିଲାଣି ଚାଷୀ ଜାଗିଛି ମୂଲିଆ
(ସେ ତ) ମଣିଷର ଯୁଗ ଆଣିବ ।



# ମନେପଡ଼େ

## ମନମୋହନ ମିଶ୍ର

ଅଚାନକ ମନେପଡ଼ ଆଜି
ହେ ଶୁକୁର ମାଝି,
ପହିଲେ ଯେ ଦିନ ଦେଖା
ଏ ବୁକୁରେ ଲେଖା ।

ଚାରିପଟେ ନାଲିମିଶା କଳାକଳା ଝାଡ଼
ନାଲିମିଶା କଳାକଳା ଧୂସର ପାହାଡ଼
ପାହାଡ଼ ତ ନୁହେଁ ତାହା ସୁଧୁ ଖାଲି ଲୁହା,
ଲୁହାରେ ଛାଏଣୀ ମାଟି ଗଛପତ୍ର
ସବୁ ଦିଶେ ନୂଆ ।
ଠାକୁରାଣୀ ପରବତେ ଉଠୁଥିଲା ଧଳାଧଳା ଧୂଆଁ,
ଝାଉଁଳିଲା ଗଛତଳେ ଶୋଇଥିଲା
ଚେକିଚେକି ଖରା
ହଠାତ୍, ସେଇଠି ଆମ ଯାନ ଥମିଗଲା
ଦୁର୍ଭାଗ୍ୟ କି ଭାଗ୍ୟ ତାହା ନଥିଲି ତ ହେଜି
ହେ ଶୁକୁର ମାଝି
ଅଚାନକ ମନେପଡ଼ ଆଜି ।
ନାଗରା ବାଜିଲା ଡାକି
ଭୂମିରେ ତୋ' ହେବ କାରଖାନା
ଆକାଶର ସୀମା ଖୋଜି
ଲମ୍ବିଯିବ ଚିମ୍‌ନୀ ନିଶାଣ ।

ଲାଗିଲା ପିମ୍ପୁଡ଼ି ଧାର ମଣିଷ କାତର
କାଜୁଏଲ୍ କୁଲି କାମ ସରଗୁଁ ହିଁ ବଡ଼,
ଏବେ ସେ ଲାଇନ୍ ଲାଗେ ଭାରତର ଗ୍ରାମୁ ଗ୍ରାମାନ୍ତର ।
ସହସା ଜୀବନ ହେଲା ମଲା ଚିଠି
ହଜିଲା ଠିକଣା.... ।
ହଟୋ ହଟୋ କାମ ନାହିଁ
ବାଜିଲା ଘୋଷଣା ।
ଗୋଟିଏ ଶିସାରେ ତୁମ ବୁକୁ ହେଲା କଣା
ଗରାଏ ଗରାଏ ରକ୍ତ ଝରିଲା ଝରଣା
ଆପଣା ଦେଶ ମାଟିରେ ଆଖିବୁଜା
ଦେଶୀ ଗୁଳି ଖାଇ
ଶୁକୁର ହେ ତୁମେ ଗଲ ଶୋଇ ।
ଅଚାନକ ଆଜି ମନେପଡ଼େ
ଅସ୍ତରଂଗ ଚଲାବାଟ କଡ଼େ.
ଦୁଇପାଖେ ଧାନକ୍ଷେତ
ସୁରଭିରେ ପେଟ ଯାଏ ପୂରି
ଧରାର ଶ୍ୟାମ ପଣତ
ଫୁଲିଫୁଲି ଉଠଇ ଉତୁରି;
ଶରତର ହିଲ୍ଲୋଳରେ
ମର୍ମରିତ ଦେବୀ ନଦୀ ବାଲି
ମନେହୁଏ, ଦେଖିଛି ବା କାଲି ।
ବାଲୁତ କ୍ରନ୍ଦନ ଧ୍ୱନି ଚକିତେ ଶୁଣିଲି,
ଭରା ଯଉବନୀ କ୍ଷୀଣା ସୁଶୋଭିନୀ ବାଳା
କାଖରେ ଜାକିଛି ତାର ଏକୋଇର ବଳା;
କ୍ଷୁଧାର ବିକଳେ ପାଦ ହୁଏ ଟଳମଳ
ରସହୀନ ବୁକୁତଳେ ଚକାଚକା ଫଳ;
ଦରୋଟି କାନ୍ଦଣା ଡାକେ
ଭାତ ଦେଏ ଭାତ ।

ବ୍ୟଥିତା ଜନନୀ କୁନି ମୁଖେ ହାତ ଦେଇ,
କହେ ବାପା ତୁନିହୁଅ, ପାଚିବ ଫସଲ
ଏ ଧାନକଟାରେ ମୁହିଁ ଲାଗିବଇଁ ମୂଲ,
କେଡ଼େ ସରୁଧାନ ଦେଖ ସରୁ ଭାତ ହେବ
ତାହା ମୋର ଧନ ପେଟ ପୂରାଇ ଖାଇବ ।
ଏ ନିର୍ବୋଧ ଆଶା ମିଶା ବୋଧଭାଷା ଶୁଣି
ନାଆଁ କ'ଣ ପଚାରିଲି- 'ଡମି ବାଉରୁଣି'
ଡମି କି ଲାଗିଲା ମୂଲ
　　　　ସରୁ ଭାତ ତା ଶିଶୁ ଖାଇଲା ?
ଏ ଖବର କିଏ ଶୁଣାଇବ
　　　　କିଏ ଅଛି ଏ ଜାତିର ପିଲା ?
ଦଶବର୍ଷ ବହିଗଲା ଲାଗେ କାଲିପରି
ଜୀବନେ ଅଛି କି ନାହିଁ ରାମଦାସ ତୁରୀ
　　　　ହିମାଳୟ ଚା'ବଗିଚା କୁଲି
ଛଟେଇ ଚାକିରି ନେଲା
　　　　ଛାଡ଼ିଥିଲ ଜଳପାଇଗୁଡ଼ି ।
ସଂଗେ ଥିଲା ଏକମାତ୍ର ମାଆ ମଲା
　　　　　　　　ଆଠବର୍ଷ ପୁଅ
କଲିକତା, ରାଜପଥେ
　　　　　　　　ଗାଡ଼ି ବସ୍ ସୁଅ
ବାଳକ କାନ୍ଦଇ ଭୋକେ
　　　　　　　　ମୁଢ଼ି ମୁଠେ ଦିଅ
ତାର ମଥା ଛେଚିଛେଚି
　　　　　　　　କରିଥିଲ ମୁଢ଼ି
ଖୋଜିଲ ପୁଅକୁ ତହିଁ
　　　　　　　　ରାମଦାସ ତୁରୀ
ମନେନାହିଁ ମୁଢ଼ି ହେଲା
　　　　　　　　ବାଳୁତର ମଥା
　　　　　　　　ଆହେ ଜନ୍ମଦାତା !

ତୁମରି ସେ ଅଭିଶାପ ଚିତା
ଜାଳିଥିଲା ମୋହରି ସେ ଅଶ୍ଳୀଳ କବିତା
ମନେପଡୁଛି ତା' ।
କଲିକତା ହାଇକୋର୍ଟ
ଲୋକାରଣ୍ୟ
ସଂଗୀନ୍ ମର୍ଡ଼ର କେଶ୍
ବସିଛି ସେସନ
ଅସହ୍ୟ ସେ ବୟାନ, ସେ କଥା
ଚାହିଁଥିଲା ଲୁହ ଆଖି ନିର୍ବାକ୍ ଜନତା ।
ଡାକିଲା ମିହିର ସେନ୍
ଯୋଗ୍ୟ ବାରିଷ୍ଟର,
ହେ ଧର୍ମାବତାର !
କଟକରେ ଜନ୍ମ ମୋର,
ଦେଖିଛି ଦାରିଦ୍ର୍ୟ ଦୁଃଖ ସନ୍ତାପ ଘୋର
ସନ୍ତରିଛି ସେତୁବନ୍ଧ 'ଇଂଲିଶ୍ ଚାନେଲ'
କିନ୍ତୁ ଅସାଧ ଅରଣ୍ୟ ଏହି ବେଦନା ସାଗର,
ଦୟାକର ବାରେ ଦୟାକର
ବଞ୍ଚାଅ ଏ ହତଭାଗ୍ୟ ପିତା.... ।
ଏହାଥିଲା ସେ ଦିନର ଅଶ୍ଳୀଳ କବିତା
ଭାଗ୍ୟ କି ଅଭାଗ୍ୟ ତାହା ନାହିଁଥିଲି ହେଜି,
ପ୍ରାଣଦଣ୍ଡ ମୁକୁଳିଲା...
ପଶିଥିଲ କାରାର ପାଚେରୀ
ରାମଦାସ ତୂରୀ ।
ଆସିଛ କି ଆସିନାହିଁ ସେଇଠାକୁ ଫେରି ?
ମନେପଡ଼େ
ରକ୍ତାକ୍ତ
ସେହି ଛିଣ୍ଡାହାତ
ଯାର ଦାବିବାର ଥିଲ ଛାତ୍ର ଲୋକନାଥ ।

ହଜାର ଟନ୍ ଓଜନ ଲୁହାର ଧାରଣା
ଯୁବକର ତାଜା ଲହୁଧାରେ ହେଲା ଛଣା
ଏ ଜାତିର ବିବେକରେ କରିଦେଲା କଣା
ଅନ୍ୟାୟର ପ୍ରତିକ୍ରିୟା ଅମୋଘ ଆଘାତ
ଛାତ୍ର ଲୋକନାଥ ।
ଅଶ୍ରୁସମ ମସୀପାତ କରିଥିଲା ଏ ହୀନ ଲେଖନୀ
ଏବେଯାଏ ସେ ସ୍ମୃତି ଲିଭାଇ ପାରିନି !
ଆଉ କି କରିବୁ କହ ?
କରିନୁ କି କୋଳାହଳ ବନ୍ଦ, ସତ୍ୟାଗ୍ରହ
ଦେଇନୁ କି ଅସଂଖ୍ୟ ଭାଷଣ
ପଢ଼ିନୁ କି ବିଜୟ ଘୋଷଣା
ନିତିନିତି ସମ୍ବାଦ ପତରେ
ତଥାପି ତୃପତ ନୁହଁ ? କହୁଛି ସତରେ !
ଏହି ଦେଶ ନୁହେଁ ଆନଭଳି
ଏହି ଦେଶ ଫାଶିକାଠ
ପ୍ରଣୟିନୀ ବାହୁର ବଲ୍ଲରୀ;
ଏହି ଦେଶ ଗୁଳି
ମାତା ସ୍ତନଠାରୁ ସୁମଧୁର
ଏହି ଦେଶ ଲାଠି, ଅଶ୍ରୁଗ୍ୟାସ
ଚନ୍ଦନରୁ ଆହୁରି କୋମଳ...
ଏହି ଦେଶ ସାହୁକାର, ସେ ତ ଅନ୍ନଦାତା !
ଏହି ଦେଶ ଜମିଦାର, ସାକ୍ଷାତ୍ ଦେବତା !
ଏପରିକି
ଏହି ଦେଶ ଭେଜାଲ ବେପାରି,
ଚୋରା କାରବାରୀ
ଲୁଚିଛପି ଗୁଡ଼ ଚାଟେ ପିମ୍ପୁଡ଼ିର ଧାଡ଼ି ।

ଏହି ଦେଶ ନର୍କକୀଟ ଛାଡ଼ିଦିଏ
　　　　　　　　ଅମର୍ତ୍ତ୍ୟ ବିଭୂତି,
　　　　　　　　ଯାର ନାମ ଭାରତ-ସଂସ୍କୃତି ?
ତେଣୁ ଶୁଣ !
ମୋ ଦେଶର ବେକାର ଲାଇନି,
　　　　　　　　ଡମି ବାଉରାଣୀ
ଗୁଳିଖିଆ ପ୍ରେତ ଶୁକ୍ରୁ
　　　　　　　　ପୁତ୍ରହନ୍ତା ତୁରୀ
ଆତ୍ମଘାତୀ ଲୋକନାଥ
　　　　　　　　ଯେତେ ଯୁବା, ମଜଦୁର, କୁଲି;
　　　　　　　　ସଦ୍‌ବୁଦ୍ଧି କର
କାହିଁକି ପିଇଛ ତୁମ ଆଖି ହଳାହଳ ?
ଆଜି ହେଉ କାଲି ହେଉ
　　　　　　　　ମର ଦେହ ମିଶିବ ଭୂତଳ ।
ରାମ ନାମ ସତ୍ୟ ଯେହ୍ନେ
ମୃତ୍ୟୁ ତେହ୍ନେ ସତ୍ୟ
　　　　　　　　ମରଣର ନିଶ୍ଚୟ ମୁକର
ତେବେ ସୁସ୍ଥେ ନିରବରେ ମର
ଗଛମୂଳେ, ରେଳଦାଢ଼େ ଯହିଁ ଖୁସି ମର,
ସାଢ଼େ ତିନିହାତ ମାଟି ଏ ସୁନା ଦେଶର
　　　　　　　　ନିଶ୍ଚୟ ମିଳିବ । ତେଣୁ ସୁନାପରି ମର !
ଅଧିକ ଅମଳକ୍ଷମ ଧାନ ପାଇଁ ଯୋଗାଅ ସମ୍ଭାର....
ତାହାହିଁ ସ୍ୱରଗ
　　　　　　　　ଏ ଦେଶ ଶ୍ମଶାନ ନାମ ତେଣୁ
　　　　　　　　　　　　ସ୍ୱର୍ଗଦ୍ୱାର !



# ଲେନିନ୍

## ରଘୁନାଥ ଦାସ

(୧)

ଏ ଜୀବନ ଗତିଶୀଳ,
ଗତିଶୀଳ ଛନ୍ଦମୟ ସମାଜ-ପ୍ରବାହ ।
ପଚମାନ ପଙ୍କ ଭେଦି ପଦ୍ମଫୁଟେ,
ସୃଷ୍ଟିର ସେ ନୂତନ ଅଧ୍ୟାୟ ।

ସ୍ଥାଣୁ ନୁହେଁ ଇତିହାସ;
ଚିରନ୍ତନ ନୁହେଁ
ପ୍ରଭୁ ଆଉ କ୍ରୀତଦାସ ।

ଲୁଣ୍ଠନର ପିରାମିଡ଼୍
ତଳେ ନାଚେ ପ୍ରେତାୟିତ
କଳା କଳା ଛାଇ,
ଏହା କିନ୍ତୁ ନୁହେଁ ଚିରସ୍ଥାୟୀ ।

ଜନତାର ଖରସ୍ରୋତେ
ଲୁପ୍ତ କେତେ ଅମୀର ରାଜାର
ସ୍ୱର୍ଣ୍ଣ-ପୋତ;
ଧ୍ୱଂସହେବ
ଅଶ୍ରୁସିକ୍ତ ସଞ୍ଚିତ ସମ୍ଭାର
ମୁନାଫାର ।
ବହମାନ ଜୀବନର ଧାରା
ଚିରତରେ ।
ଏହି ରକ୍ତତାରା
ସମାଜର ଗତିପଥେ ଅଭ୍ରାନ୍ତ ଇସାରା ।

(୨)

'ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟବରାନ୍ନିବୋଧତ,
କ୍ଷୁରସ୍ୟ ଧାରା ନିଶିତା ଦୁରତ୍ୟୟା
ଦୁର୍ଗମ ପଥସ୍ତତ୍ କବୟୋ ବଦନ୍ତି ।'
ଏକପକ୍ଷେ ଗର୍ଜିଉଠେ
ତୁଷାରର ଅକରୁଣ ଝଡ଼,
ଅନ୍ୟ ପକ୍ଷେ ମଦ୍ୟପଙ୍କ ଭିଡ଼
ପ୍ରାଚୀନ ସେ ପ୍ରାସାଦରେ
ମଖମଲି ଦରବାରେ ।

ଯାତ୍ରୀ, ହୋସିଆର,
ଦୀର୍ଘବାହୁ ରାତ୍ରି
ବିସ୍ତାରିଛି ଦୀର୍ଘ କେଶ ତାର
ଦିଗେ ଦିଗେ ।
ଯା ନିଶା ସର୍ବଭୂତାନାଂ
ତସ୍ୟାଂ ଜାଗର୍ତ୍ତି ସଂଯମୀ ।

ଆମେ ଅଗ୍ରଗାମୀ,
ଆଗେ ପାଦ ବଢ଼ା
ଗଢ଼ିତୋଳ, ଗଢ଼ିତୋଳ
ବେଆଇନ ଆଡ୍ଡା
ମେହନତୀ ଜନତାର
ଖାଦାନ ଓ ଖେତେ
ଫାକ୍ଟରୀ ଆଉ ପୋର୍ଟେ,
ଶ୍ରମିକ କିଷାନ,
ଛାତ୍ର ଓ ଯୁଆନ,
କର ସଂଗଠିତ,
ନୂତନ ଆଲୋକ ହେଉ ଉଦ୍ଭାସିତ,
ଅନ୍ତରେ ଅନ୍ତରେ,
ଗ୍ରାମେ ଓ ସହରେ
ନୂତନ ଆଲୋକ ।

ଦୁରନ୍ତ ଝଡ଼କୁ କର କେନ୍ଦ୍ରୀଭୂତ,
ଯେତେ କୁନ୍ତୀସୁତ,
ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟବରାନ୍ନିବୋଧତ ।

(୩)

ଏଇଲାଗେ ଶୁଭଲଗ୍ନ
ପ୍ରତୀକ୍ଷିତ ! କଲ୍ୟାଣୀ ଉଷାର,
ଭଗ୍ନଜାନୁ ବିବର୍ଣ୍ଣ ନିଶାର
ଯେତେ ଦୁର୍ଗ ।

କମ୍ରେଡ୍,
ଗଢ଼ିତୋଳ ବାରିକେଡ୍ ।
ପୋଲା ସେ ଗମ୍ବୁଜ ଦେହେ
ଗୋଳା ତୋର ହାଣ;
ଏକଲକ୍ଷ୍ୟେ ଚଲ ଚଲ ଶ୍ରମିକ, କିଷାଣ,
ସେନାବୀର, ଫୁଟା ତୋ କମାଣ,
ଭାଙ୍ଗ ଭାଙ୍ଗ ରୁଦ୍ଧଦ୍ୱାର,
ବନ୍ଦୀ କର, ବନ୍ଧୀ କର ଜାର ।
ଉର୍ଦ୍ଧ୍ୱେ ତୋଳ, ଉର୍ଦ୍ଧ୍ୱେ ତୋଳ
ରକ୍ତମଖା ମୁକ୍ତିର ପତାକା
ମେହନତି ଜନତାର,
ଆଙ୍କିଦିଅ ଭାଲେ ତାର
ବିଜୟର ଟୀକା-
ଜ୍ୱଳନ୍ତ ତାରକା !

ଅବସାନ ଲଭେ ଏଥି
ଶୋଷଣର ଦୀର୍ଘ ଇତିହାସ,
କେତେ ଦ୍ୱନ୍ଦ୍ୱ, ଅତ୍ୟାଚାର
ପ୍ରବଞ୍ଚନା ଆଉ ଅବିଶ୍ୱାସ ।

(୪)

କେତେ ଯେ ଅଶ୍ରୁ କେତେ ଯେ ରକ୍ତ ବୁହାଇ
ଜନ୍ମ ଲଭିଛି ଯେ ନବଜାତକ, ତା ପାଇଁ
ନୂତନ ସମାଜ ସୃଜିବା,
ଜନତାର ତାଜ ରଚିବା ।

କାରଖାନା କରୁ କମାର,
କୃଷକ ଚଷୁ ତା ଖମାର;
ଶୋଷଣକୁ ଶୋଷି ଭେଦଭାବ ସବୁ ଭୁଲିରେ
ସୋଭିଏତ୍ ମୂଳେ ଶକତିକୁ କର ଠୁଳରେ;
ଦୁନିଆର ଯେତେ
ଦୈନ୍ୟ ସାଥିରେ ଲଢ଼ିବା,
ଲାଲଫୌଜ ଆମେ ଗଢ଼ିବା ।

ଗଢ଼ିବାକୁ ହେବ ମଣିଷ ଭଳିଆ ମଣିଷ,
ପଶୁତ୍ୱ ପେଷି ପାତାଳପୁରକୁ
ଆମେ ଅନାହତ,
ଆମେ ଅନାବିଳ,
ଆମେ ତ ଆଣିବା ସାମ୍ୟବାଦର ପୀୟୂଷ,
ନବଜନ୍ମର ଆଶିଷ ।



# ଇସ୍ତାହାର

## ମନୋଜ ଦାସ

ଆମେ ଚାହୁଁ ଆମ ଶଙ୍କାଶୂନ୍ୟ ଶାନ୍ତ କୁଟୀର-ପୁରେ
ଶୂନ୍ୟ ଉଦରେ ପାଇବା ପାଇଁକି ଦାନା
ଆଉ ଚାହୁଁ ଆମ ରକ୍ତ ଶୋଷିତ ଉଲଗ୍ନ କଳେବରେ
ଆବୋରିବା ଭଳି ଆବଶ୍ୟକୀୟ କନା ।

ଆମେ ଚାହୁଁ ଆମ ଶିଶୁ ସନ୍ତାନ ମୁଖେ ଦେଖିବାକୁ ହସ
ସମାଜର ବୁକେ ଉନ୍ନତ ତାର ଶିର
ରଚି ପାରିବନି ଜାତି ଧର୍ମ ବା ଅର୍ଥର ପରିବେଶ
ସମ୍ମୁଖେ ତାର ମୃତ୍ୟୁର କାରାଗାର ।

ଆମେ ଚାହୁଁ ଆଜି ଦେଖିବାକୁ ଆମ ତୃଷାର୍ତ୍ତ ବେନିଆଖେ
ଆଭିଜାତ୍ୟର ନିର୍ମମ ନିଃଶେଷ
ଆଉ ଚାହୁଁ ଆମ ଗଣଶାସନର ନବତମ ଅଭିଷେକେ
ସର୍ବହରାର ତୃପ୍ତ ମଧୁର ହସ ।

ଆମର ତୃଷ୍ଣା ଲିଭିବନି ତୁମ ଦୟାର୍ଦ୍ର ଦାନପଣେ
ଗାଲୁଭରା ତୁମ ଲମ୍ବା ଚଉଡ଼ା ବାତେ
ଆମର ଜଠରେ ଉଦ୍‌ଗତ ଲାଭା ଧ୍ୱଂସର ବୀଜ ବୁଣେ
'ବିସୁଭିୟାସ'ର ସଙ୍କେତ ଆମ ହାତେ ।

ଆମର ଧର୍ମ ପିଶାଚେ କରେନା ଦେବତାର ଆରୋପଣ
ଆମର ଧର୍ମ ଜୀବନର ଜୟଗାନେ
ପରଲୋକ ନୁହେଁ, ଇହଲୋକେ ଚାହୁଁ ସ୍ୱର୍ଗର ଆବାହନ
ସ୍ୱର୍ଗସୁଖର ବାସ୍ତବ ରୂପାୟନେ ।

ଆମ ହାତେହାତେ କର୍ମର ପାଇଁ ପ୍ରେରଣା ଦୁର୍ନିବାର
ହାତେହାତେ ଆମ ସୃଷ୍ଟିର ନୂଆ ନିଶା
ରକ୍ତତୂଳୀରେ ଲେଖି ଚାଲେ ଆଜି ଲୋହିତ ଇସ୍ତାହାର
କୋଟିକଣ୍ଠର ଏକତାବଦ୍ଧ ଭାଷା ।

ମେଘ, ବୃଷ୍ଟି ଓ ଝଡ଼ଝଞ୍ଜାର କ୍ଷୁବ୍ଧ ଧରଣୀତଳେ
ଆମେ ଚାହୁଁ ଏକ ସ୍ୱର୍ଗ ଗଢ଼ିବା ପାଇଁ
ଆମେ ଚାହୁଁ ଆଜି ସାମ୍ୟ ରବିର ଅଭ୍ୟୁଦୟର ବେଳେ
ବିଗତର ଶତ କ୍ରନ୍ଦନ ଯାଉ ଧୋଇ ।



# ଇତିହାସ କିଏ ଗଢ଼େ ?

## ବ୍ରଜନାଥ ରଥ

### (ଏକ)

ଇତିହାସ କିଏ ଗଢ଼େ
ସେମାନେ ନା ତୁମେ ?
ଇତିହାସ କିଏ ଲେଖେ
ତୁମେ ନା ସେମାନେ ?
ଏଇକଥା ଯଦି କେବେ ପଚାରିବେ ଦିନେ;
ସୁଦୂର ପଲ୍ଲୀର କେଉଁ ମାଟି-ଝାଟି ଘେରା
ନୁଆଁଣିଆ ଚାଳଘରେ ରହୁଥିବା
ଗରିବ ଚାଷୀଙ୍କୁ;
ଅବା ଯଦି ପଚାରିବ କେଉଁ ଦୂର ସହର ତଳିର
ଅନୁନ୍ନତ ଶ୍ରମିକ ବସ୍ତିରେ
ରହୁଥିବା କଳ-ଶ୍ରମିକଙ୍କୁ;
ତାହାହେଲେ ଉଦାସ ଓ ନିର୍ବିକାର ଭାବେ;
ସେମାନେ ହୁଏତ ଏଇ
ଉତ୍ତରହିଁ ଦେବେ -
"ଇତିହାସ ଫିତିହାସ ଆମେ ତ ଜାଣୁନା
ପ୍ରତିଦିନ ଶୁଝୁ ଆମେ ଜୀବନର ଦେଣା;
ଲୁହ ଦେଇ ଲହୁ ଦେଇ
ସକାଳରୁ ସଞ୍ଜଯାଏଁ ନିତି
ଖଟିଖଟି ମରୁ ଆମେ ବଞ୍ଚିବାର ପାଇଁ
କାହିଁ କୁହ ଆମର ମୁକତି ?"

(ଦୁଇ)

ଶୁଣିଶୁଣି ସେମାନଙ୍କ ଏହିଭଳି
ନିରୁତ୍ତପ୍ତ, ଉଦାସ ଉତ୍ତର
ତୁମେ କେବେ ଭାବନାହିଁ ମନେ
ଇତିହାସ ଗଢ଼ାହୁଏ କେଉଁ ରାଜ ସିଂହାସନ
ଉତ୍‌ଥାନେ ପତନେ ଅବା
ଇତିହାସ ହୁଏ ଲେଖା -
କେଉଁ ପ୍ରାଜ୍ଞ ବୁଦ୍ଧିଜୀବୀ କଲମର ମୁନେ ।
ଇତିହାସ ଗଢ଼ନ୍ତିନି ତୈମୁର-ନାଦିର ଶାହା
ଚେଙ୍ଗିଜ୍ ବା ଆଲେକଜାଣ୍ଡାର;
ଚ୍ୟାଂକାଇଶେକ-ନିରୋ
ଇନ୍ଦିରା-ୟାହିଆ ଖାଁ
ମୁସୋଲିନା-ହେର୍ ହିଟ୍‌ଲର ।
ରୁଷିଆର ଜାର ଅବା ଫ୍ରାନ୍‌ସର ଲୁଇ
ଏମାନେ ତ କେବେହେଲେ
ଇତିହାସ ଗଢ଼ନ୍ତି ତ ନାହିଁ ।
ପୃଥିବୀର ଜୀର୍ଣ୍ଣ ପୃଷ୍ଠାପରେ
ଇତିହାସ ହୁଏନାହିଁ ଲେଖା
ଏକଛତ୍ର ଶାସକର ରକ୍ତାପ୍ଲୁତ ସଙ୍ଗୀନ୍‌ମୁନରେ !
ଜନତାର ଦ୍ୱାହି ଦେଇ
ଶୋଷଣର ବୂହ୍ୟତଳେ ଲୁଚି
କେହି କେବେ ପାରେନାହିଁ
ବିପୁଳା ଏ ପୃଥିବୀ ବକ୍ଷରେ
ନୂଆ ଏକ ଇତିହାସ ରଚି ॥

(ତିନି)

ଇତିହାସ ଗଢ଼ନ୍ତି ସେମାନେ,
ଶତଶତ ସିଂହାସନ ଉତ୍‌ଥାନେ-ପତନେ
ଅବିଚଳ ରହି ଯେଉଁମାନେ
ଧରିଥାନ୍ତି ଧରଣୀର ଉତ୍ପାଦନ ପଦ୍ଧତିର ଡୋରି
ସେମାନେ ହିଁ ତାହାର କାଣ୍ଡାରୀ ।

ସେମାନେ ହୁଏତ ନିଜେ ପାରନ୍ତିନି ଜାଣି
ଇତିହାସ କିଏ ଗଢ଼େ ଯୁଗଯୁଗ ଧରି
ଇତିହାସ କିଏ ରଚେ ପୁଣି ।

ସେଥିପାଇଁ ସେମାନଙ୍କ ନିରୁତ୍ତପ୍ତ ଉଦାସ ଉତ୍ତର
ଯୁଗେଯୁଗେ, କାଳେକାଳେ
ତୁମକୁ ତ ଦେଇଛି ପ୍ରେରଣା
ଇତିହସ ନାମଦେଇ ଲେଖିବାକୁ ନିଜନିଜ
ଶୋଷଣର ମହାକାବ୍ୟ-ଗାଥା,
ଗାଇବାକୁ ଉଚ୍ଚକଣ୍ଠେ ନିଜର ବନ୍ଦନା ॥

(ଚାରି)

କିନ୍ତୁ ତାହା ବୋଲି
ତୁମେ କେବେ ଯାଅନାହିଁ ଭୁଲି;
ଚିରଦିନ ତୁମକୁ ସେ ଦେଉଥିବେ କ୍ଷମା,
ଇତିହାସ ନାମେ ରଚି
ସାଆନ୍ତିଆ ସଂସ୍କୃତିର ନୀଳ ପାଣ୍ଡୁଲିପି
କରୁଥିବ ତୁମେ ତୁମ
ସ୍ୱାର୍ଥପର କର୍ମର ତର୍ଜମା ।
ଉଦାସ ଆଖିରେ ପୁଣି
ସେମାନେ ବି ଚିରଦିନ
ତୁମ ଆଡ଼େ ରହିଥିବେ ଚାହିଁ;
ଶୋଷଣର ସିଂହଦ୍ୱାରେ
ଅସହାୟ ଭାବେ ନିଜ
ଭାଗ୍ୟ ଆଉ ଭଗବାନ ନେଇ ।
ଏ କଥାତ ଭାବନାହିଁ ତିଳେ;
ମନେରଖ-ମନେରଖ
ଇତିହାସ ଗଢ଼ାହୁଏ-
କୋଟିକୋଟି ମେହନତି
ମଣିଷର ଦୃପ୍ତ ବାହୁବଳେ ॥

(ପାଞ୍ଚ)

ଇତିହାସ ଗଢ଼ାହୁଏ ଶ୍ରମ ଆଉ ସ୍ୱପ୍ନର ସଂଗମେ,
ଇତିହାସ ଗଢ଼ାହୁଏ କୃଷକ ଶ୍ରମିକ ଆଉ
ଶତଶତ ମେହନତି ମଣିଷର ଘର୍ମର ପ୍ଲାବନେ ।
ଧରଣୀର ମହାଗ୍ରନ୍ଥ ପରେ,
ସେମାନେ ଲେଖନ୍ତି ନିତି
ସଭ୍ୟତାର ମହା ଇତିହାସ
ଲୁହ ଆଉ ଲହୁର ଅକ୍ଷରେ ।

ନିରବ କର୍ମର ରୋଳେ
ବେଗବାନ  ଜୀବନ-କଲ୍ଲୋଳେ
ଭାଂଗିଦେଇ ଜଡ଼ତାର ଅବରୁଦ୍ଧ ପାଷାଣର କାରା
ଥରାଇ ଏ ସସାଗରା ଚାରୁ ବସୁନ୍ଧରା;
ଖେଳାଇ ଶସ୍ୟର ସ୍ମିତ
କେଦାରେ କେଦାରେ,
ଜଳାଇ ପ୍ରାଣର ରଶ୍ମି
ନିରୁଦ୍ଧ ଅନ୍ଧାରେ,
ସୃଷ୍ଟିର ରହସ୍ୟ ଭେଦି
ଜୀବନର ମହା ଅଭିଯାନେ,
ଶତ ଶତ ସାମ୍ରାଜ୍ୟର
ଉତ୍‌ଥାନେ ପତନେ,
ସେମାନେ ଗଢ଼ନ୍ତି ଏହି
ପୃଥିବୀର ମହା ଇତିହାସ;
ସେମାନେ ତ ଏ ମାଟିର
ଚିରବନ୍ଦ୍ୟ ନିପୁଣ ବିନ୍ଧାଣୀ
ସେମାନେ ସୃଷ୍ଟିର ସ୍ରଷ୍ଟା
ଧରଣୀର ପ୍ରାଣର ଉଲ୍ଲାସ ॥

□□□

# ବାଲିଆପାଳ

## ଜଗନ୍ନାଥ ପ୍ରସାଦ ଦାସ

କାହାର ଖେଳ କାହାର କାଳ
ବାଲିଆପାଳ ବାଲିଆପାଳ ।

ବାଲିଆପାଳ ତୀର୍ଥସ୍ଥଳ
କୁରୁକ୍ଷେତ୍ର ନୁହେଁ ଧର୍ମକ୍ଷେତ୍ର
ଏ ଭିତରକୁ ପଶିବା ଆଗରୁ
ପାଦରୁ ଜୋତା ଖୋଲି ରଖ
ଅସ୍ତ୍ରଶସ୍ତ୍ର ଅଲଗା କରିଦିଅ ହାତରୁ
ମଥା ନୁଆଁଇ ଆସ
ହାତଯୋଡ଼ି ଆସ
ଏଇ ପବିତ୍ର ପ୍ରାଙ୍ଗଣକୁ ।

ବାଲିଆପାଳ ସତ୍ୟର ପରୀକ୍ଷାଗାର
ଲୋକମତର ଘାଟି,
ନ୍ୟାୟର କଷଟି
ଅହିଂସାର ପ୍ରୟୋଗଶାଳା
ବାଲିଆପାଳ ଅନ୍ତିମ ସଂଘର୍ଷ
ଲୋକବଳ ଓ କ୍ଷମତାର
ବୈଧତା ଓ ନିରଙ୍କୁଶତାର
ବର୍ବରତା ଓ ମାନବିକତାର ।
ବାଲିଆପାଳ ଜାଣେନାହିଁ

ଆମେରିକା କେଉଁଠି, ରୁଷିଆ କଣ
ହିରୋସିମା କେଉଁଠି, ପୋଖରାନ କଣ
ବାଲିଆପାଳ କେବଳ ଜାଣେ
ଭୋକ କଣ, ଦୁଇମୁଠା କେତେ
ଏଠାର ଚାଷୀ ଖାଲି ଚିହ୍ନେ
ମେଘକୁ, ବର୍ଷାକୁ, ମାଟିର ଗନ୍ଧକୁ
ଗଛକୁ, ଫସଲକୁ, ମରୁଡ଼ିକୁ, ପଙ୍ଗପାଳକୁ ।

ବାଲିଆପାଳ ଭବିଷ୍ୟତ କାଳ
ଚାଷୀ ଏଠାରେ ସାର୍ବଭୌମ ଅଧୀଶ୍ୱର
ଏଠାରେ ଅସ୍ତ୍ର ନାହିଁ, ଶସ୍ତ୍ର ନାହିଁ
ସେନାବାହିନୀ ନାହିଁ, ଶୀତଳ ଯୁଦ୍ଧ ନାହିଁ
ଏଠାରେ କେବଳ ମାଟି ପାଣି ଓ ଗଛଲତା
ଶସ୍ୟରେ ସବୁଜ ଧରିତ୍ରୀ
ଏବଂ ଅଦମ୍ୟ ମଣିଷର ସତ୍ତା ।

ଏଠାରେ ତମେ ଧାନଗଛ ଉପାଡ଼ିଦେଇ
ବନ୍ଧୁକ ପୋତିଦେଇପାର,
ସାର ବଦଳରେ ବାରୁଦ ବିଞ୍ଚିଦିଅ
ପାଣି ବଦଳରେ ରକ୍ତ ସିଞ୍ଚି ଦିଅ
କିନ୍ତୁ ବାଲିଆପାଳର ମାଟିରୁ ଶେଷରେ
ଧାନ ହିଁ ଉପୁଜିବ କ୍ଷେପଣାସ୍ତ୍ର ନୁହେଁ ।



# ଅପଢ଼

## ପ୍ରସନ୍ନ କୁମାର ମିଶ୍ର

କେଇଖଣ୍ଡି ହାଡ଼, ପୁଳାଏ ମାଂସ
ଖଣ୍ଡିଏ ଧୋତି ଓ ଗୋଟିଏ ଗାମୁଛାର ମଣିଷ
କେବଳ ତୁ ନୋହୁଁ ସନାତନ !

ତୁ ସେଇ ଶାନ୍ତି-ଭିକ୍ଷୁ
ତୁ ସେଇ ଶାନ୍ତ-ରକ୍ଷିତ,
ପଥର ଚୌକିରେ ବସି
ତରଳ ପ୍ରେମ ବାଣ୍ଟୁଥିବା
ଆଚାର୍ଯ୍ୟ ତୁ !
କରୁଣାରେ ବିଗଳିତ
ଶ୍ରମଣ ତୁ !

ପିମ୍ପୁଡ଼ିଙ୍କ ଗାତରେ
ଗୁଡ଼-ପାଣି ଢାଳି
ଆନନ୍ଦରେ ଆତ୍ମହରା ହେଉଥିବା
ତୀର୍ଥଙ୍କର ତୁ !

ବୈଶାଖରେ ଶୋଷିଲା ବାଟୋଇକୁ
ନବାତ ପଣା ଓ ଛତାର ଛାଇ
ଦେଉଥିବା ବ୍ରାହ୍ମଣ ତୁ !
ନା, ନା, ଏ ସଭିଙ୍କଠାରୁ ମୁଁ ତୋତେ
ଆଉରି ବଡ଼କରି ଭାବିଛି ରେ ସନାତନ ।

ତୁ ମାଟିପରି, ପାଣି ପରି, ପବନ ପରି
ବସ୍ତୁ ପରି ବର୍ତ୍ତମାନ । ଅବସ୍ତୁ ପରି ଚିରନ୍ତନ ।

ଯେଉଁ ବାରବାଟୀ ଗଡ଼ର ଚନ୍ଦ୍ରଶାଳାରେ ବସି
ନିଶାମଣିଠାରୁ ଚୁମ୍ବନ ଖାଉଥିଲା ରାଜକୁମାରୀ
ମାତ୍ର କେତୋଟି ତୋପର ପ୍ରତାପରେ ତା' ଭାଂଗିପଡ଼ିଲା ନା ?

ଆଜି ମୁଁ ଏକାକୀ ବସି ବରଫ ମିଶା ବିଅର୍ ପିଉଥିବା
ତ୍ରି-ଦିଗ ଖୋଲା ବାଲ୍‌କୋନିଟା କେଇଦିନ ରହିବ !

ଲକ୍ଷେ ନଟୀଙ୍କୁ କାନ୍ଧରେ ବସାଇ
ଆକାଶକୁ ଆଖି ଦେଖଉଥିବା କୋଣାର୍କ ତ
ବାଲିରେ ଆଣ୍ଠେଇ ପଡ଼ିଲା ମୁଣ୍ଡ ହରାଇ !
ଆଜି ପତାକା ଉଡ଼ାଇ ବସିଥିବା ମୋ କୋଠା
ତା' ଭିତରେ ଧରାକୁ ସରା ମଣୁଥିବା ମୁଁ
କେତେଦିନରେ ସନାତନ ? କେତେଦିନ ?

କିନ୍ତୁ ତୁ ଥିଲୁ, ତୁ ରହିବୁ
କେତେବେଳେ ଶୁଷ୍କ ନଈକୂଳର
ଉଦ୍‌ବାସ୍ତୁ ଖଜୁରିଗଛଟିଏ ଭଳି
ତୁ କେତେବେଳେ ଲାଲ ଫୁଲରେ ଲଦି ହୋଇ
ଜଗତ ବିରୁଦ୍ଧରେ ପ୍ରେମ ଘୋଷଣା କରୁଥିବା
ଶିମୁଳି ଗଛପରି କୀର୍ତ୍ତନକର ଠାଣିରେ
ତୁ ଥିବୁ....

କାନ୍ଧରେ ହଳ ଓ କୋଦାଳ,
ଅଣ୍ଟିରେ ଦା', ହାତରେ ନିଶାଣ,
ତୋ ପଗଡ଼ିରେ ଝଲସୁଥିବ ସୂର୍ଯ୍ୟଙ୍କ କିରଣ ।

ଜାଣି ନଥିଲା ଚଣ୍ଡାଶୋକ
ଗୋଟିଏ ମୁଣ୍ଡ କଟିଗଲେ
ପଲକରେ ଆଉ ଏକ ମୁଣ୍ଡ
ଗଜୁରେ ବୋଲି ତୋ' କାନ୍ଧରେ ।

ହଜାର ହଜାର ସମରରେ
ହଜାର ହଜାର ଥର ତୋତେ
ମୁଣ୍ଡ ହରେଇବାକୁ ପଡ଼ିଛି ।
ହଜାର ହଜାର ଥର ମୁଣ୍ଡ ଉଠିଛି ତୋ' କାନ୍ଧରୁ ।

ଖଣ୍ଡାରେ କି ଦଣ୍ଡାରେ
କୋପରେ କି ତୋପରେ
ବଢ଼ିରେ କି ପୋଡ଼ିରେ - ତୁ ମରିନୁ ।
ମରିନୁ ବୋଲି ତ ଲାଲ୍ ଗାମୁଛା ତୋର
ହୋଇ ପାରିଚି ନିଶାଣ ।
ତୋର ନିଟୋଳ ହସ
ଶତାବ୍ଦୀମାନଙ୍କୁ କରୁଚି ଉପହାସ ।

ଘରଭସା ବଢ଼ିରେ କି
ଚାଳଉଡ଼ା ଝଡ଼ିରେ,
ହଂସଉଡ଼ା ତାତିରେ କି
ବର୍ଗୀଭରା ରାତିରେ
ଠିଆଠିଆ ଧାନଗଛ ପରି
ତୁ ମରଣ ସହିତ ଯୁଝି ଆସିଚୁ ।

ଏଇ ତ ସେଦିନ
ମାମୁଘରୁ କୁରାଢ଼ି ଆଣିଲା ନ'ଅଙ୍କ
ଚିରିଲା ତୋର କଙ୍କାଳ
ଫୋପାଡ଼ିଲା ଦିଗ୍‌ବିଦିଗ ।

ତୁ ପଡ଼ିଲୁ ବର୍ମାରେ,
ତୁ ପଡ଼ିଲୁ କଲିକତାରେ ।
ତୁ ଯେଉଁଠି ପଡ଼ିଲୁ ପୁଣି ସେଇଠି ଗଜୁରିଲୁ ।
ଦା'ରେ କୋଡ଼ିରେ ସଜେଇ ଦେଲୁ ବିଲ
ସୁନେଲି ଧାନ୍ୟ, ସବୁଜ ଫସଲ ।
ତୋ'ତେ ଯେତେବେଳେ ଦଂଶୁଥିଲା ନ'ଅଙ୍କ
କେଉଁ ରାଣୀ ତୋ' ଲାଗି ପାତି ନଥିଲା ଅଙ୍କ
କହି ନ ଥିଲା 'ଆହାରେ ମୋ ଧନ'
ତୋ' ଦେହରୁ ବିଷ ବାହାର କଲୁ ନିଜେ ତୁ
ତୋତେ ରକ୍ଷାକଲା ତୋ'ର ନିଜର କୁହୁକ ।

ଦିନେ କେଉଁ କାବେରୀ ତଟରେ ତୋର ଶବ ଛାଡ଼ି
ହାତୀରେ ବସାଇ ପଦ୍ମାବତୀ, ଫେରିଆସିଥିଲା ରାଜା
ଶହଶହ ବିଧବାଙ୍କ କାନ୍ଦଣା ପାସୋରି
ଦେଖୁଥିଲା ନୂଆ ରାଣୀର ମୁହଁ
ଭୁଲିଥିଲା ତୋ କଥା ତୋ ପୁଅ ରଙ୍କୁଣୀ ମା' କଥା
ବାହୁରେ ବ୍ରତ, ନାକରେ ନଥ ଲଗାଇ ଚାହିଁଥିବା ତୋ' ସ୍ତ୍ରୀକଥା
ସବୁ ଭୁଲି ଯାଇଥିଲା ରାଜା
ଆହା' ତୋ'ର ପ୍ରଜାଦରଦୀ ରାଜା !

ସମର ଶ୍ମଶାନରୁ ତୋତେ ଆସିବାକୁ ହେଲା
ନିଜେ ନିଜର ଶବ ବହି ।
ଫେରିଆସିଲୁ ବୋଲି ଇଜ୍ଜତ ରହିଗଲା ତୋର ।

ତୋରି କଥା ଭାବି ଯେତେ ମହାରାଜାଙ୍କ ସଂଗେ
ମୋର ଅପଡ଼ । ଭାଟଙ୍କ ସହିତ ଅପଡ଼ ।
ଖଞ୍ଜଣିର ସୁର୍‌ରେ – 'ଆହା, ଏ ଜୀବନ କିଛି ନୁହେଁ'
ବୋଲି ଡାକ ଦେଉଥିବା ସାଧକ ସହିତ ମୋର ଅପଡ଼ ।

ଶତ୍ରୁ ମୁହଁକୁ ନିଆଁ ନ ଫୋପାଡ଼ି
ନିଜେ ନିଆଁକୁ ଡେଇଁ ଇତିହାସର ସାବାସି
ପାଇବାକୁ ଚାହିଁଥିବା ମାଇପିଙ୍କ ସଂଗେ ମୋର ଅପଡ଼ ।
ନିଆଁଗିଳି ସର୍କସ କରୁଥିବା ମରଦଙ୍କ
ସଂଗେ ମୋର ଅପଡ଼ ।
ନିଆଁରେ ଚାଲି ହଟ-ଚମଟ କରୁଥିବା
ସାଧକ ସହିତ ମୋର ଅପଡ଼ ।

ଚାଟୁକାର କବି ସହିତ ମୋର ଅପଡ଼ ।

ଖଣ୍ଡା ନ ଝମକାଇ କାଖରେ ମାଠିଆ ଧରି
ମୁଣ୍ଡରେ ଓଢ଼ଣା ଦେଇ
ନଈକୁ ଡେଇଁ ପଡ଼ିଥିବା ଠାକୁରାଣୀଙ୍କ
ସଂଗେ ମୋର ଅପଡ଼ ।

ହାତ ପରଷୁଥିବା ମହାରାଣୀ ସହିତ ଅପଡ଼ ।
ପେଟ ଦେଖେଇ ପଇସା ମାଗୁଥିବା ମାଙ୍କଡ଼ ସହିତ ଅପଡ଼ ।
ଘଟ ସହିତ ଅପଡ଼ । ପାଟ ସହିତ ଅପଡ଼ ।
ଥାଟ ସହିତ ଅପଡ଼ । ବାଟ ସହିତ ଅପଡ଼ ।

ଅପଡ଼ ଅପଡ଼ ଗୋଟା ଇତିହାସ ସହିତ ଅପଡ଼ ।
ହାଣୁଥିବା ହାତ, ଯୋଡ଼ିଥିବା ହାତ ସହିତ ମୋର ଅପଡ଼ ।
ତୋତେ ଭଲପାଏ ବୋଲି ରେ ସନାତନ
ଆଜି ମୋର ସମସ୍ତିଙ୍କ ସହିତ ଅପଡ଼ ।



# ଦ୍ରୋହକାଳ

## ସଦାଶିବ ଦାଶ

*(କବିତାର ଭାବାର୍ଥ :- ସାଂପ୍ରତିକ ଭାରତବର୍ଷ ଆସନ୍ନ ଗୃହଯୁଦ୍ଧର ପାଦ ଦେଶରେ ବୋଲି ଦ୍ରୋହକାଳ ସୂଚନା ପ୍ରଦାନକରେ । ମାଓବାଦୀ ଦମନ ନାମରେ ବ୍ୟାପକ-ସାମରିକ ପ୍ରସ୍ତୁତି ଓ ଅନ୍ଧ ଭାବେ ନିରୀହ ଜନଗଣଙ୍କ ଉପରେ ଲାଞ୍ଛନାର ସୂଚନା ଏହି କବିତାରୁ ମିଳେ । ଅଭାବୀ ଜନଗଣର ହିଂସାତ୍ମକ ପ୍ରତିବାଦର ଜବାବ ଦିଆଯାଏ ପ୍ରତିହିଂସାରେ । ଗଣତନ୍ତ୍ରର ଯାବତୀୟ ଧାରା ସାଧାରଣ ଜନତାଙ୍କୁ ନ୍ୟାୟ ଦେଇ ପାରେନି । ଗିରିଜନର ଶାନ୍ତ ମାନବିକତା ନ୍ୟସ୍ତସ୍ୱାର୍ଥ ଶାସକବର୍ଗଙ୍କ ଦ୍ୱାରା ଲହୁଲୁହାଣ ହୁଏ । ଏବେ ଟଳି ପଡୁଥିବା ପାହାଡ଼ୀ ଅବହେଳିତଙ୍କ ସଙ୍ଗେ ସାମିଲ ହୋଇଛନ୍ତି ବିପ୍ଳବୀ ପାଠୁଆ ଯୁବଶକ୍ତି । ଯାହାଙ୍କୁ ଶାସକ ବିଭ୍ରାନ୍ତ ଦେଶଦ୍ରୋହୀ ଭାବେ ଚିତ୍ରଣ କରିଥାଏ । ଏଠି କିଏ ସହିଦ୍ କିଏ ଦେଶଦ୍ରୋହୀ ତାହାକୁ ସ୍ଥିର କରିବ ଇତିହାସ ବୋଲି ଦ୍ରୋହକାଳ କବିତାର ଭିତିରୀ ସତ୍ୟ । ଦେଶ ଚଉଛକିରେ ଠିଆହୋଇ ପ୍ରଶ୍ନବାଚୀର ସନ୍ଧିକ୍ଷଣରେ ଉପନୀତ । କବିତା ଭବିଷ୍ୟତର ଏକ ରକ୍ତାକ୍ତ ଚିତ୍ରପଟ ସଦୃଶ ।...ଲେଖକ)*

ସରଣ୍ଡା ହେଉକି ଚିତ୍ରକୋଣ୍ଡା
ଚଉପାର୍ଶ୍ୱରୁ ଘେରି ଆସୁଛନ୍ତି କୋବ୍ରା ବାହିନୀ ।
ଛଞ୍ଚାଣ ପରି ଘୂରିବୁଲୁଛି ସଜ୍ଜିତ ବିମାନ
ଖୋଜା ଚାଲିଛି, ମାଇନ୍, ବଙ୍କର, ଆତ୍ମାସ୍ଥଳୀ
ଚାରିଆଡ଼େ ସଂଚରି ଯାଇଛି ଦ୍ରୋହକାଳର ଲାଲମେଘ ।

ଝୋଲା ତଳର ଖପରିଲି ଚାଳ ଉପରେ ତାତିଲା ନୀରବତା
ଶେଯରେ ଶୋଇଛି ହାଡ଼ରସା ବୋହୁଥିବା ଅଶରଣୀ ନିଃଶ୍ୱାସ
ଭୋକରେ ଆଉଟୁପାଉଟୁ ଶେତା ଚମଡ଼ାର ଆସ୍ତରଣ,
ଘର ଭିତରେ କଇଁଚ ସାଜି ଲୁଚିଛି ବିସ୍ଫୋରଣ ।

ବାରୁଦ ଗଦା ଉପରେ ଦୋଳି ଖେଳୁଛି ପ୍ରତିବାଦ
ମୃତ୍ୟୁ ସେଠି ଶବ ପିର ନିଥର ମୂଲ୍ୟହୀନ ।

ଜଙ୍ଗଲୀ ରାସ୍ତାର କାଦୁଅ ପେଣ୍ଡୁଳାରେ
ପଚପଚ ହେଉଛି ଜୀବନ ।
କେଇ ହାତ ଜମିର ଉଜୁଡ଼ା ପଣ ଭିତରେ
ବାଙ୍ଝ ହେଉଛି ଝାଳ ।

କୋଉ ପତାକା ତିଆରି କରିପାରୁନି ରାହା କି ସାହା
ଭାଷଣବାଜିର ଭୋଜବାଜିରେ ଗଢ଼ା ହେଉନାହିଁ ମୂଳଭିଟା
ଗଛର କଟାଗଣ୍ଡି କରି ଛିନ୍ଛତ୍ର ହେଉଛି ଆଦିମ ଅସ୍ତିତ୍ୱ ।

ରାସ୍ତା ଉପରେ ରକ୍ତ ଜୁଡୁବୁଡୁ ମଲା ମଣିଷଟା
ଶିକାର ହୋଇଛି ନିଜସ୍ୱ ବିଶ୍ୱାସଘାତକତାରେ ।

ଖ୍ୟିନ୍ଭିନ୍ ହୋଇ ମରିଥିବା ବଫାଦାରମାନଙ୍କ ଦେହରେ
ଘୋଡ଼ାଇ ଦିଆଯାଇଛି ତିନିରଙ୍ଗିଆ ସହୀଦ ଆସ୍ତରଣ ।
ନଇଁପଡୁଛି ସଙ୍ଗୀନ୍ର ବିଷଦାନ୍ତ ମାନବିକତା ପାଖରେ
ଲହୁଲୁହାଣ ଗିରିଜନ ଚହିଁଛନ୍ତି ଶୃଙ୍ଖଳା ଫଟା ଆକାଶକୁ ।

ଯାହାଙ୍କୁ ଜଙ୍ଗଲ ଘୋଡ଼େଇ ପକାଏ ପତ୍ରର ଆଢୁଆଳରେ
ବିନା ହିସାବରେ ପୋତାଯାଏ ଦେହ ସବୁ ଡଙ୍ଗର ଦାଢ଼ରେ ।
ସେ ଶୁକ୍ରୁ ଜାନି, ମାଣ୍ଡିଆ ଜାନି କି
କୋଉ ପାତ୍ର, ପଣ୍ଡା, ପଟ୍ଟନାୟକଙ୍କ ବାଟଖୋଜା ଯୁଆନ୍ ପୁଅ
ଆଲେଖା ଅପଢ଼ା ହୋଇଯାନ୍ତି ସମୟର ରକ୍ତଭିଜା ପୃଷ୍ଠାରେ ।
ଇମାନ୍ଦାର ସହୀଦମାନଙ୍କଠାରୁ
ନିର୍ବିଚାରରେ ମରୁଥିବା ସଂଗ୍ରାମୀମାନେ
କୋଉଥିପାଇଁ ଟଳିପଡ଼ନ୍ତି ଦୋଛକରି ଦ୍ରୋହକାଳରେ ?

ଅକାଳରେ ଝରିପଡୁଥିବା ଅଶାନ୍ତ ଲୁହବୁନ୍ଦା ସବୁ
ସମୃଦ୍ଧ ଉର୍ବରା କରେ ଶୋଷିତା ମାଟିକୁ ।

ସେମିତି ଖୋଜା ଚାଲିଥାଏ
ଅଶାନ୍ତ ସମୟର ହିଂସ୍ରକ ମଥା ଆଉ ଫୁଙ୍ଗୁଳା ଦେହକୁ ।
ସଭ୍ୟତା ବଞ୍ଚିଥିବା ଯାଏ
ଯେ ଲଢ଼େଇ ନୂଆ ଜୀବନକୁ ହିଁ ଖୋଜି ଚାଲିଥାଏ ।

*('ଖବର' ଶାରଦୀୟ ପୃଷ୍ଠା, ୨୦୧୦ରେ ପ୍ରକାଶିତ)*



# କବିକୁ କହୁଛ ତୁମେ...

## ବିଜୟ ଉପାଧ୍ୟାୟ

ଗୁଜୁରାଟ ପରେ
କବିକୁ କହୁଛ ତୁମେ ଗୀତ ଗାଇବାକୁ ?

କାହିଁକି ?
ଏପରିକି
କାଳିଦାସ ଓ ଭବଭୂତିଙ୍କି
ସବାକ୍ କରିଥିବା ସେଇ କୋଇଲିର କୁହୁ
ଆଜି ନିଶ୍ଚୁପ୍ !
ମରିସାରିଛି ସେଇ ପତ୍ରର ମର୍ମର
ଝରର ଝର୍ଝର
ଯାହା ବନସ୍ପତିରେ ଭରି ଦେଉଥିଲା
ଛନ୍ଦ ଓ ଅମୃତ !

ଆଜି
ବାରୁଦସ୍ତୂପ ଉପରେ
ଯେତେବେଳେ ସମଗ୍ର ପୃଥିବୀ ଟଳମଳ
କେଉଁଠି 'ମାଇଲାଇ' 'ନାଗାସାକୀ' ତ
କେଉଁଠି ଇଥିଓପିଆ,
ଥରହର 'କାମ୍ପୁଚିଆ' 'ଚିଲି'
ବିସ୍ଫୋରିତ ପାଲେଷ୍ଟାଇନ୍
ବିଦଗ୍ଧ ବାଗ୍‌ଦାଦ୍, ଆଫ୍‌ଗାନୀସ୍ତାନ !

ଲକ୍ଷକୋଟି ଶିଶୁଙ୍କର ଶବର ସ୍ତୂପରେ
ଦୃପ୍ତ ପାଦ ପୋତିଦେଇ ବିଗୁଲ୍ ବଜାଏ
ମାର୍କିନ୍ ବେପାରୀ !
ତା'ର ରାହୁ ଆଁରେ ଲୋଟିପଡ଼େ
ଦେଶ ପରେ ଦେଶ !
ସମୟର ଏଇ ଅଜବ୍ ମୁହୂର୍ତ୍ତେ
କବିକୁ କହୁଛ ତୁମେ
ସୌନ୍ଦର୍ଯ୍ୟର ଗୀତ ଗାଇବାକୁ ?
ଗାଇବାକୁ ଦିଲ୍‌ରୁବା ପ୍ରଣୟର ?
କାହିଁକି ?

ଆଜି ରାତିର ଚନ୍ଦ୍ର ଦେଖିବ ?
ଦେଖ !
ଦେଖିବ ସମୁଦ୍ର ?
ଦେଖିବାକୁ ଚାହଁ ତୁମେ ଜ୍ୟୋତିର୍ମୟ ସ୍ୱର୍ଗ ମନ୍ଦାକିନୀ ?
ଆପତ୍ତି ନାହିଁ !

କିନ୍ତୁ
ପ୍ରକୃତିର ସହଜ ସ୍ତୁତିଗାନ କରିବା ପୂର୍ବରୁ
କାମନାର ମାଦକତା ଦେହେ
ପିନ୍ଧାଇଦେବା ଆଗୁ ପ୍ରେମର ଦୁକୂଳ,
କେଶବତୀ ଚନ୍ଦ୍ରମୁଖୀ ବ୍ରୀଡ଼ାବତୀ ରମ୍ଭୋରୁମାନଙ୍କ
ଗାଲ ଗ୍ରୀବା ଚିତ୍ରିବା ଆଗରୁ
ଥରେ ଚିନ୍ତାକର ସେଇ ସବୁ
ଆରତ ନିରନ୍ନ ପାଇଟିଆଳଙ୍କୁ
ଯେଉଁମାନଙ୍କ ପାଇଁ
ଶବ୍ଦ ନୁହେଁ:
ଭାତ ହିଁ ଜୀବନ !

ନା ନା,
ପରୱା ନାହିଁ ବୋଲି କହି ପାରିବିନି !
ହେ' ରସଗ୍ରାହୀ ନିଖଟୁ ପାଠକ
ଓ ଦିଲ୍‌ରୁବା ଗାଉଥିବା ବେପର୍‌ବାୟ କବି !
କାରଣ
ସେମାନେ ବାସ୍ତବ !
ସେମାନଙ୍କ ବୁଝିବା ବା ନ ବୁଝିବା
ବଦଳାଇଦିଏ ପରିସ୍ଥିତିର ଅର୍ଥବୋଧ ସବୁ !
ଜାଣିଛ ତ,
ସେମାନଙ୍କ ବିନ୍ଧାଣୀପଣିଆ
ସେମାନଙ୍କ ମାଂସପେଶୀ ସ୍ୱେଦ ଲହୁ ଲୁହ
ସୃଜିଦିଏ କମନୀୟ
ଚରାଚର ଏ ସମଗ୍ର ମହୀ !
ସୁତରାଂ
ସେମାନଙ୍କ ବୁଝିବା ବା ନ ବୁଝିବା
ହିମାଳୟୀ ପ୍ରଶ୍ନବାଚୀ ତୋଳିଧରେ
କବିଟିଏ ପାଇଁ ।
ବଦଳାଇ ଦିଏ
ପରିସ୍ଥିତିର ଅର୍ଥବୋଧ ସବୁ !

ସେମାନେ କ୍ଷୁଧାର୍ତ୍ତ ତ
କବିତା କଦର୍ଥ
କବିତା ଅଖାଦ୍ୟ !

ଏବଂ କ୍ରୀତଦାସମାନେ ବଜାଇ ମାଦଳ
ନାଚିଛନ୍ତି ନାଟ,
ଦଳିତ ଓ ଆଦିବାସୀମାନେ
ଗାଇଛନ୍ତି ଗୀତ ।

ଗୋଡିମାନେ ବାଉଛନ୍ତି ବଂଶୀ ଓ ସାରଙ୍ଗୀ
ତୋଳିଦେଇ ଅପୂର୍ବ ମୂର୍ଚ୍ଛନା !
କରିବାକୁ ଆପଣାର ଶ୍ରମଭାର
ଟିକିଏ ଉଶ୍ୱାସ,
ଭରିବାକୁ ଆପଣା ନର୍କକୁ
ଅଳ୍ପ ଟିକେ ଆନନ୍ଦ ହାଲ୍କୋଳେ ।

ଅବଶ୍ୟ
ସୁନାଗୋରୀ ସୁନ୍ଦରୀମାନଙ୍କୁ ନେଇ
ମୁଁ ବି ଦିନେ ଗାଉଥିଲି ଗୀତ
ନୀରୋ ଭଳି ବନ୍ଦ କରି ଆଖି !
କିନ୍ତୁ
ଦେଖିଦେବା ପରେ ଥରେ
ଚାରିପାଖେ ଜମିଥିବା
ଯାବତୀୟ
ଅସୁନ୍ଦର, ଅଶୁଭ, ଶକୁନ;
ଅସନ୍ତୁଳନ;
ଚାରିପାଖେ ଯାହା ଯାହା ଘଟୁଛି ଘଟଣା-
ସଜ ଗୋଲାପରେ କୀଟ
ବିଭ୍ରାଟ ବିଭ୍ରାଟ
ଏବଂ ତାର ପ୍ରତିରୋଧେ
ବିଚ୍ଛୁରିତ କ୍ରୋଧ, ଅସନ୍ତୋଷ, ରୋଷ
କ୍ଷୋଭର ସ୍ଫୁଲିଙ୍ଗ;
ସଂଘର୍ଷ ସଂଘର୍ଷ !
ସେତେବେଳେ କେହି କେବେ
ଲେଖିପାରେ କବିତା ସହର୍ଷ ?
ଉଚ୍ଚାରିପାରେ
ପ୍ରଣୟର ପଦାବଳୀ ?

ନା କବି ନା !
ବରଂ ଥରେ କରିନିଅ ଅଗ୍ନି ଅବଗାହ
ଶ୍ରୁବେ ସ୍ରୁଚେ ଘୃତାହୃତି ଦେଇ
ଆବାହନ କର ଲାଭାର ଉଦ୍‌ଗାର !
ବରଂ ଥରେ ବରିନିଅ
ପ୍ରବଳ ଭୂକମ୍ପ !
ଅଭ୍ରଂଲିହ ମହଲ ମାନଙ୍କ ଭଗ୍ନସ୍ତୂପ ପରେ
ମାଡ଼ିଯାଆନ୍ତୁ
'ଇନ୍ତିଫାଦା' - 'ଫିତୁରି' ଓ 'ଉଲୁଗୁଲାନ୍'ମାନେ !

ତା'ପରେ
ସଜାଡ଼ି ନିଅ କବି ସବୁ ଅସୁନ୍ଦର
ଯେଉଁଠି
ଶାନ୍ତିରେ ନିଃଶ୍ୱାସ ମାରିବ ମଣିଷ !
ଗଣ୍ଡେ ଅନ୍ନ ପେଟରେ ପକାଇ
ମଜ୍ଜିଯିବ ଶ୍ରମ-ସଂଗୀତରେ !
ଭରପୂର ଅମ୍ଳଜାନରେ
ଉଲୁସି ଉଠିବ ପ୍ରତି ଆତ୍ମା, ପ୍ରତି ଜୀବକୋଷ !
ଆମ୍ବ ଟାକୁଆର ଜାଉ ଖାଇ
ମରୁ ନଥିବ କେହି ଅସହାୟ !
ଭୋକିଲା ଶିଶୁର ତୁଣ୍ଡରେ
ଭାତ ଗୁଣ୍ଡେ ଦେବାପାଇଁ
ମା'ଟିଏ
ବିକୁ ନଥିବ ତାର ସନ୍ତାନ !
ମୌଳବାଦୀ ଦୈତ୍ୟ କେହି
କ୍ଷମତାର ସିଂହାସନ ଦଖଲ ସକାଶେ
ମାତୁ ନଥିବ ନରମେଧ ଯଜ୍ଞ ଆୟୋଜନେ !

ଏବଂ ଏବେ
ଶବ୍ଦର କୋଣାର୍କ ତୁମେ
ଗଢ଼ିଚାଲ, ବାଢ଼ି ଚାଲ ଖିଆଲୀ କବିତା ।
କବିତା ପାଲଟୁ ହାତୁଡ଼ି ! ଶିଳ୍ପୀର ନିହଣ !
ତା'ର ତାଳେତାଳେ
ଧିମ୍ ଧିମ୍ ମାଦଳ ବଜାଇ
ଅପୂର୍ବ ମୂର୍ଛନା ତୋଳି ବଂଶୀର ସୁରରେ
ନାଚି ଯାଆନ୍ତୁ ସହସ୍ର ମଣିଷ !
ଗୀତ ଗାଆନ୍ତୁ ସହସ୍ର ମଣିଷ !
ମୁକ୍ତି ପାଗଳ ମଣିଷ !
ବାସ୍ତବ ମଣିଷ !



# ମିଛୁଆ ଗାଈଆଳ ଟୋକା ମଲା ପୂର୍ବରୁ ଗାଇଥିବା ଗୀତ

## ଶୈଳଜ ରବି

ଗାଈକୁ ମୋ ବାଘ ନେଇଗଲା- ବାଘ ନେଇଗଲା- କିଏ ଅଛ-
ରକ୍ଷାକର-ରକ୍ଷାକର- ଧାଇଁ ଆସ ବୋଲି
ହୁରି ପକାଇଲି । ଠେଙ୍ଗା, ବାଡ଼ି, ଭାଲା, ବର୍ଚ୍ଛାଧରି
ଆସିଥିଲ ଗାଁ ସାରା ଉଠି
ଦୁଇ ଦୁଇ ଥର
ଧନ୍ୟବାଦ ।
ଧନ୍ୟବାଦ ॥ (ଘୋଷା)

ଏଥର ବା ଆସନ୍ତ କିପରି
ଯେତେବେଳେ ମୋର ଅପବାଦ
ବଗୁଲିଆ, ମିଛୁଆ ମୁଁ ଭଣ୍ଡାଉଛି ଏଠି ଛଟାଗାଳି ।

ଭଲ କଲ, ଭଲ କଲ
ନ ଆସିଲ ଭଲ କଲ
ଏବେ ମୋର ଇଚ୍ଛା ପୂର୍ଣ୍ଣ ହେଉ
ବାଘ ମୋତେ ଖାଉ ।

ମିଛେ ହୁରି ପକାଇଲି
କାରଣ ମିଛରେ
ଆତଯାତ ମାୟାବୀ ଈଶ୍ୱର
ମିଛେ ଆତଯାତ ବ୍ରହ୍ମା
ବିଶ୍ୱକର୍ମା ପୁଣି

ଯେତେକ ଆବର
ଗଢ଼ନ୍ତି, ଫାନ୍ଦନ୍ତି ଅବା ମୁହେଁ ରଙ୍ଗ ବୋଳି
ବୋଲାନ୍ତି ଈଶ୍ୱର ।
ସଂସାରଟା ଛଟାଗଲା
ମିଛବାଘ, ମିଛ ଗାଈ, ମିଛରେ ଚିତ୍କାର ।
ସଂସାରଟା କୁତୁରୁ କାଳିଆ
ବୁଦ୍‌ବୁଦ୍ ଠୋଠା ସୁଖ କ୍ଷଣକର ।
କ୍ଷଣିକ ଆନନ୍ଦ ପାଇଁ ଈଶ୍ୱର ଗଢ଼ନ୍ତି
ସଂସାର କାକର
ଠିକ୍ ଯେଉଁପରି
ଈଶ୍ୱରଙ୍କୁ ଗଢ଼ିଥାଏ
ବାଉଁଶରେ ନଡ଼ାବାନ୍ଧି
ମାଟି କାରିଗର ।

ପାଇବାକୁ ହାତତାଳି ଅବା ଦେଖିବାକୁ ମଜା
ଲୀଳାମୟ କରିଥାନ୍ତି ଲୀଳା
କେହିକେହି ହାତେ ଧରି
ବାଦ୍ୟ ଅବା କଲମ, ନିହାଣ
ନାଚିଥାନ୍ତି ହୋଇ ଗୋଟିପିଲା ।
ଈଶ୍ୱରଙ୍କ ପରି ମୋତେ ଲାଗିବାରୁ ଏକା
ଶୁନ୍‌ଶାନ୍ ଜଙ୍ଗଲରେ
ନାଟ କରିଥିଲି
ଗାଈକୁ ମୋ ବାଘ ନେଇ ଗଲା... ଧନ୍ୟବାଦ୍ ।

ଏବେ କିନ୍ତୁ ଧର୍ମଛାଡ଼୍
ଭାରି ବ୍ୟସ୍ତ ଲାଗେ
ଭାରି ବି ଚିକିଟା
ଛଟାଗଲା, ଭେଳିକି ଓ ଭାନୁମତୀ ଖେଳର ପୃଥିବୀ

ପ୍ରପଞ୍ଚର ମାୟାମଞ୍ଚ ଚୂନ୍‌ଚୁନା କରି
ପରସ୍ତ ପରସ୍ତ ରାତି ବନସ୍ତ ପହଁରି
ମୁଁ ଉଠୁଛି ପର୍ବତ ଶିଖରେ
ଆଉ ଥରେ ।
ସାଥିରେ ମୋ ଧେନୁ ନାହିଁ
ହାତେ ନାହିଁ ପାଞ୍ଚଣ ବନ୍ଧୁକ
ମୁଖେ ମୋର ଶଙ୍ଖ ନାହିଁ
ଖପୁରୀରେ ନାହିଁ ବି ନାଟକ ।

ଆଜି ମନ ଛଟପଟ
ଛୁଇଁବାକୁ ପର୍ବତର ଚୂଳ
ଯେଉଁଠି ଅପେକ୍ଷା କରେ
ସତ ବାଘ
ବାଘର ସେ କ୍ଷୁଧିତ ଗହ୍ୱର ॥

ପର୍ବତରେ ଯାହା ମିଛ
ଗାଆଁକୁ ତା ଲାଗୁଥିଲା ସତ
ପର୍ବତରେ ଯାହା ସତ, ହାୟ
ଗାଆଁକୁ ତା ମିଛ ଅପ୍ରମିତ

ଭଲକଲି, ଭଲ ହେଲା, ଭଲ କଲ
ଗାଈକୁ ମୋ ମାଘ ନେଇଗଲା... ଧନ୍ୟବାଦ ।

ଉଠୁ ହାଟ,
ଖୁଚୁରା ବଜାର
ଖୁଚୁରା ଈଶ୍ୱର ଯହିଁ
ରଚୁଥାନ୍ତି ଖୁଚୁରା ସଂସାର
ଫୁଲଗଛ ମରୁ ପଛେ
ଗପ ଆଜି ସରୁ

ସରୁ ଗପ ଆଗ
ଝଡ଼ି ପଡୁ ଫଡ଼ା ଫଡ଼ା ଚିତ୍ରବାଘ
ଟୁଆଁ ଟୁଇଁ ବାଘ ।
ନିର୍ବାକ ଏ ପର୍ବତ ଶିଖରେ
ଦୁରନ୍ତ ଏ ଭୀମରଡ଼ି
ହୋଇଥିବ ଯଦି ଯିଏ ସତ
କରୁ ଆତ୍ମସାତ
ମୋର ଏଇ ମିଛ ହୁରି
ମିଛ ନାଟ
ମିଛର ଶରୀର ।
ହୁଏ ମୁହିଁ ବାଘମୟ
ହୁଏ ପୂର୍ଣ୍ଣ, ସତ ଏକ ବାଘ ।

ହେବିନି ବାଉଳା ଆଉ
କହିବି ନି "ବାଘ ଖାଇଗଲା"
ବଉଳା ମୁଁ କରୁଛି ପ୍ରାର୍ଥନା
ମୋତେ ପଛେ ବାଘ ଖାଉ
ଗାଁ ଜାଣୁ
xxx
ସତ୍ୟ ରକ୍ଷା ହେଲା ।
ମୋତେ ପଛେ ବାଘ ଖାଉ
ଗାଁ ଜାଣୁ
ସତ ସତ ଏଠି ବାଘଥିଲା ।
ଭଲ କଲି, ଭଲ ହେଲା, ଭଲ କଲ
ଗାଈକୁ ମୋ ବାଘ ନେଇଗଲା... ଧନ୍ୟବାଦ ।

*କଟକ, ସେପ୍ଟେମ୍ବର ୧୯୮୭*

*( ଝଙ୍କାର' ୪୪ଶ ବର୍ଷ, ୫ମ ସଂଖ୍ୟା, ମେ ୧୯୯୨)*



# କଳାହାଣ୍ଡି

## ଅଖିଳ ନାୟକ

ନଥିଲା ବୋଲି,
ସାତସିଆଁ ଶାଢ଼ିଟେ ପିନ୍ଧି
ମୁଁ ତ ମୋର ଘରକୋଣରେ ପଡ଼ି ରହିଥିଲି ।

ଘରକୋଣୁ ଘୋଷାରି ଆଣି
ଯିଏ ମୋତେ
ହାଟମଝିରେ ଠିଆକଲା,
ଦେଖଣାହାରୀଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି
ଯିଏ ଘୋଷଣା କଲା ଯେ ମୁଁ ଲଙ୍ଗଳା,
ସେ ବୋଲାଇଲା ସାମ୍ବାଦିକ
ରାଜଧାନୀରେ ତା'ର ଆଜି ଦି'ମହଲା କୋଠା ।
ମୋଟାମୋଟା ବହି ଭିତରେ
ଯିଏ ଖୋଜିବସିଲା
ମୋ ଲଙ୍ଗଳା ହେବାର କାରଣ,
ଖୋଜି ବସିଲା ଲୁହରେ ମୋର
କେତେ ଭାଗ ଶର୍କରା ଅଛି, କେତେ ଭାଗ ଲୁଣ,
ସେ ବୋଲାଇଲା ଗବେଷକ,
ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଫେଲୋସିପ୍‌ରେ
ବଢ଼ିଲା ତା'ର ପେଟ ।

ମୋର ଲଙ୍ଗଳା ହେବାର ଦୁଃଖରେ
ଯିଏ ଫର୍ଦ୍ଦଫର୍ଦ୍ଦ କାନ୍ଦିଲା
ଶବ୍ଦ ଯୋଡ଼ି ପଦ ବାନ୍ଧିଲା
ସେ ବୋଲାଇଲା କବି,
ପଞ୍ଚତାରକା ହୋଟେଲ୍‌ର ସଭାକକ୍ଷରେ
ତାକୁ ମିଳିଲା କରତାଳି, ମାନପତ୍ର ଓ ପାଟ ।

ମୋତେ ଲଙ୍ଗଳା କରିଥିବା ଲୋକର
ହାତ କାଟିଦେବ ବୋଲି ଯିଏ ଗର୍ଜନ କଲା,
ନିଜ ହାତରେ ସୂତାକାଟି
ମୋ ପାଇଁ ସୁନ୍ଦର ଶାଢ଼ି ଯେ ବୁଣିଦେବ ବୋଲି
ଯିଏ ବାଟରେ ଘାଟରେ ରାଣ ଖାଇଲା,
ସେ ବୋଲାଇଲା ନେତା,
ତାକୁ ମିଳିଲା ସିଂହାସନ ଓ ମୁକୁଟ ।

ସାତସିଆଁ ଶାଢ଼ିଟେ ପିନ୍ଧି
ସେବେଠୁ ଏ'ଠି ହାଟ ମଝିରେ ମୁଣ୍ଡପୋତି
ଠିଆ ହୋଇଚି ମୁଁ,
ଲଙ୍ଗଳା ଓ ମୂକ !



# ବିକ୍ରି ହେଉଛି ମୃତ୍ୟୁ : କିଣିବ...

## କମଳାକାଂତ ପଂଡା (କଲ୍ପାନ୍ତ)

ହାତକୁ ଦିହାତ ହେବାକୁ
ଏକମାତ୍ର ଝିଅର
ଆଉ ଦଶଦିନ ଅଛି ।
ଘରେ ଘେରି ରହିଛି ଖୁସି
ବି ଅନ୍ୟପଟେ ଚାପ, ଅଭ୍ଵ ।

ବନ୍ଧୁ ଆସ ।
ଆମେ ତ କୁଲି, ମଜୁରିଆ ଦଳ
ସଂଧ୍ୟା ପରେ ମୁଗଫୁଲି-ଜିଂଜର ଆସରରେ
ଭୁଲିଯିବା ବିଶୀର୍ଣ୍ଣ ମାଂସପେଶୀର ଯଂତ୍ରଣା
ଅବସୋସ, ବିଷଣ୍ଣତାର ମହିମା ।

ଆମେ ବି ନାଚିବା
କରିଆ, ଗାମୁଛା ପିନ୍ଧି
ଠେକା ଭିଡ଼ି
ସଂଧ୍ୟା-ସ୍ଵର, ଗୀତିମୟତାରେ;
ଯେମିତି ହାତ ଛନ୍ଦାଛନ୍ଦି ହୋଇ
ଫିକା ନୀଳ ଆଲୁଅରେ ମସ୍ତିଚାଲେ
ନିଜେନିଜେ ବଂଚୁଥିବା
ଧନ-ଲୋଭୀ ମାଫିଆଙ୍କ
ନିଷିଦ୍ଧ-ଇଲାକା କ୍ଲବରେ ।
ଆମେ ବି ଆରମ୍ଭିବା ନାଚ
ଅନ୍ଧାର ବସିଲେ ଚକାମାଡ଼ି
ସୁଲଭ ବଗିଚା କି ପଡ଼ିଆ ଭିତରେ ।

ଆମେ ବି ମଣିଷ
ତୃତୀୟ ବିଶ୍ୱର ।
ଆମର ଭାଷା : ସଂକୁଚିତ
ଚିନ୍ତା : ବିଶ୍ଲଥ
ବିଦ୍ରୋହ : ଫିମ୍ପିମରା
ପିଠି : ଟାଣ ଓ ଦଦ୍ରୁଡ଼ା
(ସତେ ଗୋଧିର ଚମଡ଼ା)
ଆମେ ଏ ଦେଶର ଗେଟି, ବଜୁରି ଓ ପିଚୁ
ବିଶ୍ଳିଷ୍ଟ ସୁଖୀ-ଜୀବନ ସ୍ରୋତରୁ ।

ଆସ ! ଢୋକେ ଢୋକେ ପିଇ
ବେଜାଏ ନାଚିବା
ଝିଅ ବାହାପରେ ଆକଣ୍ଠ ପିଇବା ।

ଆମେ କି ଜାଣିଚୁ
ବିକ୍ରି ହେଉଛି ମୃତ୍ୟୁ ହାତପାଆନ୍ତାରେ ।
ମୂଲଚାଲ କରିବାନି
ଧୁସ୍ତୁର ମୃତ୍ୟୁକୁ କିଣିବା
କିସ୍ତି କିସ୍ତି ନୁହେଁ; ଧୂଆଁଧୂପା ।

ଭାଗ୍ୟକୁ ଆଦରି
ରହିଯିବ ଝିଅ ଅଭିଆଡ଼ୀ ।
ଭାଂଗି ପଡୁଥିବ ମମତାର ବନ୍ଧ
ଶବ୍ଦର ସାହାନାଇ ।

ବି.ଦ୍ର. -
ବିଶ୍ଲଥ - ଲୁଳିତ, ଶିଥିଳ
ବିଶ୍ଳିଷ୍ଟ - ପୃଥକକୃତ, ବିଚ୍ଛିନ୍ନ
ଧୁସ୍ତୁର - ସୁନ୍ଦର ଅଥଚ ଶଇତାନ
ଧୂଆଁଧୂପା - ଚଟପଟ



# ଖେଳ

## ଅରୂପ ଅଭିଷେକ

ହାତପାଆନ୍ତାରୁ ଏବେ
ଦୂରେଇ ଗଲେଣି ଶବ୍ଦ ।
ଅଭିମାନୀ ସାଜି ମିତ ବସୁଥିବା
ସବୁ ଶବ୍ଦ
ଉଠେଇ ନେଲେଣି ଖେଳଘର
ଅନ୍ୟଠିକୁ ।
ମୁଁ ବା ମନଖୋଲି ତାଙ୍କ ସହ
ଖେଳିପାରିଲି ଯେ କେଉଁଠି !

କାହାର କେତେ କେତେ ବରାଦ
ସବୁ ଖେଳ କ'ଣ ଖେଳିହୁଏ
ଜୀବନରେ ?

ଜୀବନଟା ଏତିକି ଛୋଟ
ହାତ ମୁଠାକଲେ ମୁଠେଇ
ହୋଇଯାଏ ।

ହାତଖୋଲି ଦେଖିଲାବେଳକୁ
ଲୋଟାକୋଟା ହୋଇଯାଇଛି
ସବୁ ସ୍ୱପ୍ନ ।

ପରସ୍ତପରସ୍ତ ହୋଇ ବସିଥିବା
ଧୂଳିସବୁ ଝାଡ଼ି ପୁଣି
ଖେଳ ଯୋଡ଼ିଲା ବେଳକୁ
ଉଚ୍ଛନ୍ନ ହେଲେଣି
ଯିବାକୁ ଖେଳସାଥି ।

ଆଉ କୋଉ ଖେଳିହେଲା ଯେ
ଖେଳ !

ସେମାନେ ସବୁ ନିଜେ ନିଜେ
ଗୋଟେ ଗୋଟେ ଖେଳ ସାଜି
ଚାଲିଗଲେ ଯେ ଯୁଆଡ଼େ
ଖେଳ ଖେଳିବାକୁ ।

ଏବେ ମୁଁ ଖୋଜୁଛି
କାଳେ କେଉଁଠି ଥିବେକି
ଦୁଇ ଚାରିଯୋଡ଼ା ଶବ୍ଦ ।

ଯେଉଁମାନେ କାଟିପାରି ନଥିବେ
ବନ୍ଧନ
ବାନ୍ଧିହୋଇ ରହି ଯାଇଥିବେ
କେଉଁ ଏକ ଡୋରରେ ।

ବସିଥିବେ କେଉଁଠି ଲୁଚିକି
ଅଭିମାନରେ ଜଡ଼ସଡ଼ ହୋଇ ।

ଯାଏ ଦେଖେ
ସେମାନେ କାଳେ ବତେଇ ଦେଇ ପାରିବେ
ମୋତେ ନୂଆନୂଆ କଳା
କେମିତି ଖେଳିହେବ
ଅନେକ ଖେଳ ।

କାଳେ ମୁଁ ପାରିବି
ଖେଳୁଆଡ଼ ମନ ନେଇ
ଶବ୍ଦ-ଖେଳ ଖେଳି
ଜୀବନର ପଡ଼ିଆରେ ।



# ସମୟ

## ରୀତା କରଣ

ସମୟ !
ସେ କ'ଣ ଏମିତି ଏକ ଅରଣା ଘୋଟକ,
ଯାହାକୁ ଧରିବାପାଇଁ କୁଶଳୀ ସଇସ
ଯେତେଯେତେ ଧାଇଁଲେ ବି ଖସିଯାଏ ବିଜୁଳି ଗତିରେ,

ହିଁ ହିଁ ହିଁ
ହ୍ରେଷାଧ୍ୱନି ଛାଡ଼ିଛାଡ଼ି ଥଟିଲା ଟାପୁର
କ୍ରମ ଅପସୃୟମାନ ଶବଦରେ ଥରାଇ ମେଦିନୀ
ନିମିଷେ ମିଳାଇଯାଏ
ଅରଣ୍ୟର ଶ୍ୟାମଳ ଅନ୍ଧାରେ ?

ସମୟ,
ସେ କ'ଣ ଏମିତି ଏକ ମହାନଦୀ ସ୍ରୋତର ଗାରିମା
ଯାହାକୁ ଛୁଇଁବା ପାଇଁ
ବେଗଗାମୀ ତରଣୀକୁ ଯେତେ ବାହିଲେ ବି
ସମୟ ଦିଏନି ଧରା
ଧରା ଦିଏ ନାହିଁ ।
ବିଧ୍ୱସ୍ତ ତରୀର ଦେହ
ଛୁଇଁଛୁଇଁ ଥିରିବାଆ / ଆସ୍ତେ ବାହୁନଇ !

ସମୟ !
ସେ କ'ଣ ଏମିତି ଏକ ପ୍ରଳୟର ଆଗୁଆ ସୂଚକ,
ନିରନ୍ଧ୍ର ଅନ୍ଧାର ଭେଦି ଘଣ୍ଟାର ଡାଏଲ୍
ଭଳି ଯାହା ଜଳୁଥାଏ
ଡାକୁଥାଏ ଟିକ୍‌ଟିକ୍ ଟିକ୍ !
ଟାଇମ୍ ବୋମାର ଭୀତି ସଂଚାରି ଛାତିରେ
ଗତିଯିଏ କରୁଥାଏ ଅବାରିତ ଅବିରତ,
ଉଲ୍‌କା ଖସେ ଆକାଶ ମାର୍ଗରୁ ?

ସମୟ ଏମିତି ଏକ ସୀମାହୀନ ସୀମାର ସୀମାନା
ଯାହାକୁ ଲଙ୍ଘିଛି ବୋଲି କେହି ଯଦି କରିଛି ଛଳନା,
ବଡ଼ ଦୟନୀୟ ଭାବେ ସେ ନାୟକ ପାଲଟେ 'ଯଯାତି'
ମୃତ୍ୟୁ କୂଳେ ପଡ଼ିଥିବା ପାଦଚଲା ବାଟରେ ବାଟରେ
ଜୀବନାଶ୍ୱ ପୃଷ୍ଠେ ବସି କରୁଥାଏ ଗତି !
ସମୟର ଡାହାଣୀ ବିଦ୍ୟା ତ !
ଅହରହ କରୁଥାଏ ତାର୍କିକକୁ ଡହଳ ବିକଳ
ଜ୍ଞାନୀକୁ ବିବ୍ରତ !
ଅନ୍ଧ ଦାର୍ଶନିକ ତୋଳେ
ଅଧିବିଦ୍ୟା ପାହାଡ଼ ପାହାଡ଼
ସମୟ ଈଷତ୍ ହସି
କରୁଥାଏ ସୂର୍ଯ୍ୟକୁ ଉହାଡ଼ !
ମୂର୍ଖ ଜୟଦ୍ରଥମାନେ ଉଲ୍ଲସିତେ ଅନ୍ୟର ଚିତାକୁ
ସଜାଇବା ସମୟରେ
ସେଇ ଚିତା
ଜୟଦ୍ରଥ ମାନଙ୍କର ଚିତାଗ୍ନି ପାଲଟେ !

ସମୟ ଓଃ ସମୟ !

ତୁମରି ସାଗର ତୀରେ ମାନବର ପଦଚିହ୍ନ

ବିକାଶ ସ୍ୱାକ୍ଷର !

'ପତନ' ପାଲଟେ ତହିଁ 'ଉତ୍‌ଥାନ'ର ନବୀନ ସଂକେତ

'ଡିନୋସର୍‌' ଅସ୍ଥିପରେ ମାନବୀୟ ସଭ୍ୟତାର

ପତାକା ପ୍ରୋଥିତ ।

କିଏ ସେ ପାରିବ ରୋକି

ବିପୁଳ ଏ ଜୟଯାତ୍ରା ତୋର ?



# ଜୀବନ

## କାର୍ତ୍ତିକ ଚନ୍ଦ୍ର ବାରିକ

ସତରେ କେତେ ସହଜ
ହୋଇ ଯାଆନ୍ତା ଜୀବନଟା
ଯଦି ମୁଁ କହି ପାରନ୍ତି
ଆବେଗ ଓ ପୂର୍ଣ୍ଣତା ସହ
ବର୍ତ୍ତମାନଟା ଅସହ୍ୟ ଝାଞ୍ଜିନୁହେଁ,
ବରଂ ବସନ୍ତର ରମ୍ୟ ଉପବନ ।

ହେଲେ ନା -
ରାସ୍ତାକଡ଼େ ସମୟଟା ଥକ୍କା ହୋଇ
ବସି ଗଲାବେଳେ
ଯେତେ ସବୁ ସମ୍ଭବନା ଆଜି
ମାଟିର କଲିଜାକୁ ଭେଦି ଯାଇଛି,
ତୁମେ ସ୍ୱୀକାର କର ବା ନକର
ଝୋଲା ମରା ପେଟଟ
'କଂସାଏ ପଖାଳକୁ
ବଲବଲ କରି ଅନାଇଥାଏ
ଏକଥା ଅକାଟ୍ୟ ସତ୍ୟ ।'

ଭୋକର ପଞ୍ଝାରେ / କ୍ଷତବିକ୍ଷତ ଯେତେବେଳେ ମଣିଷ,
ପୂର୍ଣ୍ଣମୀର ଗୁଟୁଲ୍ ପୁଟୁଲ୍ ଚାନ୍ଦକୁ
ସେ କ'ଣ ଅନୁଭବ କରିପାରେ
ଅନ୍ତଃକରଣରେ ?

କବି ତ ଆଜି ସ୍ଥାଣୁ !
ଖୋଲା ଆକାଶ ତଳେ
ଚକାମାଡ଼ି ଘୁମଉଛି !
ଆଜିକାଲି କି ସଂକଳ୍ପ କରିଛି କେଜାଣି ?
ମୁଁ କିନ୍ତୁ ବିଚଳିତ
ମୋ ପ୍ରଶସ୍ତ ଛାତିରେ
ସାମୁଦ୍ରିକ ଝଡ଼
ଓ ତା' ଭିତରେ ସୁପ୍ତ ଆଗ୍ନେୟଗିରିକୁ ଦେଖି ।

ଜୀବନଟା କ'ଣ
କେବଳ ନିରାଶା -
ବିସ୍ତୀର୍ଣ୍ଣ ବାଲୁକାଶଯ୍ୟା... ?
ବରଂ ମୁଁ କହିବି
ଜୀବନଟା ଉଚ୍ଛୁଳା ନଈର ସୁଅ
ତରଙ୍ଗାୟିତ ସାଗରର ଜୁଆର
ଯିଏ କିଛି ନିଏ ନାହିଁ କେବେ,
ସବୁ ଫେରେଇ ଦିଏ ।



# ଜୀବନଟା ଖାଲି...

## ଅମ୍ବରୀଶ ଶତପଥୀ

ଅସରା ପଥରେ ସପନ ପସରା ଧରି
ମନ ଅଗଣାରେ ସବୁଜ ରଙ୍ଗ ଭରି
ଆକାଶ ଆଖିରେ କବିତାର ନୀଳଢେଉ,
ଜୀବନଟା ଖାଲି ଫୁଲର ଫଗୁଣ, ଦୁଃଖ ଆସିବ କାହୁଁ ।୧।

ସମୟ ସୁଅରେ ସପନ ଯାଇଛି ହଜି,
ଅଦିନ ମେଘର ଲୁହରେ ଯାଇଛି ଭିଜି,
ମନରେ ବିଷାଦ, ତା'ସାଥେ ଦୁଃଖ ଦାଉ
ଜୀବନଟା ଖାଲି ଦୁଃଖ କଷଣ, ସୁଖ ବା ଆସିବ କାହୁଁ ।୨।

ଯାମିନୀର ଶେଷେ ସକାଳ ସୂରୁଯ ହସେ,
ଦିନପରେ ରାତି, ରାତି ପରେ ଦିନ ଆସେ
ନୀଳ ପରବତେ, ଧୂସର ପଥର ଆଉ
ଜୀବନଟା ଖାଲି ସଂଗ୍ରାମମୟ, ହାରିବାର ନାହିଁ ଆଉ ।୩।



# ଇଚ୍ଛାର ବାଦ୍‌ଶାହା

## ପୂର୍ଣ୍ଣେନ୍ଦୁ ଦାସ ମହାପାତ୍ର

ସେ ଏକ ଏମିତି ମଣିଷଟିଏ ଯେ
ଏକାଏକା ଚାଲିଥାଏ
ଚାହେଁନା ପଛକୁ କେବେ ଦେଖିବାକୁ
ତା ପଛରେ ଅଛି କିଏ ।

ଷଠୀଘର ତାର ଛାଡ଼ି ସେ ଆସିଛି
ତା ଗାଆଁ ଏନ୍ତୁଡ଼ିଶାଳେ
କର୍ମକ୍ଷେତ୍ର ବାଛି ଘର ସେ କରିଛି
ଏଇ ଏ ବଳଙ୍ଗ କୂଳେ ।

କିଏ କହେ ତାକୁ ପାଗଳ ମଣିଷ
କିଏ କହେ ତାକୁ ବୋକା
ନା ସେ ପାଗଳ, ନା ସିଏ ବୋକା
ସିଏ ଏକ ବହ୍ନିଶିଖା ।

ତା' ଦେହେ ଝରୁଛି ଏମିତି ରକତ
ଯେ ରକତ କହିଥାଏ
ଜିଇବାର ଯଦି ଅଛି ଦୁନିଆରେ
ହୁଅ ତ ମଣିଷଟିଏ ।

ବେଶି ନୁହେଁ ତୁମେ ଥରଟିଏ ଯଦି
ଭାବ ଆଉ କାହାପାଇଁ

ଲୁହ ପୋଛିଦେଇ ବୁଝ ତାର ଦୁଃଖ
ତା ହାତକୁ ଧରିନେଇ ।

ସବୁଦିନ ପାଇଁ ତୁମକୁ ତ ନେଇ
ମୁଣ୍ଡେ ବସେଇବ ସିଏ ।
ଜୀବନରେ ସିଏ ଦୁଃଖକୁ ଦେଖିଛି
ଛାଇପରି ପାଖେପାଖେ
କେତେ ରାତି କାହିଁ ଯାଇଛି ତା ପାହି
ରହି ଯାଇଛି ସେ ଭୋକେ ।

ତଥାପି କା' ପାଖେ ପାତିନାହିଁ ହାତ
ବଞ୍ଚିବାକୁ ଦୁନିଆରେ
ରାତିରାତି ଚେଇଁ ଗଢ଼ିଛି ନିଜକୁ
ଏମିତି ଏକ ଲୁହାରେ ।

ନା ଯାଇଛି ନଇଁ, ନା ଯାଇଛି ଭାଂଗି
ଭେଟିଛି ସେ କେତେ ଝଡ଼
ପଡ଼ି ଉଠି ସିଏ ଆଗକୁ ଧାଉଁଛି
ହେବାକୁ ଜୀବେନ ବଡ଼ ।

ନିଜ ଘରକଥା ବୁଝିବାପାଇଁ ତ
ତା' ପାଖେ ବା ବେଳ କାହିଁ ?
ଖାଇବାକୁ ଗଣ୍ଡେ ମିଳିଲା ତ ଭଲ
ଯଦି ନ ମିଳିଲା ନାହିଁ ।

କେତେ ସଂକଳ୍ପର ପୂଜାରୀ ବୋଲି ସେ
ତା' ଛଡ଼ା ଜାଣେନି କିଏ

ଆଇନାରେ ଯେବେ ନିଜକୁ ଦେଖେ ସେ
ଏକୁଟିଆ ବେଳେବେଳେ
କେତେ ଯେ ଅଭୁଲା ସ୍ମୃତି ଜୀବନର
ଭାସିଉଠେ ଲୁହଜଳେ ।

ସବୁ ଲୁହକୁ ସେ ଆଖିରେ ଲୁଚେଇ
ଚାଲିଥାଏ ହସିହସି
ହରଷର ସିଏ ସରସୀ ବୋଲି ତ
ନାଆଁ ପାଇଅଛି 'ହୃଷି' ।

କାନ୍ଧରେ ହାତକୁ ପକେଇ ସେ କହେ –
"ଦୁନିଆକୁ ଡରନାହିଁ
ଦୁନିଆକୁ ଯଦି ଡରିଗଲ ତୁମେ
ବଞ୍ଚିବ ତ କିସ ପାଇଁ ?

ଜନମିଛ ଥରେ, ମରିବ ବି ଥରେ
ନ ଜାଣିଛ କିଏ କୁହ
କାଳିଆ ପାଖରେ ହାତ ଟେକିଦେଇ
ନିଶେ ତେଲ ମାରି ଶୁଅ ।"

'ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ'
ଏଇ ବିଶ୍ୱାସରେ ବଞ୍ଚି ସେ ରହିବ
ଜୀବ ଗଲେ ପଛେ ଯାଉ !



# ଜୀବନ-ଯୁଦ୍ଧ ଏତିକିରେ ଥାଉ

## ଶଶୀକାନ୍ତ ପରିଡ଼ା

ଡାଏରୀରେ ଧରୁନାହିଁ
ଲହୁ ଲୁହ ଭିଜା
ଉତ୍‌ଥାନ ପତନ ଭରା
ସନ୍ତ୍ରାସବାଦୀଙ୍କ ଆତଙ୍କ ଖେଳା
ପୁଲିସର ଦମନ କଳା
ପୋସ୍କୋ ବିରୋଧୀ ସଂଗ୍ରାମଲୀଳା ।

ଏଇଠାରେ ରେଷ୍ଟନିଅ
ମଣିଷର ଦୁଃଖ ଓ କ୍ଲେଶମାନ,
ଏ ଜୀବନ-ଯନ୍ତଣା କେତେ କଷ୍ଟକର ।

ଆଗରେ ପଡ଼ିଛି ପଥ ବହୁଦୂର
ବାକିଅଛି କେତେ ବାଟ ଚାଲିବାକୁ
ସାଥୀ ହୋଇ
ଆୟୁଷର ମାଇଲ ମାଇଲ
ବନ୍ଧୁରିତ ପଥ ।

ଜୀବନର ବୋଝ କେମିତି ବୋହିବି
ମଝି ସମୁଦ୍ର ବକ୍ଷରେ
ଦଦରା ନାଆ ମୋର
କେମିତି ତାକୁ ସଜାଡ଼ିବି
ଏ ମାୟା ମରୀଚିକା ଦୁନିଆ ବକ୍ଷରେ ।

ଜୀବନ-ଯୁଦ୍ଧ ଏତିକିରେ ଥାଉ
ବାକି ଯାହା ନ ବିତୁ
ଇତିହାସର ପୁନରାବୃତ୍ତି ହେଲାପରି
ଘଟିବାର ଅଛି ଯାହା ଘଟୁ
କିନ୍ତୁ ଅଘଟଣ ନଘଟୁ ।

କପାଳଲିଖନ କେକରିବ ଆନ
ରାତ୍ରି ହେଉ ଯେତେ ଅନ୍ଧକାର
ନୂତନ ସୂର୍ଯ୍ୟଭରା ସକାଳକୁ
ଅପେକ୍ଷା ମୋହରି,
ଲେଖିବି ନୂଆ ଇତିହାସ
ନୂତନ ଡାଏରୀରେ
ନବ ବର୍ଷରେ ।

□□□

# ବିସ୍ଥାପନ

## ରବୀନ୍ଦ୍ରନାଥ ପାଣି

ହଁ, ଏକଥା ସତ ଶିଳ୍ପାୟନ ହେଲେ
ଦେଶର ଉନ୍ନତି ହେବ,
ସେମାନେ ବାଧ୍ୟରେ ଭିଟାମାଟି ଛାଡ଼ି ଚାଲିଯିବେ,
ବିସ୍ଥାପିତ ହେବେ ।
ପ୍ରଚୁର ସାହାଯ୍ୟ ଓ ପ୍ରଲୋଭନ
ଦେଖାନ୍ତି ବିଦେଶୀ କମ୍ପାନୀମାନେ
ଅର୍ଥ ପାଇ ନୂଆ ଜୀବନ
ଆରମ୍ଭ କରିବେ ସେମାନେ ।

ଆଜିକାଲି ତ ସବୁ ଦୁଃଖ ଭୁଲିହୁଏ ଅର୍ଥ ଲୋଭରେ
ଏମିତିକି ବାପ ମା'ଙ୍କ ଦୁଃଖ କମିଯାଏ
ପୁଅର ଅପମୃତ୍ୟୁ ଘଟେ ଯଦି
କର୍ମକ୍ଷେତ୍ରେ ବା ଦୁର୍ଘଟଣା ଯୋଗୁ
ସବୁ ସମସ୍ୟା, ଦୁଃଖକୁ ସମାଧାନ କରିଦିଏ ଅର୍ଥ ।

ସେମାନେ ଅନ୍ୟ ସ୍ଥାନରେ ରହିବା ପରେ
ହୁଏତ ଭୁଲଯିବେ ଜନ୍ମମାଟିକୁ
ଯେଉଁ ଘରଟିକୁ ପିତା, ପ୍ରପିତାମହ ଗଢ଼ିଥିଲେ,

ଯେଉଁଠି ଭରି ରହିଛି
ପୁରୁଷ ପୁରୁଷର ସ୍ନେହ-ଶ୍ରଦ୍ଧା, ଆଶୀର୍ବାଦ
ଯାହାକୁ ସଜଡ଼ାସଜଡ଼ି କରି ରଖିଥିଲେ
ବାଡ଼ିରେ ଆମ୍ବ, ପିଜୁଳି, ପନିପରିବାର ହାଟ
ଗଡ଼ିଆରେ ମାଛ, ସଜନା ଗଛରେ
ପୁଞ୍ଜାପୁଞ୍ଜା ଛୁଇଁ
କ୍ଷେତରେ ରବି ଓ ଧାନଋଷ,
ସବୁ ଛାଡ଼ିଯିବେ
କମ୍ପାନୀ କିଣିନେବ ପ୍ରଲୋଭିତ କରି ।

ଯେଉଁଠି ପ୍ରଥମ ସକାଳର ସୂର୍ଯ୍ୟ
ତାଙ୍କୁ ଅଭିନନ୍ଦନ କଲା,
ଯେଉଁ ଗାଁର ବିଲଟୋଟା
ନଦୀ ଓ ଝରଣା ସବୁ ଆପଣାର,
ଯେଉଁଠି ବସନ୍ତରେ ବଉଳର ବାସ୍ନା
ସ୍ୱପ୍ନ, ଖୁସି ଖେଳିଯାଏ
ଯାହାର ପାଣି ପବନରେ ବଡ଼ ହେଲେ
ଘର କରି ପୁରୁଷ ପୁରୁଷ ସୁଖେଦୁଃଖେ ବେଳ କଟାଇଲେ,
ଯେଉଁଠି ସବୁଆଡ଼େ ଖାଲି ଆପଣାର ଭାବ,
ବିଦେଶୁ ଫେରିଲେ
କେତେ ଖୁସି ଲାଗେ,
ସବୁ ଛାଡ଼ିଯିବେ ।

ଯିବାକୁ ତ ହେବ,
ଶାସନର ନିର୍ଦ୍ଦେଶକୁ ନ ମାନିବ କିଏ ?

କେହି ବି ପ୍ରଚୁର ଅର୍ଥ ପାଇ
ଭୁଲି ଯାଏ ମାୟାମୋହ
ଆନନ୍ଦରେ ରହେ ।

ପିତୃ ପୁରୁଷମାନେ ପରା
ଶ୍ରାଦ୍ଧ ଓ କର୍ମ କର୍ମାଣିରେ
ବେଳେବେଳେ ଓହ୍ଲେଇ ଆସନ୍ତି
ଦେଖିବାକୁ ପରିବାର,
ସୁଖ ଦୁଃଖ ଜାଣିବାକୁ
ମାୟାଡୋରି ତ ଲମ୍ବିଛି ମାଟିରୁ ସ୍ୱର୍ଗକୁ ।

ସେଠାରେ କଳକାରଖାନା
ଚିମିନିରୁ ଧୂଆଁ ଉଠୁଥିବ
ରାକ୍ଷସଙ୍କ ପରି ଗର୍ଜୁଥିବେ ଯନ୍ତ୍ରମାନେ,
ଅବିରତ କାନଫଟା ଶବ୍ଦ
କେଉଁଠି ଖୋଜିବେ
ଠିକଣା ହଜିଗଲା ପରେ ?

ସଭ୍ୟତାର ବିକାଶ ହେଉଛି
ଉନ୍ନତିର ଶିଢ଼ି କେବେ ବନ୍ଧା ସରିବ କେଜାଣି ?
ଧୀରେ ଧୀରେ କମି ଆସୁଛି ସ୍ନେହଶ୍ରଦ୍ଧା
ଜନ୍ମମାଟି, ପ୍ରିୟଜନ ସମସ୍ତଙ୍କଠାରୁ
କେବେ ଆମେ ମୁକୁଳିବା ଅତୃପ୍ତ କ୍ଷୁଧାରୁ ?



'ଜୀବନ ଓ ସଂଗ୍ରାମ' ଏକ ସୁସମ୍ପାଦିତ ଅଭିନବ ସାରସ୍ୱତ ଉଦ୍ୟମ । ଏହାର ପ୍ରଥମ ଭାଗରେ ଜୀବନ ଓ ସଂଗ୍ରାମର ପାରସ୍ପରିକ ଦ୍ୱନ୍ଦ୍ୱାତ୍ମକ ସମ୍ପର୍କ ଉପରେ ଏଙ୍ଗେଲ୍ସ, ଭଗତ ସିଂ ଓ ଆଇନ୍‌ଷ୍ଟାଇନ୍ ଆଦି ମନୀଷୀଙ୍କ କାଳଜୟୀ ଲେଖା ସ୍ଥାନିତ କରାଯାଇଛି । ସେହିପରି ଜୀବନର ବୈଜ୍ଞାନିକ ବିଶ୍ଳେଷଣ କରାଯାଇଥିବା କିଛି ଲେଖା ସଂଯୋଜିତ ହୋଇଛି । ସାଂପ୍ରତିକ ଜନଆନ୍ଦୋଳନ ଉପରେ କିଛି ସମାଜ-ବିଜ୍ଞାନୀଙ୍କ ବିଶ୍ଳେଷଣ ମଧ୍ୟ ରଖାଯାଇଛି । ଜୀବନ ଓ ସଂଗ୍ରାମ ଉପରେ ବିଭିନ୍ନ ପ୍ରକାର ଚିନ୍ତାଧାରାର ସମାହାର ପ୍ରତି ମଧ୍ୟ ଦୃଷ୍ଟି ଦିଆଯାଇଛି । କବିତା କ୍ଷେତ୍ରରେ କିଛି କାଳଜୟୀ ଭାରତୀୟ କବିତାର ଅନୁବାଦ ସଙ୍ଗେସଙ୍ଗେ ଓଡ଼ିଶାର ଜନସଂଗ୍ରାମ ସମ୍ପର୍କିତ କିଛି କବିତା ସଂକଳିତ ହୋଇଛି । ତା'ସହ ଦିଆଯାଇଛି କିଛି ସାଂପ୍ରତିକ କବିଙ୍କ କବିତା । ମୋଟାମୋଟି ଭାବେ ଜୀବନ ଓ ସଂଗ୍ରାମ ଉପରେ ଓଡ଼ିଶାର ଲେଖକ, ସମାଜକର୍ମୀ ଓ ବୁଦ୍ଧିଜୀବୀମାନଙ୍କ ବିସ୍ତରବିମର୍ଷର ଏହା ଏକ ପ୍ରତିନିଧିମୂଳକ ଲେଖା ସଂଗ୍ରହ । ଆଶା, ଏହା ଓଡ଼ିଶାରେ ଯଥେଷ୍ଟ ପାଠକୀୟ ଆଦର ଲଭିବା ସଙ୍ଗେସଙ୍ଗେ ସଂଗ୍ରାମୀ ଜନଗଣଙ୍କୁ ମଧ୍ୟ ବେଶ୍ କିଛି ପାଥେୟ ଓ ଦର୍ଶନ ଯୋଗାଇ ଦେଇ ପାରିବ ।

ଶୁଭଶ୍ରୀ ସାହୁ
ପ୍ରକାଶିକା